# ତିନୋଟି ସୂର୍ଯ୍ୟାସ୍ତର ରଂଗ

ଡଃ ପ୍ରମୋଦ କୁମାର ପରିଡ଼ା

**ଜ**ଣକ ପରେ ଜଣେ ତିନିଜଣ ବିଶିଷ୍ଟ ବରପୁତ୍ରଙ୍କୁ ୨୦୦୪ର ଅଗଷ୍ଟ ମାସର ଅବଧି ଭିତରେ ହଜାଇବାର ସ୍ତବ୍ଧ ଚକିତ ଅନୁଭବ ଏକ ବିରଳ ଭାବାବେଗ । ଯେମିତି ଗୋଟିଏ ଲଗ୍ନରେ ତିନୋଟି ସୂର୍ଯ୍ୟର ଅସ୍ତରେ ରଂଜିତ ହେବାର ଥିଲା ଉତ୍କଳର ଭାଲପଟ । କାଳବକ୍ଷରେ ଡକାଡକି ହୋଇ ହଜିଯିବାର ଏ ଅଲୌକିକତା ଯେପରି ଲେଖାଥିଲା ବହୁପୂର୍ବରୁ ।

ଜ୍ଞାନପୀଠ ବିଜେତା ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ, କିନ୍ତୁ ବେଶୀ ଜଣା ସଚ୍ଚି ରାଉତରାୟ ଭାବରେ । ଦୁର୍ଦ୍ଦମନୀୟ ବ୍ୟକ୍ତିସତ୍ତାର ଅଧିକାରୀ ଏ ସ୍ୱାଭିମାନୀ ମଣିଷଟି ଭିତରେ ଅଗ୍ନିବର୍ଷୀ ସ୍ଫୁଲିଙ୍ଗର ପ୍ରାଚୁର୍ଯ୍ୟ ଯେପରି ବିଚ୍ଛୁରିତ ହେଉଥିଲା - ସେହିପରି ସ୍ନିଗ୍ଧ ଶୀତଳତାର ସ୍ରୋତରେ ସେ ସିକ୍ତ କରୁଥିଲେ ଜନମାନସକୁ । ରୋମାଣ୍ଟିସିଜିମ୍‌ର ମୋହ ଜାଲରୁ ସାହିତ୍ୟିକ ଧାରାକୁ ମୁକ୍ତ କରି ଆନ୍ତର୍ଜାତିକ ଚେତନାରେ ଉଦ୍‌ବୁଦ୍ଧ କରିବା ଯେପରି ତାଙ୍କ କାବ୍ୟ ସରଣୀର ଅପ୍ରତିରୋଧ ଗତିସ୍ରୋତ ଥିଲା । କେବଳ ଜଣେ କବି ଭାବରେ ନୁହେଁ, ସାମ୍ୟବାଦୀ ଦ୍ୟୋତନାରେ ବହୁଧା ବିଭକ୍ତ ତାଙ୍କର କାବ୍ୟ ମନନ ବୈପ୍ଳବିକ ଭାବ ସଂପଦରେ ଯେପରି ଭରପୂର ଉଦ୍ଦାମ ସମାଜବାଦୀ ବ୍ୟକ୍ତିସତ୍ତା । ସେଠି ମଣିଷପ୍ରତି ଶ୍ରଦ୍ଧା ଥିଲା, ସହାନୁଭୂତି ଥିଲା, ଶାନ୍ତି ପାଇଁ ଜାଗ୍ରତ ବ୍ୟାକୁଳତା ଥିଲା, ଯୁଦ୍ଧ ବିରୁଦ୍ଧରେ ଏକ ସାର୍ବଜନୀନ ଘୃଣା ଦୃଷ୍ଟି ଥିଲା, ଯୁଦ୍ଧଧ୍ୱାନ୍ତ ମଣିଷର ଅନ୍ତର କଥାକୁ ମନେ ପକାଇ ସନ୍ତୁଳିତ ହେବାର ପ୍ରବଣତା ଥିଲା । ଏ ସେଇ ମଣିଷର ଅଗ୍ରଗାମୀ ଧ୍ୱଜାଧାରୀ, ଯେ ଜୀବନକୁ ଦେଖିଛି ଶ୍ରମିକର ଝାଳରେ, ଝାଳର ଗନ୍ଧରେ ଖୋଜିଛି ଜୀବନର ସୌରଭ, ମେହନତି ମଣିଷ ନିକଟରେ ଦେଖିଛି ସକଳ ସମ୍ଭାବନାର ଏକ ଅତୁଟ ଶୃଙ୍ଖଳ, କାରଖାନାର କଳାଧୂଆଁରେ ଜର୍ଜରିତ ମୁଗୁନି ମଣିଷ ନିକଟରେ ଖୋଜିଛି ପ୍ରଶାନ୍ତିର ଆଲିଙ୍ଗନ । ତାହା ହିଁ ତାଙ୍କୁ କବିତ୍ୱ ଦେଇଥିଲା । ସ୍ୱପ୍ନ ନୁହେଁ, ଜୀବନର ମୁହାଁମୁହିଁ ଛିଡ଼ା ହୋଇ ସବୁ ରକ୍ତଧାରକୁ ଅମୃତ ଧାରାରେ ପରିଣତ କରିବାର ଏକ ଅଚିନ୍ତନୀୟ ଦୁର୍ବାରତା ହିଁ ତାଙ୍କୁ କରିଥିଲା କବି । ନୈରାଶ୍ୟର ଅନ୍ଧକାର ନାହିଁ, ନେତିବାଦର ଆବରଣ ନାହିଁ, ଅତ୍ୟାଚାରୀ, ଶୋଷକ, ଫାସିଷ୍ଟ ଶକ୍ତି ବିରୁଦ୍ଧରେ ଏକ ସାଲିସ୍ ବିହୀନ ମାନସିକ ସଂଗ୍ରାମର ପ୍ରସ୍ତୁତିପର୍ବ - ସଚ୍ଚି ରାଉତରାୟ । ଦୃପ୍ତ କଣ୍ଠରେ ଯେ କହିଥିଲେ ସେଦିନ -



ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟ

> ''ଧରଣୀର ରାଜପଥେ ଚାଲୁ ଚାଲୁ ମୁହିଁ
> ଯେ ବ୍ୟଥା ବାଜିଛି ବୁକେ ମଣିଷର ଅପମାନ ଛୁଇଁ
> ତାକୁଇ ଦେଇଚି ବାଣୀ, କହିଚି ସେ ସାଧାରଣ କଥା,
> ଭାଷାର କପଟ ଜାଲେ ରଚିନାହିଁ ମାୟାଜାଲ ତଥା ।।''
>
> (କବିତାର କବର)

ଏଇ ମଣିଷର କଥା କହିଲାବେଳେ, ମଣିଷକୁ ଖୋଜିଲାବେଳେ, କୋଣାର୍କର ସ୍ନିଗ୍ଧ କଳାର ରୂପରେ ଏକ ଜାତିର କବରକୁ ସେ ଅନୁସନ୍ଧାନ କରିଛନ୍ତି । ପ୍ରତିମା ନାୟକର ବେଶ ଓ ହସର ଆବରଣ ତଳେ କର୍ମଜୀବୀ ମହିଳାର ଜୀବନ ଯୁଦ୍ଧକୁ ଆବିଷ୍କାର କରିଛନ୍ତି । ସବୁଠି ଅସମାନତାର ଅସନ୍ତୋଷ - ଘରେ, କର୍ମକ୍ଷେତ୍ରରେ, ବାହାରେ, ଜୀବନରେ, ନିଭୃତରେ, ଗୋପନରେ ଅବା ପ୍ରକାଶ୍ୟରେ ମଣିଷର ଏ କଂକାଳ ପ୍ରାୟ ଯାତ୍ରାରେ ବିଦ୍ରୋହୀ କବିମନ ସାଲିସ୍ ଖୋଜିନି । କଇଁଫୁଲର ନୈସର୍ଗିକ ଦ୍ୟୁତିରେ ବିମୋହିତ ହୋଇନି, ରୂପେଲି ଜହ୍ନର ସ୍ୱପ୍ନ ରାଜ୍ୟର ଠିକଣାରେ ପ୍ରମତ୍ତ ହୋଇନି କିମ୍ବା କୋଇଲିର କୁହୁତାନରେ ଅଭିସାରର ଉଦ୍ଦାମତା ଖୋଜିନି । ରୁଗ୍ଣ ଦେବତ୍ୱ ପ୍ରତିବଦଳରେ ସେ ଖୋଜିଛି ସବଳ ପଗୁତ୍ୱ । ତ୍ୟାଗପୂତ ଜୀବନଧାରା ବଦଳରେ ସେ ଖୋଜିଛି ଏକ ପ୍ରତିଷ୍ଠାଦୀପ୍ତ ସଂଘର୍ଷପୂର୍ଣ୍ଣ ଜୀବନ ସଂପଦ, ସ୍ନିଗ୍ଧ ଜୀବନ ସୌରଭ ବଦଳରେ ସେ ଚାହିଁଚି ଏକ ଫଳାକାଂକ୍ଷୀ ଦୁର୍ବିନୀତ ପୁରୁଷାକାରର ଔଦ୍ଧତ୍ୟ ।

ଏ ଭାବ, ଏ ଭାଷା ପୂର୍ବରୁ ଅଶ୍ରୁତ ଥିଲା ଓଡ଼ିଆ ସାହିତ୍ୟରେ । ହାତରେ ଜ୍ୱଳନ୍ତ ଆଲୋକ ବର୍ତ୍ତିକା ଧରି, ଭାଷାର ଦାହ୍ୟ ଶକ୍ତିରେ

ସୁରମ୍ୟ ଲାସ୍ୟମୟୀ ସାହିତ୍ୟର ସାମ୍ରାଜ୍ୟକୁ ରୁଧିର ସିକ୍ତ କରିବାର ଏକ ପ୍ରମତ୍ତ ପ୍ରଚାର । ଭାବରେ ଅଲକ୍ଷ, ଭାଷାରେ ବି ଅନୁପଲକ୍ଷ । ଏକା ସେଇ ହିଁ ତାଙ୍କର ପୂର୍ବସୂରୀ ଏବଂ ଉତ୍ତର ଦାୟାଦ ।

ଏଇ ପ୍ରଚଣ୍ଡ ବିଦ୍ରୋହୀ ବିପ୍ଳବୀ କବିଙ୍କର ଗାଳ୍ପିକ ବ୍ୟକ୍ତିତ୍ୱ କିନ୍ତୁ ଏକ ଉତ୍ତରଳ ଉଜାଣୀ ସ୍ରୋତସ୍ୱିନୀ । ଗାଁଗହଳିର ଅଗଣନ ନିରୀହ ମଣିଷର ସଂଭ୍ରମ ଆତଯାତ, ତା' ଭିତରେ ମାଲିକର ନିର୍ଯ୍ୟାତନା, ସବଳର ଅତ୍ୟାଚାର, ଟିକେ ଉପରେ ଥିବା ମଣିଷର ତଳକୁ ଝୁଲି ରହିଥିବା ମଣିଷ ପ୍ରତି କଠୋର ନିଷ୍ଠୁରତା, ସମାଜର ନିଷ୍କରୁଣ ଭାବ ରୂପର ଏକ ସଂଘବଦ୍ଧ ପ୍ରତିଛବି ଯେପରି ତାଙ୍କର ଛାତି ତଳେ ଚାପି ହୋଇ ରହି କ୍ଷତାକ୍ତ କରି ଚାଲିଥିଲା ଏକ ଦରଦୀ ମଣିଷକୁ । ଏ ସବୁଠି ଦେଖିହୁଏ ଛାତିରେ ଛାତିଏ ଜ୍ୱାଳା ନେଇ ବଂଚିତରେ ସାହାଯ୍ୟ ପାଇଁ ଅଣ୍ଟା ଭିଡ଼ୁ ଥିବା ଗୋଟିଏ କ୍ରମ ସାହସୀ ମଣିଷକୁ, କହିବାକୁ ଯେମିତି ପ୍ରସ୍ତୁତ ହେଉଛି, ସେ କହିବା - ଆହ୍ୱାନରେ ପରିଣତ ହେଉଛି - ପୁଣି ବିପ୍ଳବ ଓ ବିଦ୍ରୋହର ଉଲଙ୍ଗ ଶାଣିତ ଆହ୍ୱାନର ଏକ ପ୍ରଚଣ୍ଡ ଧାରାରେ ପାଲଟି ଯାଉଛି ଧୀରେ ଧୀରେ ।

ଏକଦା ଯୁବନେତା ଓ ଶ୍ରମିକନେତା ସଚ୍ଚି ରାଉତରାୟ - ଉଗ୍ର ସାମାଜିକତା ଭଉଁରୀରେ ଥାଇ ବି ତାଙ୍କର କଳାକୃତିରେ ଏହି ବିପ୍ଳବାଗ୍ନିର ପ୍ରତିଫଳନର ସୁଯୋଗ ସେ ଦେଇ ନାହାନ୍ତି । ତାଙ୍କର କୌଣସି ଗଳ୍ପ ଉଦ୍ଦେଶ୍ୟମୂଳକ ବୋଲି ପ୍ରତୀତ ହୁଅନ୍ତି ନାହିଁ । ଅନୁଭୂତିର ଅମଳିନ ରୂପଧାରା, ବ୍ୟଙ୍ଗମୟ ଅନ୍ତଃଦୃଷ୍ଟି କିମ୍ବା ନିର୍ଭୀକ ନିରୋଳା କଥାକୁହାକୁ ଅତିକ୍ରମ କରିଯାଇ ଏକ ନିର୍ଦ୍ଦିଷ୍ଟ ଆଲୋକ ହିଁ ଦେବ, ଏଇ ଧାରଣାରେ ସେ ଲେଖିଥିଲେ ଅନେକ ଗଳ୍ପ । କବିତା ତୁଳନାରେ ଯଥେଷ୍ଟ କମ୍, କିନ୍ତୁ ଗୁଣାତ୍ମକ ଦୃଷ୍ଟିରୁ ବିବିଧ । ଉତ୍କଳୀୟ ସମାଜର ଲାସ୍ୟମୟ, ଘୁଣଖିଆ ପ୍ରତ୍ୟୟ ଓ ପ୍ରତୀତିର ଲମ୍ବମାନ ରୂପ ।


ଡଃ କିଶୋରୀ ଚରଣ ଦାସ

ସମକାଳୀନ ଗାଳ୍ପିକଙ୍କଠାରୁ ତାଙ୍କର ଗଳ୍ପ କଳାକୌଶଳ ହିଁ ତାଙ୍କର ସ୍ୱାତନ୍ତ୍ର୍ୟର ପରିଚାୟକ । ସାମାଜିକତାର ବିଲକ୍ଷଣକୁ ସୂଚାଇ ଦେଇ ମୂଳ ଚରିତ୍ର ପ୍ରତି ଏକ ପ୍ରଲମ୍ବିତ ସମ୍ବେଦନଶୀଳତା ଜାଗ୍ରତ କରିବା ପାଇଁ ତାଙ୍କର ଅଭିନବ ଘଟଣା ବର୍ଣ୍ଣନାରେ ଏବଂ ଅଯୌକ୍ତିକ ଦଣ୍ଡର ବୀଭତ୍ସତାରେ, ଅଶାନ୍ତ ଦୃଷ୍ଟିକଟୂ ଅନିଭୋଗର ବର୍ଣ୍ଣନାରେ ତରଳିଯାଏ ପାଠକର ପ୍ରାଣ । କହି ଉଠେ ଯେମିତି - ବେଶୀ ହେଇଗଲା, ଦେଖି ହେବ ନାହିଁ କି ସହି ହେବ ନାହିଁ ଆଉ । ଘଟଣାର ଆଢୁଆଳରେ ଚରିତ୍ରର ଚିତ୍ରାର୍ପିତ ରୂପ, ସ୍ୱାଭାବିକତାଠାରୁ ବଳିଯାଏ । ସବୁ ସମ୍ବେଦନା ଝାଡ଼ିଝୁଡ଼ି ନେଇ ଶୂନ୍ୟ କରିଦିଏ ପାଠକ ବା ଶ୍ରୋତାକୁ । ଏହା ହିଁ ତାଙ୍କର ମହତ୍ୱ । ଘଟଣାକୁ ଅଘଟଣ ରୂପେ ବର୍ଣ୍ଣିବାରେ, ମଣିଷକୁ ସିଦ୍ଧ ଓ ମାନ୍ତ୍ରିକ କରି ଦେଖିବାର ବିଳାସରେ ।

ତାଙ୍କର ସଂଭ୍ରାନ୍ତ ଆଲୋଚନାର ବ୍ୟାପ୍ତି, ଔପନ୍ୟାସିକତାର ବିସ୍ମୟଦୀପ୍ତ ଅଭିଯାନ, କଥାକୁହାର ଦୁର୍ବାର ସରଳତା, ସବୁ ହିଁ ଯେମିତି କେବଳ ତାଙ୍କର । ସାହିତ୍ୟ ଓ ସମାଜର ଅନ୍ଧାରୀ ମୂଳକକୁ ସୂର୍ଯ୍ୟ ଦୀପ୍ତ କରିବାର ଏକ ସଶ୍ରଦ୍ଧ ଅଙ୍ଗୀକାର ।

ଉତ୍କଳର ବୌଦ୍ଧିକ ସମାଜରେ ସେ ମନେ ରହିବେ - ସ୍ୱଚ୍ଛନ୍ଦତାବାଦ, ପ୍ରୟୋଗବାଦ, ପ୍ରଗତିବାଦ ଭଳି ଆନ୍ତର୍ଜାତିକ ଭାବଚେତନାର ଅନୁବର୍ତ୍ତକ ଭାବରେ, ସାଧାରଣ ଜନତା ନିକଟରେ ମନେ ରହିବେ - ଟମି, ହାତ, ମଶାଣିର ଫୁଲ, ଅନ୍ଧାରୁଆ, ମାଟିରତାଜ ଇତ୍ୟାଦିର ଜଣେ ନିର୍ଭୀକ ସାଳିସ୍ୱିହୀନ ଗାଳ୍ପିକ ହୋଇ, ଯୁବକମାନଙ୍କ ପାଖରେ ମନେ ରହିବେ, 'ବାଜି ରାଉତ'ର ଭାବୋଚ୍ଛ୍ୱାସ ପାଇଁ ଏବଂ ଉତ୍କଳୀୟଙ୍କ ପାଖରେ ମନେ ରହିବେ, 'ଛୋଟ ମୋର ଗାଆଁଟି'ର ଜଣେ ଜୀବନ ସଂବେଦୀ, ପ୍ରକୃତି ଲୋଭୀ, ଗ୍ରାମ୍ୟ ଜୀବନର ଅରୂପ ରୂପକାର ହୋଇ ।

- ୨ -

ଡଃ କିଶୋରୀ ଚରଣ ଦାସ, ଜଣେ ମର୍ମଗ୍ରାହୀ କଥାକାର, ଆକାଉଣ୍ଟସ୍ ଓ ଅଡିଟ୍ ବିଭାଗର ଜଣେ ପଦସ୍ଥ ଅଫିସର ଭାବରେ ବୃତ୍ତିନିଷ୍ଠ ଜୀବନର ହିସାବ ନିକାସର ଅନ୍ତରାଳରେ ମଣିଷର ହିସାବ ରଖୁଥିବା ଜଣେ ସ୍ୱପ୍ନମୟ ବ୍ୟସ୍ତ କଳାକାର । ଭଂଗା ଖେଳନା, ଲକ୍ଷ୍ୟ ବିହଙ୍ଗ, ମଣିହରା, ଠାକୁର ଘର ଇତ୍ୟାଦି ସଂକଳନର ପ୍ରଶସ୍ତ କାନ୍‌ଭାସ ଉପରେ ମଣିଷକୁ ଆଙ୍କିବାର ସଶ୍ରଦ୍ଧ ପ୍ରତିଶ୍ରୁତିରେ ସିଦ୍ଧି ଓ ପ୍ରତୀତି ହାସଲ କରିଥିବା ଜଣେ ବିପୁଳ ମାନବାତ୍ମା ।

ଆଧୁନିକ ମଣିଷର କଳ୍ପିତ ମାୟାଜାଲକୁ ଭେଦ କରି ତା'ଭିତରୁ ଅନିର୍ବାର୍ଯ୍ୟ ଅବସାଦକୁ ସେ ଅନ୍ୱେଷଣ କରିଛନ୍ତି । ବହୁବିଧ ସଂଶୟପୂର୍ଣ୍ଣ ଜଟିଳ ଜୀବନସତ୍ତାର ଅନୁସନ୍ଧାନରେ ଏକ ସୁଉଚ୍ଚ ପ୍ରାସାଦ ସେ ନିର୍ମାଣ କରିଛନ୍ତି । ମଣିଷର ପରିଚୟରେ ସେ ଖୋଜିଛନ୍ତି ବିଚିତ୍ର ଇଲାକା । ମଧ୍ୟବିତ୍ତ ଚରିତ୍ରମାନଙ୍କର ମନଗହନକୁ ପ୍ରବେଶ କରିବା ଯେପରି ତାଙ୍କର ସ୍ୱାଧିକାର । ସେଇଠୁ ଜୀବନର ବହୁ ମହାର୍ଘ୍ୟ ରହସ୍ୟ ଭେଦ କରିବାରେ ଏକ ଉଚ୍ଚାଟ ବିଳାସ ସେ ଉପଲବ୍ଧି କରିଛନ୍ତି । ମନର ଅଜଣା ଇଲାକାର ସ୍ୱପ୍ନଚାରଣରେ ପ୍ରବୃତ୍ତ ଜଣେ କ୍ଳାନ୍ତିହୀନ କଳାକାରର ସ୍ପର୍ଦ୍ଧା ନେଇ ସେ ପରିପୂର୍ଣ୍ଣ । ପୁଣି ବହିର୍ମୁଖୀ ଚେତନା ଓ ଅନ୍ତର୍ମୁଖୀ ଭାବନାର ରୂପକାର ଭାବରେ ସେ ଚଞ୍ଚଳମନା । ସବୁଠି ଜଣେ ସମ୍ବେଦନଶୀଳ ପ୍ରଜ୍ଞାଦୀପ୍ତ ପ୍ରକାଶ ପ୍ରବଣ ପଥଚାରୀ ।

ତାଙ୍କ ଗଳ୍ପଗୁଡ଼ିକର ବିଚିତ୍ର ପ୍ରବୃତ୍ତି ଜଣାପଡ଼େ । କୌଣସିଠାରେ ସେ ନୀତି କିମ୍ବା ଆଦର୍ଶର ସଂସ୍ଥିତି ଭିତରେ ସାମାଜିକ ପରିବର୍ତ୍ତନର ସ୍ୱପ୍ନ ଦେଖି ନାହାନ୍ତି । ଯାହାକୁ ଛୁଇଁଛନ୍ତି, ଜଣେ ଭିନ୍ନ ମାନବାତ୍ମାର

ରୂପ ନେଇ ସେ ଚରିତ୍ର ଆବିର୍ଭୂତ ହୋଇଛି । ସେ ଆବିର୍ଭାବରେ ଅଛି ସ୍ୱୀକୃତି, ଅଛି ନିଚ୍ଛକ ନିଷ୍କପଟ ସ୍ୱୀକାରୋକ୍ତି । ଯେପରି ସଂକୋଚହୀନ ଭାବରେ କହିପାରୁଛି ସେ, ମୋ' ଭିତରେ ଏସବୁ ଅଛି, ଦ୍ୱନ୍ଦ୍ୱ ଅଛି, ସମର୍ପଣ ଅଛି, ବିଶ୍ୱାସ ଅଛି, ଅବିଶ୍ୱାସ ଅଛି, ସଂକଳ୍ପ ଅଛି, ସ୍ପର୍ଦ୍ଧା ଅଛି, ପୁଣି ଅଛି ବିଶ୍ୱଜନକୁ କରୁଣାରେ ଆର୍ଦ୍ର କରୁଥିବା ଏକ ଚିକ୍‌ଚିକ୍ ମନର ପଟୁଆର । ପାରିବତ ଦେଖ - ସବୁଠି ଅଛି - ସବୁଠି ।

ଏଇ ଧାରା ଭିତରେ କିନ୍ତୁ ତାଙ୍କର ପ୍ରୟୋଗବିଧି ଚମତ୍କାର, ନୂତନ । ଆତ୍ମକୈନ୍ଦ୍ରିକ ଓ ଆତ୍ମମୁଖୀ ଧାରା, ଭାଷା ଓ ଚରିତ୍ରରେ ସଂକ୍ଷିପ୍ତତା, ବହୁକଥନର ପ୍ରଗଲ୍‌ଭ ବିସ୍ତାରହୀନତା, ସିମ୍ବଲିକ୍ ଓ ଇଂଗିତଧର୍ମୀ ବସ୍ତୁ ବସ୍ତୁତ୍ୱ ଓ ମନନଶୀଳତା ତାଙ୍କୁ ପ୍ରଭାବଶାଳୀ ଏକକ ସୂର୍ଯ୍ୟ ଦୀପ୍ତିରେ ଦୀପ୍ତିମନ୍ତ କରିଥିଲା ।



ଗୁରୁ ପ୍ରସାଦ ମହାନ୍ତି

ବୌଦ୍ଧିକ ଜଗତରେ ସେ ମନେ ରହିବେ ତାଙ୍କର ଐକାନ୍ତିକ ଚରିତ୍ରାନୁଶୀଳନ ପାଇଁ । ପୁରୁଷାକାରର ଜୟ ଜୟକାର ପାଇଁ, ଆତ୍ମତୁଷ୍ଟିର ଆବରଣ ତଳେ ଉଦ୍‌ଯନ୍ତ୍ରୀ ହେଉଥିବା ମଣିଷର ସ୍ୱରୂପ ଉଦ୍‌ଘାଟନ ପାଇଁ ଜଣେ ଦରଦୀ କଥାକାର ଭାବରେ । ଜଣେ ବୁଦ୍ଧିଦୀପ୍ତ ସମାଲୋଚକ ଭାବରେ, ଜଣେ ଜାତି ସଚେତନ, ଭାଷା ସଚେତନ ଔପନ୍ୟାସିକ ଓ ସ୍ରଷ୍ଟା ଭାବରେ ।

- ୩ -

ଗୁରୁପ୍ରସାଦ ମହାନ୍ତି - ଆଧୁନିକ ଓଡ଼ିଆ କବିତାକୁ ସ୍ୱାଚ୍ଛନ୍ଦ୍ୟ ଦେଇଥିବା, ଆଙ୍ଗିକ ଓ ଶୃଙ୍ଖଳାରେ ଅନମନୀୟ ଋଜୁତା ଦେଇଥିବା, ଭାବ ଓ ଭାଷାକୁ ଐଶ୍ୱର୍ଯ୍ୟ ମଣ୍ଡିତ କରିଥିବା, ଛନ୍ଦ ଓ ଗୀତିରେ ବିଳାସ ଓ ନେତୃଗୁଣ ଦେଇଥିବା ଏବଂ ସର୍ବୋପରି ଅନ୍ତର୍ନିହିତ ଜୀବନପ୍ରତି ଅଭିନବ ଦୃଷ୍ଟିଭଙ୍ଗୀରେ ସମୃଦ୍ଧ ଓ ସଜ୍ଜିତ କରିଥିବା, ଜଣେ ବହୁ ଚର୍ଚ୍ଚିତ ଓ ବହୁ ଅନୁସୃତ କବି ।

ତାଙ୍କର କ୍ଷୁଦ୍ର କବିତାରେ ସେ ଜଣେ ଭିନ୍ନ ସତ୍ତା-ଦୀର୍ଘ କବିତାରେ ଆଉ ଜଣେ ଭିନ୍ନ ରସିକ । କ୍ଷୁଦ୍ର କବିତାରେ ମନର ପୀଡ଼ା ଘନୀଭୂତ ହୋଇ ପ୍ରକାଶିତ । ଗୀତାତ୍ମକତା ଓ ନାଟକୀୟତା ତା'ର ଧର୍ମ । ଭାବ ସଂହତି ଓ ବ୍ୟଗ୍ରତା ଏହାର ପ୍ରାଣ । କିନ୍ତୁ ଦୀର୍ଘ କବିତାରେ ଗନ୍ଧାଶ୍ରୟୀ ଜଣେ ମନ୍ଥର ଜୀବନଦର୍ଶୀ କବି ।

ଗୁରୁ ମହାନ୍ତିଙ୍କ କାବ୍ୟଧାରାରେ ଏକ ବିଚିତ୍ର ଆତ୍ମୀୟତା ଲକ୍ଷ୍ୟ କରିହୁଏ । ସେ ଆକାଶର କବି ହୋଇପାରି ନାହାନ୍ତି, କିମ୍ବା ସମୁଦ୍ରର କବି ବି ନୁହନ୍ତି । ଆଧ୍ୟାତ୍ମ୍ୟ ବାସନାଠାରୁ ବହୁ ଦୂରରେ ତାଙ୍କର ଚାରଣ ଭୂମି । କିନ୍ତୁ ଆକାଶ ଓ ସମୁଦ୍ର ମଝିରେ ପରିବ୍ୟାପ୍ତ ମାଟିର ଆକର୍ଷଣ ଓ ମୋହରେ ଆଚ୍ଛନ୍ନ ଜଣେ ଦେହର କବି । ଜନ୍ମ-ମୃତ୍ୟୁର ସୀମା ମଧ୍ୟରେ ଆବଦ୍ଧ ଜଣେ ଉଚ୍ଚାଟ ନାଉରୀ । ହାତରେ ଆହୁଲା ଅଛି - ପାଖରେ ନାଆ ବି ଅଛି, କିନ୍ତୁ ଜୀବନ ପାରି ହେବାର ସାଧନ ଅନୁସନ୍ଧାନରେ କ୍ଲାନ୍ତିହୀନ ଜଣେ ସଂଭ୍ରାନ୍ତ ଭିକାରୀ ।

ମୁକ୍ତିର ସ୍ୱପ୍ନରେ ସେ ପ୍ରଲୁବ୍ଧ ନୁହନ୍ତି । କେଉଁଠୁ ମୁକ୍ତି ! ଜୀବନରୁ ତ ମୁକ୍ତି ନାହିଁ - ମୃତ୍ୟୁରୁ ବା ମୁକ୍ତି କାହିଁ ? ସେଥିପାଇଁ ସେ ସବୁଠି ଖୋଜିଛନ୍ତି ଜୀବନର ଅର୍ଥ, ଦେହରେ, ବିଦେହରେ, ଆକାଶର ବ୍ୟାପ୍ତିରେ, ବାଲୁଚରର ବିସ୍ତୃତିରେ, ସମୁଦ୍ରର ଅପାର୍ଥୀବତାରେ, ଅସରନ୍ତି ବାଟରେ, ସମୟର ପ୍ରସାରିତ ଛାତିରେ, ଭଲ ପାଇବାର ଯୁକ୍ତିରେ ଓ ଯୁକ୍ତିହୀନତାରେ, ସନ୍ଦେହରେ, ପ୍ରତ୍ୟାର୍ପଣରେ, ଚମ୍ପା ଫୁଲରେ, ସୁନାର ଝରଣାରେ, ତାରାର ଦେଶରେ, ଜହ୍ନଇଲାକାରେ, ଫୁଲଭର୍ତ୍ତି ଗଛରେ, ଗଛଭର୍ତ୍ତି କାକଳିରେ, ନିଛାଟିଆ ଘରେ, ପଉଷର ପଳିତ ମୂର୍ଚ୍ଛନାରେ - ସବୁଠି ଖୋଜିଛନ୍ତି ଜୀବନକୁ, ଜୀବନ ଲୋଭୀ ମଣିଷକୁ । ସବୁଠି କିନ୍ତୁ ସେ ନିଜକୁ ପାଇଛନ୍ତି - ମଣିଷର ବାସନାରେ କୁଡ୍ବୁଡୁ ଜଣେ ଅନୁଚର ଭାବେ । ତେଣୁ ପୃଥିବୀର ସଂପର୍କରେ, ଦେହର ବାସ୍ନାରେ, ସବୁଠି ନିଜର ଉପସ୍ଥିତି ପାଇଁ ସେ ବ୍ୟଗ୍ର । କାମନା ଓ ତୃଷ୍ଣାରେ ଆନାସିକ ମଗ୍ନ ଜଣେ ଦେହ ଲୋଭୀ ମରାଳ - ଅମୃତ ସନ୍ଧାନୀ - ଦେହରେ - ଅଦେହରେ ବି ।

ତେଣୁ ତାଙ୍କୁ ଆବିଷ୍କାର କରି ହୁଏ ଜଣେ ଜୀବନ ଲୋଭୀ ଉଚ୍ଚକିତ ସ୍ୱପ୍ନବିଳାସୀ କବି ଭାବରେ । ଜୀବନ ସାରା ଖୋଜିବାର ଜଗତରେ ରହି ନିଜକୁ ସେ ଛାଡ଼ି ପାରିଛନ୍ତି ନାଁ ନିଜଠି ହଜି ପାରିଛନ୍ତି । ଆପଣାକୁ ଖୋଜୁ ଖୋଜୁ ଏକ ଅପହଂଚରେ ପହଂଚର ଜ୍ୱାଳାରେ ଘୁରି ବୁଲିଛନ୍ତି ଜୀବନସାରା - ଜଣେ ଜୀବନ ବାଉଳା କବି ଭାବରେ । ରୋମାଣ୍ଟିକ - କିନ୍ତୁ ବାସ୍ତବତାର କଣ୍ଟାଘାତରେ ଆହତପକ୍ଷ ଏକାକୀ ନିଃସଙ୍ଗ ସ୍ୱପ୍ନଚାରୀ - ଲକ୍ଷ୍ୟ ବଡ଼ ନୁହେଁ, ମାର୍ଗ ବଡ଼ ଯାହା ପାଇଁ । ମୁକ୍ତିବଡ଼ ନୁହେଁ - ଜୀବନ ବଡ଼ ଯାହା ପାଇଁ ।

ବକ୍ତବ୍ୟରେ ନିରାଳମ୍ବ ସଂପ୍ରସାରଣ, ସମୟ ସଚେତନ ସଂବେଦୀ ନୂତନ ଅନୁଭବର ଭାବୈଶ୍ୱର୍ଯ୍ୟ, ପରମ୍ପରା ସହିତ ସଂପର୍କ ସ୍ଥାପନର ଅଭିନବ ଦୃଷ୍ଟିଭଂଗୀ ଏବଂ କାବ୍ୟ ଭାଷାର ସମୃଦ୍ଧ, କାନଛୁଆଁ, ମନଛୁଆଁ ସଂଭ୍ରାନ୍ତ ପ୍ରୟୋଗ ମାଧ୍ୟମରେ ସେ ପାଠକର ନିଭୃତ ହୃଦୟରେ ଛାଇ ଯାଇଛନ୍ତି - ଖୋଲା ଛାତିଟିଏ ହୋଇ ।

ତେଣୁ ସେ ମନେ ରହିବେ ଜଣେ ନିଖୁଣ ଛନ୍ଦକାର ଭାବରେ, ଜୀବନଲୋଭୀ ସତତ ଭ୍ରମଣଶୀଳ ଅତୃପ୍ତ ମରାଳ ଭାବରେ ଏବଂ ଜୀବନପ୍ରତି ଏକ ସମ୍ଭ୍ରାନ୍ତ ଦୃଷ୍ଟି ନେଇ - ଛାଡ଼ି ଯାଇଥିବା ନିଜର

କାବ୍ୟରୂପୀ ସ୍ୱୀକୃତି ପତ୍ର ପାଇଁ ।

ଏଇ ତିନି ଜଣ - ଓଡ଼ିଆ ସାହିତ୍ୟକୁ ଆଙ୍ଗିକ ଓ ଆତ୍ମିକ ଦିଗରୁ ଆଧୁନିକତାରେ ଚକିତ ଉଦ୍‌ଭାସିତ କରିଥିବା ତିନୋଟି ସୂର୍ଯ୍ୟଙ୍କର ଅସ୍ତ - ଯେପରି ଏକ ପୂର୍ବ ଲେଖା ।

ସବୁ ଲେଖା
ଲେଖାଥାଏ ଅଦେଖା ହାତରେ
ଅବା
ଲେଖା ଥାଏ ବହୁତ ଦିନରୁ,
ଏମିତି ଆସିବ ଦିନେ ସୂର୍ଯ୍ୟାସ୍ତର ଲଗ୍ନ
ବିଚିତ୍ର ବର୍ଣ୍ଣାଳି ଦେଇ ସବୁ ସୂର୍ଯ୍ୟ
ଛୁଇଁ ଛୁଇଁ ଯିବ ଅସ୍ତାଚଳ ।
ଅଫେରା ନଦୀର ସ୍ରୋତେ
ଆପଣାକୁ ଖୋଜୁ ଖୋଜୁ
ମଣିଷ ଭିତରେ ।
କେବେ ଜହ୍ନ ଆଲୁଅରେ ଅବା ଛାଇ ଅନ୍ଧକାରେ
ସବୁସୂର୍ଯ୍ୟ ହଜି ଯିବେ ସୁବର୍ଣ୍ଣ ଦିନାନ୍ତେ ।
ସୂର୍ଯ୍ୟାସ୍ତର ରଂଗ
ଛାଇଯିବ ଆକାଶୁ ଆକାଶ ଯାଏ,
ସମୁଦ୍ରୁ ସମୁଦ୍ର ଯାଏଁ, ମାଟିସାରା ।
ତେଣୁ ତୁମ ପାଇଁ
ତୁମ ପାଇଁ ହେ ମଣିଷ ପରିଚୟ ଲୋଭୀ,
ମଣିଷର ଜୟ ଜୟକାରେ
ତୁମେ ତ ରହିବ ଜୀଇ
ଗୋଡ଼ି, ମାଟି, ପାଣି ଆଉ ଆକାଶର
ପରମ ବ୍ୟାପ୍ତିରେ ।
ଛୋଟ ଛୋଟ ତାରା ଫୁଲ ହୋଇ
ଯୁଗ ଯୁଗ ପାଇଁ ।

ବରିଷ୍ଠ ପ୍ରାଧ୍ୟାପକ, ଓଡ଼ିଆ ବିଭାଗ
ବି.ଜେ.ବି. ମହାବିଦ୍ୟାଳୟ (ସ୍ୱୟଂ ଶାସିତ)
ଭୁବନେଶ୍ୱର

---

# ଉଜ୍ଜ୍ୱଳ ଭବିଷ୍ୟତର ପଥେ ...
## (ସଫଳ କାହାଣୀ)

ପୁରୀ ସହରର ସଦର ଥାନା ଅଞ୍ଚଳରେ ବାସ କରୁଥିବା ସ୍ୱର୍ଗତଃ ଶଶୀଭୂଷଣ କରଙ୍କ ପୁତ୍ର ଶ୍ରୀ ପ୍ରଜ୍ଞମୟ କର ଜଣେ ଶିକ୍ଷିତ ବେକାର ଯୁବକ ଭାବେ ଜୀବନ ଅତିବାହିତ କରୁଥିଲେ । ଏହି ସମୟ ମଧ୍ୟରେ ସେ ସରକାରଙ୍କ ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନା ସମ୍ବନ୍ଧରେ ଅବଗତ ହୋଇ ନିଜେ ଗୋଟିଏ ବିଦ୍ୟୁତ ସଂରଜାମ ବିକ୍ରି ଓ ମରାମତି ଦୋକାନ ଖୋଲିବେ ବୋଲି ମନସ୍ଥ କଲେ । ଏଥିନିମନ୍ତେ ସେ ୨୦୦୦-୦୧ ମସିହାରେ ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନା କାର୍ଯ୍ୟକ୍ରମରେ ସାମିଲ ହୋଇ ପୁରୀଠାରେ ଥିବା ୟୁନାଇଟେଡ୍ ବ୍ୟାଙ୍କ ଅଫ୍ ଇଣ୍ଡିଆଠାରୁ ୬୨ ହଜାର ଟଙ୍କା ଋଣ ଆଣି ପୁରୀ ସହର ରେଡ଼କ୍ରସ୍ ରୋଡ୍‌ଠାରେ ଏକ ବିଦ୍ୟୁତ ସଂରଜାମ ବିକ୍ରି ଓ ମରାମତି ଦୋକାନ ଆରମ୍ଭ କଲେ । ଉକ୍ତ ଦୋକାନରେ ଦୁଇ ଜଣ ଯୁବକଙ୍କୁ ମଧ୍ୟ ନିଯୁକ୍ତି ଦେଇ ପାରିଛନ୍ତି । ଏହି ଦୋକାନରୁ ସେ ମାସିକ ହାରାହାରି ୫ ହଜାର ଟଙ୍କା ଆୟ କରୁଛନ୍ତି । ବର୍ତ୍ତମାନ ଏହି ଦୋକାନଟି ବେଶ୍ ସୁରୁଖୁରୁରେ ଚାଲିଛି । ଏହାଦ୍ୱାରା ଦୋକାନର ଉନ୍ନତି ହେବା ସଂଗେସଂଗେ ବ୍ୟାଙ୍କକୁ ମାସିକ ୧୬୦୦ ଟଙ୍କା ଋଣ ବାବଦକୁ ଶୁଝୁଛନ୍ତି । ବର୍ତ୍ତମାନ ସୁଦ୍ଧା ସେ ବ୍ୟାଙ୍କକୁ ୨୨ ହଜାର ଟଙ୍କା ଋଣ ପରିଶୋଧ କରି ସାରିଲେଣି । ଶ୍ରୀ ପ୍ରଜ୍ଞମୟ କର ଦୋକାନଟିର ଉନ୍ନତି କରିବା ସହିତ ନିଜ ପରିବାରର ଭରଣପୋଷଣ ନିମନ୍ତେ ସକ୍ଷମ ହୋଇପାରିଛନ୍ତି ।

ସୌଜନ୍ୟ : ସୌରଜିତ୍ ଦାସ, ସହକାରୀ ନିର୍ଦ୍ଦେଶକ (ରଚନା), ସୂଚନା ଓ ଲୋକ ସଂପର୍କ ବିଭାଗ

# କଥା ସାହିତ୍ୟ ଶିଳ୍ପୀ କିଶୋରୀ ଚରଣ

କୃଷ୍ଣ ଚନ୍ଦ୍ର ସୁଆର

ଓଡ଼ିଆ କଥା ସାହିତ୍ୟକୁ ଋଦ୍ଧିମନ୍ତ କରିଥିବା ପ୍ରଥିତଯଶା କଥାକାରମାନଙ୍କ ମଧ୍ୟରେ କିଶୋରୀ ଚରଣ ଦାସ ହେଉଛନ୍ତି ଅନ୍ୟତମ । ଦୀର୍ଘ ଚାଳିଶ ବର୍ଷରୁ ଊର୍ଦ୍ଧ୍ୱକାଳ ନିରବଚ୍ଛିନ୍ନ ସାଧନାକରି ସେ ଓଡ଼ିଆ କଥା ସାହିତ୍ୟକୁ ଆନ୍ତର୍ଜାତୀୟ ସ୍ତରରେ ମର୍ଯ୍ୟାଦା ଦେଇଛନ୍ତି ।

ଏକାଧାରରେ ସେ ଥିଲେ ଜଣେ ଔପନ୍ୟାସିକ, ଗାଳ୍ପିକ, କବି, ସୁପ୍ରଶାସକ, ଓଡ଼ିଶା ସାହିତ୍ୟ ଏକାଡ଼େମୀର ପୂର୍ବତନ ସଭାପତି ଓ ମିଷ୍ଟଭାଷୀ ଭାବରେ ସର୍ବଜନ ପ୍ରଶଂସିତ ।



ଡଃ କିଶୋରୀ ଚରଣ ଦାସ

୧୯୨୪ ମସିହା ମାର୍ଚ୍ଚ ୧ ତାରିଖରେ ଏହି ପ୍ରତିଭା ସଂପନ୍ନ ବ୍ୟକ୍ତିଙ୍କର ଆବିର୍ଭାବ ହୁଏ କଟକର ଖଟ୍‌ବିନ୍ ସାହିରେ । ତାଙ୍କ ପିତାଙ୍କ ନାମ ବିପ୍ରଚରଣ ଦାସ । ସେ ଥିଲେ ଜିଲ୍ଲା ଜଜ୍ ଓ ମାତାଙ୍କ ନାମ ସୀତାମଣି ଦେବୀ ।

ଓଡ଼ିଆ ଗଳ୍ପ ସଂକଳନ 'ମଣିହରା' ପାଇଁ ସେ ୧୯୭୬ରେ ଓଡ଼ିଶା ସାହିତ୍ୟ ଏକାଡ଼େମୀ, ୧୯୭୪ରେ ପ୍ରଜାତନ୍ତ୍ର 'ଝଙ୍କାର' ପୁରସ୍କାର, ୧୯୭୬ରେ 'ଠାକୁର ଘର' ପାଇଁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ଓ ୧୯୮୬ରେ 'ଭିନ୍ନ ପାଉଁଶ' ପାଇଁ ଶାରଳା ପୁରସ୍କାର ପ୍ରାପ୍ତ ସମେତ ୧୯୯୨ ମସିହାରେ ତାଙ୍କର ସାମଗ୍ରିକ ସାହିତ୍ୟ କୃତି ପାଇଁ ସେ 'ବିଷୁବ' ପୁରସ୍କାର ପାଇଥିଲେ । ଏତଦ୍‌ବ୍ୟତୀତ ଉତ୍କଳ ବିଶ୍ୱବିଦ୍ୟାଳୟ ଏକ ସ୍ୱତନ୍ତ୍ର ଉତ୍ସବରେ ତାଙ୍କୁ ଡି.ଲିଟ୍ ଉପାଧି ପ୍ରଦାନ କରିଥିଲା । ତାଙ୍କର କେତୋଟି ଗଳ୍ପ ଇଂରାଜୀ, ଫ୍ରେଞ୍ଚ ଓ ସ୍ପାନିସ୍ ଭାଷାରେ ଅନୁମୋଦିତ ହୋଇ ତାଙ୍କୁ ଦେଶରେ ଓ ଦେଶ ବାହାରେ ବିପୁଳ ଯଶର ଅଧିକାରୀ କରାଇଛି ।

ବିଶେଷକରି ତାଙ୍କ ଗଳ୍ପରେ ମଧ୍ୟବିତ୍ତ ପରିବାର ଓ ତା'ର ସମାଜ, ଆର୍ଥନୀତିକ ଓ ମନସ୍ତାତ୍ତ୍ୱିକ ସମସ୍ୟାବଳୀକୁ ଅତି ମନନଶୀଳ ଭାଷା ଓ ବିଶ୍ଳେଷଣାତ୍ମକ ରୀତିରେ ପ୍ରକାଶ କରିଛନ୍ତି । ଏ ସମସ୍ତ ଅତ୍ୟନ୍ତ ହୃଦ୍ୟ, ସୁପାଠ୍ୟ ତଥା ବୌଦ୍ଧିକ ପାଠକ ପ୍ରାଣକୁ ଗଭୀର ଭାବେ ଆସକ୍ତ ଓ ଆଚ୍ଛନ୍ନ କରି ରଖେ ।

'ମଣିହରା' ଗଳ୍ପ ସଂକଳନ ହେଉଛି ତାଙ୍କର ଏକ ସୁନ୍ଦର ସୃଷ୍ଟି । ଏହା ୧୯୭୦ ମସିହାରେ ପ୍ରଥମେ ପ୍ରକାଶ ପାଇଥିଲା । ଗ୍ରନ୍ଥଟିର ପ୍ରଥମ ଗଳ୍ପ 'ମଣିହରା' ନାମାନୁସାରେ ଏହି ସଂକଳନର ନାମକରଣ ହୋଇଥିବା ଜଣାଯାଏ । ମଣିହରା ସର୍ପ ନୁହେଁ, ପ୍ରତିଶୋଧ ପରାୟଣା କୌଣସି ବଂଚିତା ପ୍ରେମିକା ନୁହେଁ, ସେ ସନ୍ତାନହରା ଜନନୀ । କରୁଣ ଓ ବାତ୍ସଲ୍ୟ ରସ ଭାବୋଚ୍ଛ୍ୱାସ ଅତ୍ୟନ୍ତ ହୃଦୟସ୍ପର୍ଶୀ । ନିର୍ମଳା ଦେବୀଙ୍କର ଲୁହବୋଳା ଆଖିରୁ ଯେଉଁ ନିର୍ଗତ ହୋଇଛି ନିଆଁ, କୌଣସି ସାନ୍ତ୍ୱନା ତାକୁ ନିଭାଇ ପାରି ନାହିଁ ଥମିଯିବା ପାଇଁ .. । କିନ୍ତୁ ସେ ଯେତେବେଳେ ବୁଝିପାରିଛନ୍ତି ମୃତ୍ୟୁ ସମ୍ମୁଖରେ ମଣିଷ କିପରି ଅସହାୟ, ସେ ଧନୀମାନୀ ଯେ କେହି ହୋଇଥାନ୍ତୁନା କାହିଁକି .. ପ୍ରକୃତି କୋଳରେ ଅଛି କେବଳ ଏ ଅଭିନବ ସୃଷ୍ଟିର ଆନନ୍ଦ, ସେତେବେଳେ ସେ ନିଜ ଆଖିରୁ ନିଗୁଡୁଥିବା ଲୁହ ଓ ବୁକୁଫଟା କୋହ ବ୍ୟତିରେକେ ନିଜ ହୃଦୟର ଶାନ୍ତି ଫେରି ପାଇଛନ୍ତି ।

ତାଙ୍କର ଜନନୀ ପ୍ରାଣ ପୁନର୍ଜୀବନ ଲାଭ କରିଛି । ତାଙ୍କର ପଥହରା ଜୀବନ ନୂଆପଥ ପାଇଛି, ସେ ଚଲାପଥ ଜୀବନ ଓ ଜୀବିକାର .. ସେଥିରେ ଭରପୂର ଅଛି ସାହସ, ଦୃଢ଼ ମନୋବଳ, ଆଉ ବଂଚିବାର ନୂତନ ଉଦ୍ଦୀପନା ।

କିଶୋରୀ ଚରଣ ସିଧାସଳଖ ଭାବରେ ବିଷୟର ଅବତାରଣା କରନ୍ତି, କୌଣସି ବାକ୍‌ଜାଲ ବିସ୍ତାର ପାଇଁ ପ୍ରୟାସୀ ନୁହନ୍ତି । ସହଜ ସ୍ୱାଭାବିକ ଭାଷାରେ କରନ୍ତି ବିନିଯୋଗ ସୃଷ୍ଟିଶୀଳ । ତେଣୁ ତାଙ୍କ ଗଳ୍ପରେ ରହିଛି ନୂଆ ନୂଆ ଅଭିଯୋଜନ, ନୂତନ ଆଂଗିକ ଓ ଆତ୍ମିକ ବିଭବ ।

ବହୁ ସଂଖ୍ୟାରେ ଗଳ୍ପ ଲେଖିଥିଲେ ବି ପ୍ରତ୍ୟେକ ଗଳ୍ପରେ ରହିଛି ଅଜସ୍ର ମୌଳିକତା ଓ ନବଦିଗନ୍ତର ସନ୍ଧାନ .. ।

ଗାଳ୍ପିକଙ୍କର 'ଶୀତ ଲହରୀ' ହେଉଛି ଏକ ଉଲ୍ଲେଖନୀୟ ସୃଷ୍ଟି । ଏଥିରେ କଥାକାର ତରଙ୍ଗାୟିତ ମନୁଷ୍ୟ ମନର ବିଚିତ୍ର ବ୍ୟବଚ୍ଛେଦ କରିଛନ୍ତି । ଦଶଟି ଗଳ୍ପରେ ସନ୍ନିବେଶିତ ଏହି ସଂକଳନରେ ଲେଖକଙ୍କର ଦାର୍ଶନିକ ଦୃଷ୍ଟିଭଂଗୀ ବେଶ୍ ହୃଦୟସ୍ପର୍ଶୀ । ଗଳ୍ପଗୁଡ଼ିକରେ ଏକ ଅଦୃଶ୍ୟ ଭାବସୂତ୍ର ପରିଲକ୍ଷିତ, ଯାହାକି ଲେଖକଙ୍କ ବିଷୟରୁ ବିଷୟାନ୍ତରକୁ ଭାସି ଯାଉଥିବା ମନକୁ ପୁଣି ଥରେ ଏକତ୍ରିତ କରିଦିଏ । ବଦଳି ଯାଉଥିବା ସମୟର ସ୍ୱର, ମୂଲ୍ୟବୋଧର କଥା ଓ ଅଗାଧ ବିଶ୍ୱାସରେ ଭରପୂର କେତେକ ଚରିତ୍ର ମଧ୍ୟରେ ଭାବନାର ଭିନ୍ନ ଭିନ୍ନ ସ୍ତରର ଏକତ୍ର ସମାବେଶ ଦୃଷ୍ଟିଗୋଚର ହୁଏ । ଏଥିରେ ସନ୍ନିବେଶିତ ହୋଇଥିବା ଗଳ୍ପଗୁଡ଼ିକ ମଧ୍ୟରେ ଶୀତ ଲହରୀ, ଇନ୍ଦିରା, ନିଧନ, ସୁଡ଼ଙ୍ଗ, ରାଜବେଶ, ଖେଳ ସରି ନାହିଁ, ବନ୍ୟା ଓ ଝରଣା, ଆପଣା ସୁନା, ଧବଳ ଟଗର ଓ ଧୋରେ ବାୟା ଧୋ ପ୍ରଭୃତି ପ୍ରଧାନ ।

'ଶୀତ ଲହରୀ' ଗଳ୍ପର ନାମ ଅନୁସାରେ ସଂକଳନଟି ନାମିତ । ଗଳ୍ପ ନାୟକ କାର୍ତ୍ତିକ ବାବୁଙ୍କ ଜୀବନ ସଂପର୍କୀୟ ଅଭିଜ୍ଞତା ଓ ଅନୁଭୂତିକୁ ପାଥେୟ କରି ଏ ଗଳ୍ପ ରଚିତ । ବୟୋଜ୍ୟେଷ୍ଠ ଓ ଉଦାରଚେତା ଅଟନ୍ତି କାର୍ତ୍ତିକ ବାବୁ । ତାଙ୍କ ପରିବାରରେ ଏକଦା ଗହଳ ଚହଳ ଲାଗି ରହିଥିଲା । ହୋ ହାଲ୍ଲାରେ ଘର ପୂରି ଉଠୁଥିଲା । ପିଲାମାନେ ଦେଶବିଦେଶରେ ପ୍ରତିଷ୍ଠିତ ଓ ପତ୍ନୀଙ୍କ ତିରୋଧାନ ହେତୁ ଘର ଆଜି ଖାଁ, ଖାଁ କୋକୁଆ ଭୟ । ସବୁ ନୀରବ, ନିଷ୍ପନ୍ଦ । ପରିଣତ ବୟସରେ ପହଁଚି ନିସଙ୍ଗ ରହୁଥିଲେ ମଧ୍ୟ କାର୍ତ୍ତିକ ବାବୁ ମନେକରନ୍ତି ସେ ସୁସ୍ଥ ଓ ପରମୁଖାପେକ୍ଷୀ ନୁହନ୍ତି । ପଡ଼ୋଶୀ ସଦାବିହାରୀ ବାବୁ ବହୁ କୁଟୁମ୍ବୀ ଓ ତାଙ୍କର ପତ୍ନୀ ରୁଗ୍‌ଣା । ସେ ଡି.ଏସ୍.ପି. ଭାବରେ କାର୍ଯ୍ୟ କରି ସଂପ୍ରତି ଅବସର ନେଇଛନ୍ତି । ପତ୍ନୀଙ୍କ ସ୍ୱାସ୍ଥ୍ୟ ଖରାପ ନେଇ ସେ ଚିନ୍ତିତ । ସ୍ୱାସ୍ଥ୍ୟ ନିମିତ୍ତ ସପରିବାର ପୁରୀ ଆସିବା ଅବସରରେ ସଦାବିହାରୀ ବାବୁଙ୍କ ପିଲାମାନଙ୍କ ସହିତ ପରିଚୟ ସମୟରେ ସେ ମାଳିନୀ ନାମ୍ନୀ କିଶୋରୀର ଚଞ୍ଚଳତାରେ ଆକୃଷ୍ଟ ହୋଇଛନ୍ତି । ଛୁଟି କଟାଇବାକୁ ଆସିଥିବା ନିଜ ନାତି ରମୁର ଅନାସକ୍ତ ଜୀବନଧାରା ଉପରେ ମନ୍ତବ୍ୟ ଦେଇଛନ୍ତି । ଏକ ଷ୍ଟାମ୍ପ୍ ଆଲବମ୍ ସେ ମାଳିନୀକୁ ଉପହାର ଦେଇଛନ୍ତି । କିନ୍ତୁ ପରମୁହୂର୍ତ୍ତରେ ସେ ରମୁ ସହିତ ମାଳିନୀକୁ ସମୁଦ୍ର କୂଳରେ ଆବିଷ୍କାର କରି ତଟସ୍ଥ ହୋଇଛନ୍ତି । ପୁନଶ୍ଚ ଖୁବ୍ କମ୍ ଦିନ ପରେ ସମୁଦ୍ର କୂଳରେ ଏକାକୀ ରମୁକୁ ଚିନ୍ତାଗ୍ରସ୍ତ ଦେଖି ସେ ବୁଝି ପାରିଛନ୍ତି ଯେ ମାଳିନୀ ପୁରୀ ଛାଡ଼ି ଯାଇଛି । ଏଥିରେ ସେ କିନ୍ତୁ ବିବ୍ରତ ନୁହନ୍ତି । କାରଣ ଏ ଧରଣର ପ୍ରେମର ଚିରସ୍ଥାୟୀତ୍ୱ ଉପରେ ସେ ଆଦୌ ବିଶ୍ୱାସ କରନ୍ତି ନାହିଁ ।

'ନିଧନ' ଗଳ୍ପ ସାମ୍ବାଦିକ ରଜନୀ ସାମନ୍ତ ଓ ତାଙ୍କର ପତ୍ନୀ ପ୍ରତିଭା ସାମନ୍ତଙ୍କୁ ନେଇ ରଚିତ 'ସୁଡ଼ଙ୍ଗ' ଗଳ୍ପରେ ଓଡ଼ିଆ ଶ୍ରମିକର ଦୀନହୀନ ଜୀବନ ଯାତ୍ରାର ପ୍ରତିଛବି ପରିବେଷିତ ହୋଇଛି । ୧୮ ନମ୍ବର ଶାନ୍ତନୁବାଗ୍‌ର ପିଲା ଖେଳକୁ ନେଇ 'ଖେଳ ସରି ନାହିଁ' ଗଳ୍ପ ରଚିତ । 'ଧୋରେ ବାୟା ଧୋ' ସାଂପ୍ରତିକ ରାଜନୀତିକୁ ଭିତ୍ତିକରି ରଚିତ । ବିଶେଷକରି ସହରୀ ମଣିଷର ଜୀବନ ପ୍ରତି ଦୃଷ୍ଟିଭଂଗୀ, ଜଟିଳ ଓ ସୂକ୍ଷ୍ମ ମନସ୍ତତ୍ତ୍ୱ, ରାଜନୀତି ସଚେତନତାକୁ କେନ୍ଦ୍ର କରି ଗଳ୍ପଗୁଡ଼ିକ ଗଢ଼ି ଉଠିଛି । ଆଧୁନିକ କ୍ଷୁଦ୍ର ଗଳ୍ପ ଭାବରେ ଏ ଗଳ୍ପଗୁଡ଼ିକ ଯେ ସୁଖପାଠ୍ୟ ଓ ବେଶ୍ ବଳିଷ୍ଠ ଏଥିରେ ସନ୍ଦେହ ନାହିଁ ।

ତାଙ୍କର ପୁରସ୍କୃତ ପୁସ୍ତକ 'ଭିନ୍ନ ପାଉଁଶ'ରେ ମଧ୍ୟବିତ୍ତ ମଣିଷ ଜୀବନର ଚିତ୍ର ଓ ଓଡ଼ିଶା ଭିନ୍ନ ଅନ୍ୟପ୍ରାନ୍ତରର ଜୀବନର ଚିତ୍ର ମଧ୍ୟ କେତୋଟି ଗଳ୍ପରେ ପ୍ରତିଭାତ । ଏହି ସଂକଳନଟିରେ ଏଗାର ଗୋଟି ଗଳ୍ପ ସନ୍ନିବେଶିତ ଓ ଏହା ୧୯୮୪ ମସିହାରେ ପ୍ରକାଶିତ । ଏଥିରେ ସ୍ଥାନିତ ହୋଇଥିବା ଗୋଟିଏ ଗଳ୍ପର ନାମାନୁସାରେ ସଂକଳନଟିର ନାମକରଣ ଯେ କରାଯାଇଛି ଏହା ନିଃସନ୍ଦେହ ।

'ଭିନ୍ନ ପାଉଁଶ' ଗଳ୍ପରେ ଜଣେ ଅଷ୍ଟ୍ରେଲିଆନ୍ ଝିଅ ମ୍ୟାରିଲିନ୍‌ର ଭାରତରେ ମୃତ୍ୟୁ ହେବା ଓ ତା'ର ପାଉଁଶକୁ ସଂଗ୍ରହକରି ପହଞ୍ଚାଇ ଦେବାର ଦାୟିତ୍ୱ ସଂପର୍କୀୟାଙ୍କ ଆବେଗ ବେଶ୍ ହୃଦ୍ୟ । ପନ୍ଦର ବର୍ଷ ଲାଓ୍ୱାରିସ୍‌ର ଯେଉଁ ପାଉଁଶ, ହୁଏତ ପଇଁତିରିଶ ବର୍ଷିଆ ମ୍ୟାରିଲିନ୍‌ର ସେଇ ପାଉଁଶ । ଦେହ ପୋଡ଼ିଗଲେ ପାଉଁଶର ଆଉ ପରିଚୟ କ'ଣ ? ସବୁ ପାଉଁଶ ସମାନ । ତେଣୁ ମ୍ୟାରିଲିନ୍‌ର ବୁଢ଼ୀ ମାଆକୁ ଭୁଲାଇ ଦେବାର ପ୍ରଶ୍ନ କେଉଁଠି ? ପାପ କେଉଁଠି ? ପାଉଁଶ ! ଭିନ୍ନ ପାଉଁଶ ବା କିଏ ? ଭଗବାନଙ୍କ ଦୃଷ୍ଟିରେ ସବୁ ଆତ୍ମା ସମାନ । ଯୁଗେ ଯୁଗେ ଭାରତବର୍ଷ ଶାନ୍ତି ଓ ମୁକ୍ତିର ପୀଠ ଭୂମି । ସେଇ ବିଶ୍ୱାସରେ ଦେଶବିଦେଶରୁ ସମୁଦ୍ର ପାରି ହୋଇ ଏଠିକି ପର୍ଯ୍ୟଟକ ଆସନ୍ତି । ଭାରତୀୟ ମନ୍ତ୍ରରେ ଦୀକ୍ଷିତ ହେବା ସଂଗେ ଏଠାରେ ଇହଲୀଳା ସମ୍ବରଣ କରିବାକୁ ମଧ୍ୟ ଶ୍ରେୟ ମଣିଥାନ୍ତି । ଯେଉଁ ବିଶ୍ୱାସ ଅଷ୍ଟ୍ରେଲିଆନ୍ ଝିଅ ମ୍ୟାରିଲିନ୍‌ର ବଦ୍ଧପରିକର ଥିଲା ।

'ଚିତ୍ରାଙ୍ଗଦାର ଚିଟାଉ' ଗଳ୍ପ ମଣିପୁରକୁ କେନ୍ଦ୍ରକରି ପରିକଳ୍ପିତ ଓ ପରିପୁଷ୍ଟ । ତାଙ୍କ ଲେଖନୀ କୃତ 'ଏବଂ ଅତିରିକ୍ତ' ଗଳ୍ପର କଥାବସ୍ତୁ ସଂପୂର୍ଣ୍ଣ ପାରିବାରିକ ହେଲେ ହେଁ ସାଂପ୍ରତିକ ଯୁବମାନସର ପ୍ରତିକ୍ରିୟା ଏଥିରେ ପ୍ରତିଫଳିତ । ମଣିଷ ଜୀବନରେ ଢେର ପ୍ରତିପତ୍ତିଶାଳୀ ହୋଇପାରେ ସତ, ମାତ୍ର ଜାତୀୟତା ଜୀବନର ସଂଗଠନ କ୍ଷେତ୍ରରେ ଅଂଶୀଦାର ହୋଇ ନଥିଲେ, ସେ ହୋଇଯାଏ ଅପାଙ୍କ୍ତେୟ । କିନ୍ତୁ ଯେଉଁମାନଙ୍କର ପରକୁ ଆପଣାର କରିବାର ଶକ୍ତି ଥାଏ ଅତ୍ୟଧିକ ଓ ମନୋବଳ ଥାଏ ଉତ୍ସର୍ଗୀକୃତ, ତ୍ୟାଗମୟ ସେ ହୋଇଯାଆନ୍ତି ଅବିସ୍ମରଣୀୟ । ଏହିଭଳି ଏକ ଚିନ୍ତାଧାରାକୁ ଆଧାରକରି ତାଙ୍କ ସଂରଚିତ 'ଏବଂ ଅତିରିକ୍ତ' ଗଳ୍ପ । ଏହା 'ଇସ୍ତାହାର'ର ପୂଜା ସଂଖ୍ୟା, ୧୯୮୩ରେ ମଧ୍ୟ ପ୍ରକାଶ ପାଇଥିଲା ।

ତାଙ୍କ ଗଳ୍ପ ଜଗତ ଉପରେ ଆଲୋଚନା କରିବାକୁ ଯାଇ ଅଧ୍ୟାପକ ବୃନ୍ଦାବନ ଚନ୍ଦ୍ର ଆଚାର୍ଯ୍ୟ କହନ୍ତି - 'ଅବଚେତନ ମନର ସୂକ୍ଷ୍ମାତିସୂକ୍ଷ୍ମ ବିଶ୍ଳେଷଣ ଓ ମନସ୍ତାତ୍ତ୍ୱିକ ଚିତ୍ରଣ କିଶୋରୀ ଚରଣଙ୍କ ଗଳ୍ପଗୁଡ଼ିକର ବିଶେଷତ୍ୱ । ଆଧୁନିକ ମଣିଷ ମନର କଠୋରତା ଓ ସ୍ନେହ ମମତାହୀନ ପରିବାର ପରିସର ମଧ୍ୟରେ ମୂଲ୍ୟବୋଧହୀନ, ବ୍ୟଥିତ, ବିକଳାଙ୍ଗ ନାରୀ ପୁରୁଷର ମନସ୍ତାତ୍ତ୍ୱିକ ବିଶ୍ଳେଷଣରେ ତାଙ୍କର ସଫଳତା ନିହିତ । ସାମାଜିକ ଓ ପାରିବାରିକ ଜୀବନର ନାନା ବିଚିତ୍ର ଅନୁଭୂତି ତାଙ୍କ ଗଳ୍ପଗୁଡ଼ିକର ଉପଜୀବ୍ୟ । ତାଙ୍କ ଗଳ୍ପର ଚରିତ୍ର ସବୁ ବୌଦ୍ଧିକତା-ପୀଡ଼ିତ, ଆତ୍ମସଚେତନ ଏବଂ ଅହଂପ୍ରବଣ । ଆଧୁନିକ ମଣିଷର ଅସହାୟତା ନିଃସଙ୍ଗତା ଓ ଦୁର୍ବଳତା ତାଙ୍କ ଗଳ୍ପଗୁଡ଼ିକରେ ନିଖୁଣ ଭାବରେ ଚିତ୍ରିତ । ଆହରଣଗତ କୃତ୍ରିମତା ଅପେକ୍ଷା ସହଜ ସରଳ ନିଜସ୍ୱତାରେ ରୁଦ୍ଧିମନ୍ତ ଏକ ଅନାଡ଼ମ୍ବର ଗଳ୍ପ ଶୈଳୀ ତାଙ୍କର ବିଶେଷତ୍ୱ ଓ ଏହା ଯେପରି ମଧୁର, ସେହିପରି ଅନାବିଳ ସମ୍ଭ୍ରାନ୍ତ ।' (ଓଡ଼ିଆ ସାହିତ୍ୟର ସଂକ୍ଷିପ୍ତ ପରିଚୟ, ପୃ.୨୮୨)

ଶ୍ରୀ ଦାସ ୧୯୪୨ ମସିହାରେ ରେଭେନ୍ସା କଲେଜରୁ ସର୍ବୋତ୍କୃଷ୍ଟ ଗ୍ରାଜୁଏଟ୍ ଭାବେ ଉତ୍ତୀର୍ଣ୍ଣ ହେବାପରେ ୧୯୪୪ରେ ପାଟଣା ବିଶ୍ୱବିଦ୍ୟାଳୟରୁ ପ୍ରଥମ ଶ୍ରେଣୀ ଏମ୍.ଏ. ଇତିହାସରେ ପାସ୍ କରିଥିଲେ । ୧୯୪୭ ମସିହାରେ ଓଡ଼ିଶା ଆଡ଼ମିନ୍ଷ୍ଟ୍ରେଟିଭ୍ ଚାକିରିରେ ନିଯୁକ୍ତି ପାଇଥିଲେ । ତତ୍ପରେ ପରେ ସେ ବିଖ୍ୟାତ କଂଗ୍ରେସ ନେତା ତଥା ସଂସଦ ସଭ୍ୟ ସ୍ୱାମୀ ଭୁବନାନନ୍ଦ ଦାସଙ୍କ କନ୍ୟା କୁମାରୀ ଦେବୀଙ୍କୁ ବିବାହ କରିଥିଲେ । ୧୯୫୦ରେ ସର୍ବଭାରତୀୟ ପରୀକ୍ଷା ମାଧ୍ୟମରେ ଇଣ୍ଡିଆନ୍ Audit and Accounts ଚାକିରିରେ ଯୋଗଦାନ କରିଥିଲେ । କର୍ମଜୀବନରେ ସେ ଦେଶ ବିଦେଶରେ ବହୁ ଉଚ୍ଚ ପଦପଦବୀରେ ଅବସ୍ଥାପିତ ହୋଇ କଲିକତା, ଦିଲ୍ଲୀ, ଲଣ୍ଡନ ଓ ନିୟୁର୍କ ଆଦି ନାନା ସ୍ଥାନରେ କାର୍ଯ୍ୟକରି ବହୁ ଅନୁଭୂତି ସଂଚୟ କରିଥିଲେ ।

୧୯୮୦ରେ ଅଷ୍ଟ୍ରେଲିଆର ଆଡ଼ିଲେଡ଼ଠାରେ ଅନୁଷ୍ଠିତ ଆନ୍ତର୍ଜାତିକ ଲେଖକ ସପ୍ତାହରେ ଭାରତର ପ୍ରତିନିଧିତ୍ୱ କରିଥିଲେ । ୧୯୮୨ ମସିହାରେ Additional Deputy Comptroller ଏବଂ A.G. India ନୂଆଦିଲ୍ଲୀ ପଦବୀରୁ ଅବସର ଗ୍ରହଣ କରି କଟକଠାରେ ସ୍ଥାୟୀ ଭାବରେ ରହି ଆସୁଥିଲେ । ସେ ଥିଲେ ଜଣେ ଦକ୍ଷ ଓ ସଚ୍ଚୋଟ ଅଫିସର । ଓଡ଼ିଆ ଭାଷା ସାହିତ୍ୟର ଶ୍ରୀବୃଦ୍ଧି ସାଧନ ନିମନ୍ତେ ଲେଖାଲେଖି କରିବା ସାଂଗକୁ ବହୁ ସାଂସ୍କୃତିକ ଅନୁଷ୍ଠାନର ଆନୁଷ୍ଠାନିକ କାର୍ଯ୍ୟରେ ଦିଗ୍‌ଦର୍ଶନ ମଧ୍ୟ ଦେଉଥିଲେ । ପିଲାଦିନୁ ସାହିତ୍ୟ ପ୍ରତି ତାଙ୍କର ଏକ ଅନୁରାଗ ଥିଲା । ସେ ରଚନା କରୁଥିବା ଗଳ୍ପ, କବିତାଗୁଡ଼ିକ ସେହି ସମୟରେ ନବୀନ, ଶଙ୍ଖ, ସହକାର, ଚତୁରଙ୍ଗ ଇତ୍ୟାଦି ପତ୍ରିକାରେ ପ୍ରକାଶିତ ହେଉଥିଲା । ୧୨.୭.୯୪ରୁ ୧୨.୭.୯୭ ପର୍ଯ୍ୟନ୍ତ ସେ ଓଡ଼ିଶା ସାହିତ୍ୟ ଏକାଡ଼େମୀର ସଭାପତି ଭାବେ କାର୍ଯ୍ୟ କରିଥିଲେ । ତାଙ୍କ ପ୍ରଥମ ଗଳ୍ପ ସଂକଳନ 'ଭଂଗା ଖେଳନା' ୧୯୬୧ ମସିହାରେ ପ୍ରକାଶିତ ହୋଇଥିଲା ।

ତାଙ୍କ ଲେଖନୀକୃତ ଗଳ୍ପ ଗ୍ରନ୍ଥ ମଧ୍ୟରେ - ଭଂଗା ଖେଳନା, ଘର ବାହୁଡ଼ା, ଲକ୍ଷ ବିହଙ୍ଗ, ମଣିହରା, ଠାକୁର ଘର, ନାଲି ଗୁଲୁ ଗୁଲୁ ସାଧବ ବୋହୂ, ଭିନ୍ନ ପାଉଁଶ, ଶୀତ ଲହରୀ ଓ ଇଂରାଜୀରେ Death of an Indian and Other Stories ପ୍ରକାଶିତ । ଉପନ୍ୟାସ ମଧ୍ୟରେ - ସାତ ଦିନର ସତୀ, ୧୯୯୩, ନେତା ଓ ନେତ୍ରମଣି, ସକଳ ସନ୍ତାନ, ସ୍ୱର୍ଗସୀମା, ବିଦେଶିନୀ, ଶେଷ ଅଙ୍କ ପ୍ରଥମ ଦୃଶ୍ୟ ଅନ୍ୟତମ । ଭ୍ରମଣ କାହାଣୀ - ଚେନାଏ ପୃଥିବୀ, ଚିରୁଡ଼ାଏ ଘର । ସମାଲୋଚନା - ଲେଖକର ସଂସାର । କବିତା ସଂକଳନ - ମିନି-କାମନା । ଏତଦ୍‌ବ୍ୟତୀତ 'ଘାସଫୁଲ' ଛଦ୍ମ ନାମରେ କେତେକ କବିତା 'ଝଙ୍କାର' ଓ 'ଜୀବନରଙ୍ଗ'ରେ ପ୍ରକାଶିତ । 'ମଶାଣି ଫୁଲ ଏବଂ ଅନ୍ୟାନ୍ୟ ଗଳ୍ପ' ସଚ୍ଚି ରାଉତରାୟଙ୍କ ୩୧ଟି ଗଳ୍ପର ସଂକଳନ ମଧ୍ୟ କରିଥିଲେ । ଏ ସମସ୍ତ ଆଧୁନିକ ଓଡ଼ିଆ ସାହିତ୍ୟର ଗୋଟିଏ ଗୋଟିଏ ମାଇଲ ଖୁଣ୍ଟ ।

ସେ ଥିଲେ ସରଳ, ନିଷ୍କପଟ ଓ ମଣିଷ ପରି ମଣିଷଟିଏ । ୧୯୮୨ରେ ସରକାରୀ ଚାକିରିରୁ ଅବସର ନେଇଥିଲେ ସୁଦ୍ଧା ଶେଷ ନିଃଶ୍ୱାସ ତ୍ୟାଗ ପର୍ଯ୍ୟନ୍ତ ସାହିତ୍ୟ ସାଧନାରେ ବ୍ରତୀ ଥିଲେ । ସାହିତ୍ୟର ପ୍ରାୟ ପ୍ରତ୍ୟେକ ବିଭାଗରେ ସେ ଲେଖନୀ ଚାଳନା କରିଥିଲେ । ତାଙ୍କର ଅପ୍ରକାଶିତ ରଚନାବଳୀ ଲୋକଲୋଚନକୁ ଆସିବା ଉଚିତ । ଆଜି ସେ ଆମରି ଗହଣରେ ନାହାନ୍ତି ସତ, ହେଲେ ରଖି ଦେଇଯାଇଛନ୍ତି ଚିରନ୍ତନ ସ୍ମୃତି । ତାଙ୍କ ଭଳି ଯଶସ୍ୱୀ, କାଳଜୟୀ ଶିଳ୍ପୀ ବାସ୍ତବରେ ଅମର ।

ଏମ୍.ଆଇ.ଜି.ଓ୍ୱାନ୍- ୪୨/୧
ଚନ୍ଦ୍ରଶେଖରପୁର ହାଉସିଂ ବୋର୍ଡ଼ କଲୋନୀ
ଭୁବନେଶ୍ୱର-୧୬

■ ■ ■ ■



# ରାଷ୍ଟ୍ରଗୁରୁ ସର୍ବପଲ୍ଲୀ ରାଧାକୃଷ୍ଣନ୍

ବୈକୁଣ୍ଠନାଥ ପ୍ରଧାନ

**ଭା**ରତମାତାର ଯେଉଁ କତିପୟ ସନ୍ତାନମାନେ ସେମାନଙ୍କ ପ୍ରଜ୍ଞା ଓ ପାଣ୍ଡିତ୍ୟ ଯୋଗୁଁ ପୃଥିବୀରେ ସୁପରିଚିତ ହୋଇଥିଲେ, ସେମାନଙ୍କ ମଧ୍ୟରୁ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଅନ୍ୟତମ । ସ୍ୱାମୀ ବିବେକାନନ୍ଦଙ୍କ ପରେ ସେ ହେଉଛନ୍ତି ଦ୍ୱିତୀୟ ଭାରତୀୟ, ଯେ କି ଭାରତୀୟ ଚିନ୍ତାଧାରା, ତା'ର ଉନ୍ନତ ସଂସ୍କୃତି ଓ ପରମ୍ପରା ପାଶ୍ଚାତ୍ୟ ଦେଶଗୁଡ଼ିକରେ ଅତି ଦୃଢ଼ ଭାବରେ ଉପସ୍ଥାପିତ କରିପାରିଥିଲେ । କେବଳ ଭାରତ ନୁହେଁ, ସାରା ଜଗତକୁ ସେ ନିଜର ଜ୍ଞାନାଲୋକ ଦ୍ୱାରା ଉଦ୍ଭାସିତ କରିଥିଲେ । ତାଙ୍କ ଅଦମ୍ୟ ଚେଷ୍ଟାଯୋଗୁଁ ଭାରତୀୟ ଦର୍ଶନ, ଭାରତୀୟ ଚିନ୍ତାଧାରା ବିଦେଶରେ ଆଦରଲାଭ କରିଥିଲା । ସର୍ବପଲ୍ଲୀ ନାମକ ମାନ୍ଦ୍ରାଜର ଗୋଟିଏ କ୍ଷୁଦ୍ର ଗ୍ରାମରେ, ଏକ ଦରିଦ୍ର ବ୍ରାହ୍ମଣ ପରିବାରରେ ୧୮୮୮ ମସିହା ସେପ୍ଟେମ୍ବର ୫ ତାରିଖ ଦିନ ତାଙ୍କର ଜନ୍ମ ହୋଇଥିଲା । ତାଙ୍କର ବାସସ୍ଥାନ ସର୍ବପଲ୍ଲୀ ଗ୍ରାମରେ ହୋଇଥିବାରୁ ପ୍ରଥା ଅନୁସାରେ ତାଙ୍କ ନାମ ପୂର୍ବରୁ 'ସର୍ବପଲ୍ଲୀ' ସଂଯୋଗ କରାଯାଇଥିଲା । ତାଙ୍କ ପିତାଙ୍କ ନାମ ସର୍ବପଲ୍ଲୀ ବୀରସ୍ୱାମୀ ଓ ମାତାଙ୍କ ନାମ ସିତାମ୍ମା ଥିଲା । ପିତା ବୀରସ୍ୱାମୀଙ୍କର ଆର୍ଥିକ ଅବସ୍ଥା ସେତେ ସ୍ୱଚ୍ଛଳ ନଥିଲା । ସେ ପୁରୋହିତିକରି ଯାହାକିଛି ରୋଜଗାର କରୁଥିଲେ, ସେଥିରେ ପାଞ୍ଚୋଟି ପୁତ୍ରକନ୍ୟାଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ମନୁଷ୍ୟ କରିବା ତାଙ୍କ ପକ୍ଷରେ ସମ୍ଭବ ନଥିଲା । ତତ୍କାଳୀନ ଖ୍ରୀଷ୍ଟିଆନ ମିଶନାରୀ ପରିଚାଳିତ ଏକ ଶିକ୍ଷାନୁଷ୍ଠାନରେ ରାଧାକୃଷ୍ଣନ୍‌ଙ୍କର ବାଲ୍ୟଶିକ୍ଷା ଆରମ୍ଭ ହୋଇଥିଲା ।

ବାଲ୍ୟଶିକ୍ଷା ସମାପନପରେ ମାନ୍ଦ୍ରାଜ ଖ୍ରୀଷ୍ଟିଆନ କଲେଜରେ ରାଧାକୃଷ୍ଣନ୍‌ଙ୍କର ଉଚ୍ଚଶିକ୍ଷା ଆରମ୍ଭ ହେଲା । ସେ ବି.ଏ. ପରୀକ୍ଷାରେ ଅନର୍ସ ସହିତ ଦର୍ଶନରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଉତ୍ତୀର୍ଣ୍ଣ ହେଲେ । ବିବେକାନନ୍ଦଙ୍କର ଓଜସ୍ୱିନୀ ବକ୍ତୃତା ତାଙ୍କୁ ବେଦାନ୍ତ ଅଧ୍ୟୟନ ଦିଗରେ ପ୍ରବଳ ଉତ୍ସାହ ପ୍ରଦାନ କରିଥିଲା । ସେ ମାନ୍ଦ୍ରାଜ କଲେଜରୁ ଦର୍ଶନ ଶାସ୍ତ୍ରରେ ପ୍ରଥମ ଶ୍ରେଣୀରେ ପ୍ରଥମ ହୋଇ ଏମ୍.ଏ. ପାଶ୍ କରିଥିଲେ । ସେ ମାନ୍ଦ୍ରାଜର ପ୍ରେସିଡେନ୍‌ସି କଲେଜରେ ଅଧ୍ୟାପକ ଭାବରେ କାର୍ଯ୍ୟ କଲେ ଓ ଅଧ୍ୟାପକ ଥିଲାବେଳେ ମଧ୍ୟ ସେ ସର୍ବଦା ଅଧ୍ୟୟନରତ ରହୁଥିଲେ । ସେ ୧୯୧୮ ମସିହାରେ ମହୀଶୂର ବିଶ୍ୱବିଦ୍ୟାଳୟରେ ଦର୍ଶନ ବିଭାଗର ମୁଖ୍ୟ ଅଧ୍ୟାପକ ରୂପେ ଯୋଗ ଦେଲେ । ସାର୍ ଆଶୁତୋଷ ମୁଖାର୍ଜୀ କଲିକତା ବିଶ୍ୱବିଦ୍ୟାଳୟରେ କୁଳପତି ଥିଲେ । ସେ ରାଧାକୃଷ୍ଣନ୍‌ଙ୍କୁ କଲିକତା ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରିବା ପାଇଁ ଚାହୁଁଥିଲେ । ଆଶୁତୋଷ ମୁର୍ଖାଜୀଙ୍କର କହିବା ମୁତାବକ କଲିକତା ବିଶ୍ୱବିଦ୍ୟାଳୟରେ ୫ମ ଜର୍ଜଙ୍କ ଦର୍ଶନ ପ୍ରାଧ୍ୟାପକ ପଦବୀ ପାଇଁ ରାଧାକ୍ରିଷ୍ଣନ୍ ଆବେଦନ କରିଥିଲେ । ଏହି ପଦବୀ ପାଇଁ ବହୁ ଅଭିଜ୍ଞ ଅଧ୍ୟାପକ ଆବେଦନ କରିଥିଲେ, ମାତ୍ର କମିଟି ସେସବୁକୁ ଗ୍ରହଣ ନକରି ଡକ୍ଟର ରାଧାକୃଷ୍ଣନ୍‌ଙ୍କୁ ଏହି ପଦବୀରେ ନିଯୁକ୍ତି ଦେବା ନିମନ୍ତେ ସୁପାରିଶ କଲେ । ପରେ କଲିକତା ବିଶ୍ୱବିଦ୍ୟାଳୟର ସିଣ୍ଡିକେଟ୍ ଏବଂ ଭାରତ ସରକାର ଏହି ସୁପାରିଶ୍‌କୁ ଗ୍ରହଣ କଲେ ।

ଡକ୍ଟର ରାଧାକୃଷ୍ଣନ୍ କଲିକତା ବିଶ୍ୱବିଦ୍ୟାଳୟରେ ଦର୍ଶନ ଅଧ୍ୟାପକ ଥିଲାବେଳେ ପାଶ୍ଚାତ୍ୟ ଦାର୍ଶନିକମାନଙ୍କ ସଂସ୍ପର୍ଶରେ ଆସିବାର ସୁଯୋଗ ପାଇଲେ । ୧୯୨୬ ମସିହାରେ ଲଣ୍ଡନଠାରେ ସମଗ୍ର ବ୍ରିଟିଶ୍ ସାମ୍ରାଜ୍ୟର ଯେଉଁ ବିଶ୍ୱବିଦ୍ୟାଳୟ କଂଗ୍ରେସ ଅନୁଷ୍ଠିତ ହୋଇଥିଲା ଏବଂ ସେହି ବର୍ଷ ହାଭାର୍ଡ଼ ବିଶ୍ୱବିଦ୍ୟାଳୟରେ ଯେଉଁ ଆନ୍ତର୍ଜାତୀୟ ଦର୍ଶନ କଂଗ୍ରେସ ଅନୁଷ୍ଠିତ ହୋଇଥିଲା, ସେଥିରେ ଡକ୍ଟର ରାଧାକୃଷ୍ଣନ୍ ଯୋଗ ଦେଇଥିଲେ । ଏହି ସମସ୍ତ ଆନ୍ତର୍ଜାତୀୟ ସମ୍ମିଳନୀରେ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଦର୍ଶନ ସମ୍ବନ୍ଧରେ ଯେଉଁ ତୁଳନାତ୍ମକ ବକ୍ତୃତା ସେ ଦେଇଥିଲେ ଏବଂ ହିନ୍ଦୁଧର୍ମର ସ୍ୱରୂପ ଯେପରି ପ୍ରାଞ୍ଜଳ ଭାବରେ ବ୍ୟାଖ୍ୟାନ କରିଥିଲେ, ସେଥିରେ ପାଶ୍ଚାତ୍ୟ ଦାର୍ଶନିକ ତଥା ବିଦ୍ୱାନମଣ୍ଡଳୀ ଚମତ୍କୃତ ଓ ଆଶ୍ଚର୍ଯ୍ୟାନ୍ୱିତ ହୋଇଥିଲେ । ଡକ୍ଟର ରାଧାକୃଷ୍ଣନ୍ ଅଭ୍ୟାଗତ ଅଧ୍ୟାପକ ରୂପେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ 'ଇଷ୍ଟର୍ଣ୍ଣ ରିଲିଜିଅନ୍ ଏବଂ ଓ୍ୱେଷ୍ଟର୍ଣ୍ଣ ଗେଟ୍' ଶୀର୍ଷକ ଏକ ସୁଚିନ୍ତିତ ବକ୍ତୃତାମାଳା ପରିବେଷଣ କରିଥିଲେ । ଏହା ଶୁଣିବା ପରେ ଶ୍ରୋତାମାନେ ଭାରତୀୟ ଦର୍ଶନ ସମ୍ବନ୍ଧରେ ଯେ କେବଳ ସମ୍ୟକ ଜ୍ଞାନଲାଭ କରିଥିଲେ ତା'ନୁହେଁ, ସେମାନଙ୍କର ଧାରଣା ହେଲା, ଯେପରି କି ରାଧାକୃଷ୍ଣନ୍ ପ୍ରାଚ୍ୟ ଓ ପାଶ୍ଚାତ୍ୟ ଚିନ୍ତାଧାରା ମଧ୍ୟରେ ଏକ ଅପୂର୍ବ ମିଳନ ଆଣିବାରେ ସମ୍ପୂର୍ଣ୍ଣ କୃତକାର୍ଯ୍ୟ ହୋଇଅଛନ୍ତି । ୧୯୩୮ ମସିହାରୁ ୧୯୪୧ ମସିହା ପର୍ଯ୍ୟନ୍ତ କଲିକତା ବିଶ୍ୱବିଦ୍ୟାଳୟ ପ୍ରତ୍ୟେକ ବର୍ଷ ପ୍ରଫେସର ରାଧାକୃଷ୍ଣନ୍‌ଙ୍କୁ ଜାନୁଆରୀଠାରୁ ଜୁନ୍ ମାସ ପର୍ଯ୍ୟନ୍ତ ଛ'ମାସ ଛୁଟି ଦେବାର ବ୍ୟବସ୍ଥା କଲେ । ଏହି ସମୟରେ ସେ ଇଂଲଣ୍ଡ ଯାଇ ଧାରାବାହିକ ଭାବରେ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ

'Eastern Religion and Ethics' ବିଷୟରେ ସାରଗର୍ଭକ ବକ୍ତୃତାମାନ ପ୍ରଦାନ କରୁଥିଲେ । ୧୯୩୯ ଓ ୧୯୪୦ ମସିହାରେ ସେ କଲିକତା ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ଅଧ୍ୟାପକତ୍ୱ କରିବା ସଂଗେସଂଗେ ବନାରସ ବିଶ୍ୱବିଦ୍ୟାଳୟର ଅସ୍ଥାୟୀ କୁଳପତି ଭାବେ କାର୍ଯ୍ୟ କରୁଥିଲେ । ୧୯୪୧ ମସିହାରେ ସେ କଲିକତା ବିଶ୍ୱବିଦ୍ୟାଳୟରୁ ଅବ୍ୟାହତି ନେଇ ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟରେ କୁଳପତି ହିସାବରେ ଯୋଗଦାନ କରିଥିଲେ । ଏହା ପୂର୍ବରୁ ୧୯୩୧ ମସିହାରେ ସେ ଆନ୍ଧ୍ର ବିଶ୍ୱବିଦ୍ୟାଳୟର କୁଳପତି ହୋଇଥିଲେ ଏବଂ ତାଙ୍କ ଯୋଗଦାନ କରିବାର ଅଳ୍ପକାଳ ମଧ୍ୟରେ ଏହି ବିଶ୍ୱବିଦ୍ୟାଳୟ ଏକ ପ୍ରସିଦ୍ଧ ଗବେଷଣା କେନ୍ଦ୍ରରେ ପରିଣତ ହୋଇପାରିଥିଲା ।

ପ୍ରାଚ୍ୟ ତଥା ପାଶ୍ଚାତ୍ୟ ଦେଶର ବିଭିନ୍ନ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ଓ କୁଳପତି ଡକ୍ଟର ରାଧାକୃଷ୍ଣନ୍ ବେସରକାରୀ ରାଷ୍ଟ୍ରଦୂତ ହିସାବରେ ୟୁରୋପ ଓ ଆମେରିକାର ପ୍ରାୟ ପ୍ରତ୍ୟେକ ରାଜଧାନୀରେ ଯେପରି ଭାବରେ ସମ୍ବର୍ଦ୍ଧିତ ହୋଇଥିଲେ, ତାହା ଅତୁଳନୀୟ । ରୁଷ୍‌ରେ ରାଷ୍ଟ୍ରଦୂତ ଥିଲାବେଳେ ସେ ରୁଷ୍ ଏବଂ ଭାରତ ମଧ୍ୟରେ ସୁସମ୍ପର୍କ ସ୍ଥାପନ କରିବା ପାଇଁ ସମର୍ଥ ହୋଇପାରିଥିଲେ ।

୧୯୫୨ ମସିହାରେ ସୋଭିଏତ୍ ରୁଷରୁ ଫେରି ଡକ୍ଟର ରାଧାକୃଷ୍ଣନ୍ ଭାରତର ଉପରାଷ୍ଟ୍ରପତି ରୂପେ ଦାୟିତ୍ୱ ଗ୍ରହଣ କଲେ । ଭାରତର ଉପରାଷ୍ଟ୍ରପତି ହେବା ଦୃଷ୍ଟେ ରାଜ୍ୟସଭାର ଅଧ୍ୟକ୍ଷ ରୂପେ ସେ ପ୍ରତ୍ୟେକ ସଭ୍ୟଙ୍କର ଶ୍ରଦ୍ଧା ଓ ଭକ୍ତି ଆକର୍ଷଣ କରିପାରିଥିଲେ । ୧୯୫୩ ମସିହାରେ ସେ ତତ୍କାଳୀନ ପ୍ରଧାନମନ୍ତ୍ରୀ ନେହେରୁଙ୍କର 'ପରରାଷ୍ଟ୍ରନୀତି' ବ୍ୟାଖ୍ୟାନ କରିବା ପାଇଁ ଆମେରିକା ଯାଇଥିଲେ । ଆମେରିକାରେ ଥିଲାବେଳେ ସେ ସେଠାକାର ବିଭିନ୍ନ ସ୍ଥାନରେ 'ଭୂମଣ୍ଡଳୀୟ ଗଣତନ୍ତ୍ର' ଓ 'ଆଧୁନିକ ସଭ୍ୟତାର ଭବିଷ୍ୟତ' ସମ୍ବନ୍ଧରେ ପାଣ୍ଡିତ୍ୟପୂର୍ଣ୍ଣ ଭାଷଣମାନ ପ୍ରଦାନ କରିଥିଲେ । ୧୯୬୨ ମସିହା ମେ ମାସରେ ସେ ଭାରତର ସର୍ବୋଚ୍ଚ ପଦବୀ ରାଷ୍ଟ୍ରପତି ହିସାବରେ ଅଧିଷ୍ଠିତ ହୋଇଥିଲେ । ରାଷ୍ଟ୍ରପତି ପଦଗ୍ରହଣ କରିବା ପରେ ତାଙ୍କର ଚରମ ଲକ୍ଷ୍ୟ ଥିଲା ବିଶ୍ୱଶାନ୍ତି ପ୍ରତିଷ୍ଠା କରିବା । ରାଷ୍ଟ୍ରପତି ହିସାବରେ ସେ ଇରାନ୍, ଆଫ୍‌ଗାନିସ୍ଥାନ, ଇଂଲଣ୍ଡ, ଆମେରିକା ଓ ସୋଭିଏତ୍ ରୁଷ ଆଦି ଦେଶମାନ ଗସ୍ତକରି ମାନବ ସମାଜର ଶାନ୍ତିପୂର୍ଣ୍ଣ ସହାବସ୍ଥାନର ଆବଶ୍ୟକତା ସମ୍ବନ୍ଧରେ ଭାଷଣମାନ ପ୍ରଦାନ କରିଥିଲେ । ରାଷ୍ଟ୍ରପତି ରାଧାକୃଷ୍ଣନ୍‌ଙ୍କର ଉଚ୍ଚ ଚିନ୍ତାଧାରା, ଗଭୀର ଆତ୍ମବିଶ୍ୱାସ, ସମୂହ ବିଶ୍ୱପ୍ରୀତି ଓ ଗଭୀର ପ୍ରେମପୂର୍ଣ୍ଣ ତାତ୍ତ୍ୱିକ ଓଜସ୍ୱିନୀ ଭାଷଣ ଫଳରେ ସବୁଦେଶର ଅଧିବାସୀମାନେ ଭାରତୀୟ ଦୃଷ୍ଟିକୋଣ ସମ୍ୟକ୍ ଭାବରେ ଉପଲବ୍ଧି କରିଥିଲେ ଏବଂ ଯେଉଁ ସବୁ ଦେଶର ଭାରତ ପ୍ରତି ତିକ୍ତ ଭାବ ଥିଲା, ତାହା ଅନେକାଂଶରେ ଦୂରୀଭୂତ ହୋଇପାରିଥିଲା । ଡକ୍ଟର ରାଧାକୃଷ୍ଣନ୍ ଜଣେ ଦାର୍ଶନିକ ଓ ରାଜନୀତିଜ୍ଞ ଭାବରେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ଦାର୍ଶନିକ ଓ ଶିକ୍ଷାବିତ୍ ଭାବରେ ଜୀବନବ୍ୟାପୀ ସଂଗ୍ରାମ କରିଥିଲେ । ଦାର୍ଶନିକ ଓ ଶିକ୍ଷାବିତ୍ ହିସାବରେ ସେ ବକ୍ତା, ଲେଖକ, ପ୍ରାଚ୍ୟର ଋଷି, ସଂସ୍କୃତିବିତ୍, କଲିକତା ଓ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟର ଅଧ୍ୟାପକ ତଥା ବନାରସ ହିନ୍ଦୁ ବିଶ୍ୱବିଦ୍ୟାଳୟର କୁଳାଧିପତି ହୋଇ ଯେପରି ଯଶସ୍ୱୀ ହୋଇ ପାରିଥିଲେ, ରାଜନୀତିଜ୍ଞ ହିସାବରେ ସୋଭିଏତ୍ ରୁଷରେ ଭାରତର ରାଷ୍ଟ୍ରଦୂତ ହୋଇ, ଭାରତର ରୁଷ ସହିତ ସମ୍ପର୍କ ସ୍ଥାପନ କରିବା ପାଇଁ ସମର୍ଥ ହୋଇପାରିଥିଲେ । ରାଜନୀତିଜ୍ଞ ହୋଇ ମଧ୍ୟ ସେ ଷ୍ଟାଲିନ୍, ମାଓସେତୁଙ୍ଗ, ପଣ୍ଡିତ ଜବାହରଲାଲ ନେହେରୁ ଏବଂ ଇନ୍ଦିରା ଗାନ୍ଧୀଙ୍କୁ ଉପଦେଶ ଦେବା ପାଇଁ ସମର୍ଥ ହୋଇଥିଲେ ।

ରାଧାକୃଷ୍ଣନ୍‌ଙ୍କର ଛାତ୍ରବତ୍ସଳତା ତାଙ୍କୁ ପରିଶେଷରେ ଭାରତର ରାଷ୍ଟ୍ରଗୁରୁ ସମ୍ମାନରେ ଭୂଷିତ କରିଥିଲା । ଥରେ କଲିକତା ବିଶ୍ୱବିଦ୍ୟାଳୟର ଜଣେ ଛାତ୍ର ତାଙ୍କ ପାଖକୁ ଲେଖିଥିଲେ - 'ମୁଁ ଜଣେ ଗରିବ ଛାତ୍ର ହୋଇଥିବାରୁ ଆପଣଙ୍କ ଦ୍ୱାରା ଲିଖିତ 'ଇଣ୍ଡିଆନ୍ ଫିଲୋସୋଫି' ବହି କିଣିବାକୁ ଅସମର୍ଥ । ଯଦି ଦୟାକରି ପରୀକ୍ଷା ପର୍ଯ୍ୟନ୍ତ ଆପଣଙ୍କ ପାଖରେ ଥିବା ଖଣ୍ଡିଏ ବହି ମୋତେ ଦିଅନ୍ତେ, ତା'ହେଲେ ଉପକୃତ ହୁଅନ୍ତି ଓ ପରୀକ୍ଷା ପରେ ଫେରାଇ ଦିଅନ୍ତି ।' ସେତେବେଳେ ରାଧାକୃଷ୍ଣନ୍ ଥିଲେ ଭାରତର ଉପରାଷ୍ଟ୍ରପତି । ଚିଠିଟି ପାଇଲା ପରେ କାଳବିଳମ୍ବ ନକରି ଡାକରେ ବହିଟି ପଠାଇ ଏକ ଚିଠିରେ ଲେଖିଥିଲେ - 'ବହିଟିକୁ ଫେରାଇବାର ଆବଶ୍ୟକତା ନାହିଁ ।' ଦୁଃସ୍ଥ ଛାତ୍ରମାନଙ୍କୁ ସାହାଯ୍ୟ କରିବାରେ ରାଧାକୃଷ୍ଣନ୍ ଥିଲେ ସର୍ବଦା ମୁକ୍ତ ହସ୍ତ ।

ପ୍ରଖ୍ୟାତ ଦାର୍ଶନିକ ସର୍ବପଲ୍ଲୀ ରାଧାକୃଷ୍ଣନ୍ ଆଜି ମର ଜଗତରେ ନାହାନ୍ତି ସତ, ମାତ୍ର ଭଗବଦ୍ ଗୀତା, ବ୍ରହ୍ମସୂତ୍ର ଓ ଉପନିଷଦ୍ ଆଦି ଭାରତୀୟ ଶାସ୍ତ୍ର ସମୂହ ଉପରେ ସେ ଯେଉଁ କାଳଜୟୀ ପୁସ୍ତକମାନ ଲିପିବଦ୍ଧ କରିଯାଇଅଛନ୍ତି, ତଦ୍ୱାରା ସେ ମହାନ୍ ଆଚାର୍ଯ୍ୟ ଶଙ୍କର, ରାମାନୁଜଙ୍କ ସହିତ ସମାନ ଆସନରେ ଅଧିଷ୍ଠିତ ହୋଇଅଛନ୍ତି ଓ ବିବେକାନନ୍ଦଙ୍କ ସଦୃଶ୍ୟ ଭାରତୀୟ ଧର୍ମ ଓ ସଂସ୍କୃତିକୁ ପୃଥିବୀର ବିଭିନ୍ନ ରାଷ୍ଟ୍ରରେ ପ୍ରଚାର ଓ ପ୍ରସାର କରିବା ପାଇଁ ସମର୍ଥ ହୋଇପାରିଛନ୍ତି । ତାଙ୍କର ବିଦ୍‌ବତ୍ତା, ପାଣ୍ଡିତ୍ୟ, ରାଷ୍ଟ୍ର ପରିଚାଳନାରେ କୁଶଳତା, ସର୍ବୋପରି ତାଙ୍କର ମାନବିକତା ଉଜ୍ଜ୍ୱଳ ଜ୍ୟୋତି ରୂପେ କାଳେ କାଳେ ଦେଦିପ୍ୟମାନ ରହି ଏହି ସଂସାରରେ ଦିଗହରା ଭ୍ରାନ୍ତମାନବଙ୍କୁ ପ୍ରକୃତ ପଥ ପ୍ରଦର୍ଶନ କରୁଥିବ ।

**ସହାୟକ ଗ୍ରନ୍ଥସୂଚୀ :**


୧. Radhakrishnan- A Biography, by Sarvepalligopal

୨. ଭାରତରତ୍ନ ସିରିଜ୍ - ସର୍ବପଲ୍ଲୀ ରାଧାକୃଷ୍ଣନ୍, ସଙ୍କଳକ- ଆଲୋକ ସାହିତ୍ୟ ପ୍ରତିଷ୍ଠାନ ସମ୍ପାଦକ ମଣ୍ଡଳୀ ।


ପ୍ଲଟ ସଂଖ୍ୟା-୫୪୪/୯୯୭
ପୋଖରୀପୁଟ, ଭୁବନେଶ୍ୱର

# ଗୁରୁ ଦିବସର ଅନୁଚିନ୍ତା

ବିଚିତ୍ରାନନ୍ଦ ବାରିକ

**ସେ**ପ୍ଟେମ୍ବର ପାଞ୍ଚ ତାରିଖ । ଏହି ଦିବସଟି ଭାରତବର୍ଷର ବିଶିଷ୍ଟ ଦାର୍ଶନିକ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଜନ୍ମ ଦିବସଟି ଆମ୍ଭମାନଙ୍କ ପକ୍ଷରେ ଏକ ସ୍ମରଣୀୟ ଦିବସ ରୂପେ ବିବେଚିତ ହୋଇଆସୁଛି । ସଂପ୍ରତି ଏହା ଗୁରୁ ଦିବସ ରୂପେ ପାଳିତ ହେଉଛି । ପୁଣ୍ୟଶ୍ଳୋକ ରାଧାକ୍ରିଷ୍ଣନ୍ କେବଳ ଭାରତବର୍ଷର ନୁହେଁ ପୃଥିବୀର କତିପୟ ଚିନ୍ତାନାୟକମାନଙ୍କ ମଧ୍ୟରେ ଅନ୍ୟତମ ଥିଲେ ଏବଂ ତାଙ୍କର ପ୍ରତିଭା ବଳରେ ବିଶ୍ୱ ବନ୍ଦିତ ମହିମା ଅର୍ଜନ କରିଥିଲେ । ସେଥିପାଇଁ ମହାତ୍ମା ଗାନ୍ଧୀଙ୍କଠାରୁ ଆରମ୍ଭ କରି ଜବାହରଲାଲ ନେହେରୁ, ରାଜଗୋପାଳାଚାରୀ, ରବୀନ୍ଦ୍ରନାଥ ଠାକୁର ପ୍ରମୁଖ ମହାନ୍ ପୁରୁଷମାନେ ତାଙ୍କୁ ଯଥୋଚିତ ଶ୍ରଦ୍ଧା ଓ ସମ୍ମାନ ପ୍ରଦର୍ଶନ କରୁଥିଲେ ଏବଂ ଏହି ଶ୍ରଦ୍ଧା ଓ ସମ୍ମାନ ତାଙ୍କୁ ଭାରତବର୍ଷର ସର୍ବୋଚ୍ଚ ଆସନରେ ଅଧିରୂଢ଼ କରାଇ ଦେଇଥିଲା । ସେ ଭାରତବର୍ଷର ରାଷ୍ଟ୍ରପତି ଆସନ ଅଳଙ୍କୃତ କରିଥିଲେ ।

ପୂଜନୀୟ ରାଧାକ୍ରିଷ୍ଣନ୍ ସର୍ବୋଚ୍ଚ ଦାର୍ଶନିକ ଥିଲେ ସତ୍ୟ-ମାତ୍ର ସବୁଠାରୁ ଉଲ୍ଲେଖଯୋଗ୍ୟ କଥା ହେଲା- ସେ ଥିଲେ ଜୀବନବ୍ୟାପୀ ଜଣେ ଆଦର୍ଶ ଶିକ୍ଷକ, ଅଧ୍ୟାପକ । ତାଙ୍କ ଅଧ୍ୟାପକ ଜୀବନ ସଂପର୍କରେ ଏତେ ଜନଶ୍ରୁତି ଓ କିମ୍ବଦନ୍ତୀ ପ୍ରଚଳିତ ଯେ, ତାହା ହିଁ ତାଙ୍କର ମହାନତା ସଂପର୍କରେ ସବୁଠାରୁ ବଡ଼ ପ୍ରମାଣ ଥିଲା । କଥିତ ଅଛି- ସେ ବିଶ୍ୱବିଦ୍ୟାଳୟରେ ଅଧ୍ୟାପନା କରୁଥିବାବେଳେ ତାଙ୍କୁ ଗୋଟିଏ ବଗି ଗାଡ଼ିରେ ବସାଇ ଘୋଡ଼ା ବଦଳରେ ପରମ ଶ୍ରଦ୍ଧା ଓ ଭକ୍ତିର ସହିତ ଛାତ୍ରମାନେ ଗାଡ଼ିଟିକୁ ଟାଣି ଟାଣି ତାଙ୍କ ଘର ପର୍ଯ୍ୟନ୍ତ ନେଇ ଯାଉଥିଲେ । ଭାରତର ଆଉ ଜଣେ ଯୋଗଜନ୍ମା ପୁରୁଷ ଶ୍ରୀ ଅରବିନ୍ଦଙ୍କୁ ତାଙ୍କ ଅଧ୍ୟାପନା ସମୟରେ ତାଙ୍କର ଗାଡ଼ିକୁ ମଧ୍ୟ ଏହିପରି ଭାବରେ ଛାତ୍ରମାନେ ଟାଣି ନେଉଥିବା କଥା ଜନଶ୍ରୁତି ରହିଛି ।

କେବଳ ଏହି ଦୁଇଜଣ ନୁହଁନ୍ତି, ଏ ଦେଶର ଓ ଆମ ଓଡ଼ିଶାର ବହୁ ବିଶିଷ୍ଟ ବ୍ୟକ୍ତି (ନୀଳକଣ୍ଠ, ଗୋଦାବରୀଶ, ଆଚାର୍ଯ୍ୟ ହରିହର ପ୍ରମୁଖ) ଯେଉଁମାନେ କି ଜନନାୟକ ବା ଦେଶ ନିର୍ମାତା ରୂପେ ଆମ୍ଭମାନଙ୍କର ପୂଜନୀୟ ହୋଇଛନ୍ତି ସେମାନେ ମୂଳତଃ ଶିକ୍ଷକ ହିଁ ଥିଲେ । ଶିକ୍ଷକଙ୍କୁ ଦେଶ ଓ ଜାତିର ଯେ ମେରୁଦଣ୍ଡ ବୋଲି କୁହାଯାଇଛି - ଏହି ବିଶେଷ ଉକ୍ତିର ନିଦର୍ଶନ ଏହିସବୁ ମହାନ୍ ବ୍ୟକ୍ତିମାନେ ଆପଣା ଆପଣା ଜୀବନରେ ଦେଖାଇ ପାରିଛନ୍ତି ।

ଭାରତବର୍ଷର ଇତିହାସ ପୃଷ୍ଠାରୁ ଜଣାଯାଏ ଯେ ଯୁଗ ଯୁଗ ଧରି ଏ ଦେଶର ରାଷ୍ଟ୍ର ନିର୍ମାତାମାନେ ଏହି ଶିକ୍ଷକ କୁଳରୁ ହିଁ ଉଦ୍‌ଭୁତ ହୋଇ ଆସିଛନ୍ତି । ଭାରତରେ ଶିକ୍ଷକମାନଙ୍କୁ ଶ୍ରେଷ୍ଠ ଆସନ ଦେବାର ପରମ୍ପରା ଯୁଗ ଯୁଗ ଧରି ରହି ଆସିଛି । ପ୍ରାଚୀନ ଭାରତରେ ମଧ୍ୟ ଆଚାର୍ଯ୍ୟମାନଙ୍କର ସ୍ଥାନ ସଦାସର୍ବଦା ରାଜାମାନଙ୍କ ଉପରେ ନିର୍ଦ୍ଧାରିତ ହୋଇ ରହିଥିଲା । ଶିକ୍ଷକ ବା ଗୁରୁ କେବଳ ଛାତ୍ରମାନଙ୍କୁ ପାଠ ପଢ଼ାନ୍ତି ନାହିଁ ବରଂ ସମାଜକୁ ସର୍ବଦା ସବୁ ଦିଗରେ ଠିକଣା ବାଟଟିକୁ ଧରିବା ଲାଗି ଶିକ୍ଷା ଦେଇଥାନ୍ତି । ଦେଶର ରାଜନୀତି, ଅର୍ଥନୀତି, ଧର୍ମ, ସାହିତ୍ୟ, ସଂସ୍କୃତି ଓ ଲୋକାଚାର ଉପରେ ଆଦର୍ଶ ଶିକ୍ଷକମାନେ ସର୍ବଦା ସଚେତନ ଦୃଷ୍ଟି ରଖିଥାନ୍ତି । ସମାଜ ଯେତେବେଳେ ଗୋଟିଏ ବିରାଟ ପରିବର୍ତ୍ତନ ଦେଇ ଗତି କରୁଥାଏ, ସେତେବେଳେ ସମସ୍ତେ ବିହ୍ୱଳ ହୋଇ ପଡ଼ିଥିବା ବେଳେ ସଜାଗ ଚିତ୍ତ ଶିକ୍ଷକ ହିଁ ତା'ର ମତି ସ୍ଥିର ରଖିଥାନ୍ତି ଏବଂ ଦୃଷ୍ଟି ସ୍ଥିର ରଖିଥାନ୍ତି । ଶିକ୍ଷକ ନିଜେ କାଳର ପ୍ରଭାବରେ ଭିତରେ ଥାଇ ମଧ୍ୟ କାଳଠାରୁ ନିଜକୁ ମାନସିକ ସ୍ତରରେ ଦୂରେଇ ରଖି ଅତୀତ ଓ ବର୍ତ୍ତମାନକୁ ବିବିଧ ଭାବରେ ବିଶ୍ଳେଷଣ କରି ଭବିଷ୍ୟତ ପ୍ରତି ଅଙ୍ଗୁଳି ନିର୍ଦ୍ଦେଶନ କରିଥାନ୍ତି । କାଳର ଘାତ ପ୍ରତିଘାତ ଭିତରେ ଶିକ୍ଷକ ନିଜେ ହୁଏତ ଆତଜାତ ହୁଅନ୍ତି ମାତ୍ର ସେ ସର୍ବଦା ନିର୍ଭୀକ ରହିଥାନ୍ତି । କୌଣସି ବାହ୍ୟ ଶକ୍ତି ତାଙ୍କର ଉନ୍ନତ ଶିରକୁ ଅବନତ କରାଇ ପାରନ୍ତି ନାହିଁ - ଯେଣୁ ସେ ନିଜକୁ ଜାତିର ଶିକ୍ଷକ ଭୂମିକାରେ ରଖିବାରେ ସକ୍ଷମ ବା ସମର୍ଥ ହୋଇପାରିଥାନ୍ତି । ଶିକ୍ଷକ ହେଉଛନ୍ତି ନିରପେକ୍ଷ ଓ ଦେଶର ରାଜା, ପ୍ରଜା, ଶାସକ, ଶାସିତ, ଧନୀ, ନିର୍ଦ୍ଧନ, ବିଦ୍ୱାନ, ମୂର୍ଖ, ଶିଷ୍ଟ, ବିଶିଷ୍ଟ ଓ ଅଶିଷ୍ଟ ସମସ୍ତଙ୍କ ପ୍ରତି ତାଙ୍କର ହୃଦୟ ବାତ୍ସଲ୍ୟ ପରାୟଣ । ଶିକ୍ଷକ ଚାହାନ୍ତି ସମସ୍ତେ ଭଲ ହୁଅନ୍ତୁ - ସମସ୍ତେ ପ୍ରଜ୍ଞା ଲାଭ କରନ୍ତୁ - ସମସ୍ତେ ଶିଷ୍ଟ ହୁଅନ୍ତୁ - ସମସ୍ତଙ୍କର ଅକ୍ଷର ପରିଚୟ ହେଉ । ସମସ୍ତେ ଶୂନ୍ୟରୁ ପୂର୍ଣ୍ଣ ଆଡ଼କୁ ଅଗ୍ରସର ହେବାର ସାଧନା କରନ୍ତୁ । ଶିକ୍ଷକର ବୃତ୍ତି ପବିତ୍ର ହେଲେ ଛାତ୍ରମାନଙ୍କୁ ଜ୍ଞାନ ଦେବା ମାଧ୍ୟମରେ ସେ ନିଜକୁ ଦେଇ ଦିଅନ୍ତି । ଯାହାଦ୍ୱାରା କି ଜଣେ ଛାତ୍ର ଶିକ୍ଷକଙ୍କଠାରୁ ବେଶୀ

ଜ୍ଞାନୀ ହୁଏ ବେଶୀ ସମ୍ମାନ ଓ ଐଶ୍ୱର୍ଯ୍ୟର ଅଧିକାରୀ ହୁଏ । ଏଭଳି ହେଲେ ଶିକ୍ଷକର ଆନ୍ତରିକ କାମନା ପୂର୍ଣ୍ଣ ହୁଏ ।

ପ୍ରତିଟି ଦେଶ ଗୁରୁ ଦିବସ ପାଳନ କରନ୍ତି । ପିତାମାତାଙ୍କ ପରି ଗୁରୁ ବା ଶିକ୍ଷକ ହିଁ ଅଧିକ ସମ୍ମାନୀୟ ଅଟନ୍ତି । କାରଣ ପିତାମାତା ସନ୍ତାନମାନଙ୍କୁ କେବଳ ଜନ୍ମ ଦେଇଥାନ୍ତି । କିନ୍ତୁ ଶିକ୍ଷକ ସେମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ମନୁଷ୍ୟ କରିଥାନ୍ତି । ଶିକ୍ଷକ ହିଁ ଦୂରଦ୍ରଷ୍ଟା - ଉପଦେଷ୍ଟା ଭାବରେ ଜାତିର ଶ୍ରେଷ୍ଠ ସମ୍ମାନ ପାଇଥାନ୍ତି । ଶିକ୍ଷକ ହିଁ ଜାତିକୁ ଅନ୍ଧାରରୁ ଆଲୋକକୁ, ମୃତ୍ୟୁରୁ ଅମୃତକୁ ନେଇ ଯାଉଥିଲେ । ଏଥିପାଇଁ ଏକାଙ୍ଗ ଚକ୍ରବର୍ତ୍ତୀ ରାଜ ସିଂହାସନରୁ ଓହ୍ଲାଇ ନିଜ ଗୁରୁଙ୍କ ଚରଣ ତଳେ ଭକ୍ତି ଅର୍ଘ୍ୟ ସମର୍ପଣ କରୁଥିଲେ । ଗୁରୁକୁଳର ଅସାଧାରଣ ବିଦ୍‌ବତ୍ତା ଓ ଚରିତ୍ରାବତ୍ତା ଦେଶ ବିଦେଶର ହଜାର ହଜାର ଶିଷ୍ୟଙ୍କୁ ଆକର୍ଷଣ କରୁଥିଲା । ଜ୍ଞାନାର୍ଜନ ଓ ସତ୍ୟାନୁସନ୍ଧାନରେ ଉଭୟେ ଗୁରୁ ଓ ଶିଷ୍ୟ ବ୍ରତୀ ହେଉଥିଲେ । କିନ୍ତୁ ଆଜି ସେ ସ୍ୱର୍ଣ୍ଣଯୁଗ ଅସ୍ତମିତ । ଗୁରୁଶିଷ୍ୟଙ୍କ ବାଞ୍ଛିତ ସୁ-ସମ୍ପର୍କ ଅଧୁନା ସ୍ୱପ୍ନ । ସେହି ଜ୍ଞାନ ପିପାସାର ସ୍ୱର୍ଣ୍ଣଦୀ ଶୁଷ୍କ । ପାରସ୍ପରିକ ସଦିଚ୍ଛା ଓ ସ୍ନେହ ଭକ୍ତିର ସୁରଧୂନୀ ସମାଜର 'ଜଟା' ମଧ୍ୟରେ ସତ୍ତାହୀନ ।

ଶିକ୍ଷକ ନିଜ ଜୀବନକୁ ଅଧ୍ୟୟନ କରି ଚାଲିବା ସହ ଅପରକୁ ତା'ର ଅଧ୍ୟୟନ ଲବ୍‌ଧ ଜ୍ଞାନ ଦାନ କରି ଚାଲିଥାନ୍ତି । ନିଜର ଅନ୍ତର ଭିତରେ ସେ ସର୍ବଦା ଆଲୋକ ଜଳାଇ ରଖିଥାନ୍ତି । ଶିକ୍ଷକ ଯାହା ସଂସ୍ପର୍ଶରେ ଆସନ୍ତି ତାଙ୍କୁ ଆଲୋକିତ କରି ଦିଅନ୍ତି - ତା'ଭିତରେ ଆଲୁଅ ଜଳାଇ ଦିଅନ୍ତି । ନିଜକୁ ସର୍ବଦା ପ୍ରଜ୍ୱଳିତ ରଖିବା ଓ ଅନ୍ୟକୁ ପ୍ରଜ୍ୱଳିତ କରିବା ହେଉଛି ଶିକ୍ଷକଙ୍କର ଜୀବନର ଅହରହ ସାଧନା ।

ସେପ୍ଟେମ୍ବର ପାଞ୍ଚ ତାରିଖ - 'ଗୁରୁ ଦିବସ'ର ମହତ୍ତ୍ୱ ହେଉଛି ସମାଜିକ ଜୀବନରେ ଗୁରୁଙ୍କର ଭୂମିକା କେତେ ଗୁରୁତ୍ୱପୂର୍ଣ୍ଣ । ଚିର ସ୍ମରଣୀୟ ଗୁରୁ ସର୍ବପଲ୍ଲୀ ରାଧାକ୍ରିଷ୍ଣନ୍‌ଙ୍କ ଶୁଭ ଜନ୍ମ ତିଥିରେ ତାଙ୍କର ମହନୀୟ ଚରିତକୁ ସ୍ମରଣ କରି କୃତାର୍ଥ ହେବା ସଂଗେସଂଗେ ଆମ ରାଜ୍ୟର ସମସ୍ତ ଗୁରୁ ଶିକ୍ଷକ, ଅଧ୍ୟାପକମାନଙ୍କ ଶ୍ରୀଚରଣାରବିନ୍ଦେ ଶତକୋଟି ପ୍ରଣାମ ହେଉଛି ଏ ଗୁରୁ ଦିବସର ଶୁଭ ଅନୁଚିନ୍ତା ।

ନିଆଳୀ, କଟକ

---

# ପ୍ରଶାନ୍ତ ପରିବାରର ହସର ଲହରୀ

## (ସଫଳ କାହାଣୀ)

ପୁରୀ ସହରର ସିଦ୍ଧ ମହାବୀର ପାଟଣାର ପ୍ରଶାନ୍ତ କୁମାର ମହାନ୍ତି ଜଣେ ଶିକ୍ଷିତ ତଥା ଉଦୀୟମାନ ଯୁବକ । ସରକାରୀ ଚାକିରି ପଛରେ ନ ଗୋଡ଼ାଇ ସରକାରଙ୍କର ବିଭିନ୍ନ ଆତ୍ମନିର୍ଭରଶୀଳ ଯୋଜନା ସଂପର୍କରେ ବ୍ୟାଙ୍କର କର୍ମକର୍ତ୍ତା ତଥା ବିଭାଗୀୟ ଅଧିକାରୀମାନଙ୍କ ସହ ପରାମର୍ଶ କରି ପୁରୀ ସହରର ମାଟିଆପଡ଼ାଠାରେ ଏକ ଅଟାକଳ ସ୍ଥାପନ କରିବା ନିମନ୍ତେ ସିଦ୍ଧାନ୍ତ କଲେ । ବାପା, ମା'ଙ୍କୁ ଆର୍ଥିକ ବୋଝରେ ଭାରାକ୍ରାନ୍ତ ନକରି ଜିଲ୍ଲା ଶିଳ୍ପକେନ୍ଦ୍ର ଅଧିକାରୀଙ୍କୁ ଅଟାକଳ ବସାଇବା ସଂପର୍କରେ ଆର୍ଥିକ ସହାୟତା ନିମନ୍ତେ ଅନୁରୋଧ କରିଥିଲେ । ତଦନୁଯାୟୀ ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାରେ ଶ୍ରୀ ମହାନ୍ତିଙ୍କୁ ବଡ଼ଶଂଖସ୍ଥିତ ଭାରତୀୟ ଷ୍ଟେଟବ୍ୟାଙ୍କ ତରଫରୁ ୭୦ ହଜାର ଟଙ୍କା ଆର୍ଥିକ ସହାୟତା ୨୦୦୦-୦୧ ଆର୍ଥିକ ବର୍ଷରେ ପ୍ରଦାନ କରିଥିଲେ । ଏହି ଅର୍ଥରେ ପ୍ରଶାନ୍ତ ଅଟାକଳ ସ୍ଥାପନ କରି ନିୟମିତ ଭାବେ ସେହି ଦିନଠାରୁ ଅଟାକଳ ଚାଲୁ ରଖିଛନ୍ତି । ତାଙ୍କର ଅମାୟିକ ବ୍ୟବହାର ଏବଂ ଗହମ ଇତ୍ୟାଦି ପେଷା ବାବଦକୁ ଗ୍ରାହକଙ୍କଠାରୁ ଉଚିତ ମୂଲ୍ୟ ନେଉଥିବାରୁ ତାଙ୍କ ଅଟାକଳକୁ ନିତ୍ୟ ବହୁ ଲୋକ ଗହମ ଇତ୍ୟାଦି ପେଷାଇବାକୁ ଯାଇଥାଆନ୍ତି । ଏହି ଅଟାକଳରେ ସେ ଦୁଇଜଣଙ୍କୁ ନିୟୋଜିତ କରି ସେମାନଙ୍କୁ ଉପଯୁକ୍ତ ପ୍ରାପ୍ୟ ପ୍ରଦାନ କରୁଛନ୍ତି । ଶ୍ରୀ ମହାନ୍ତି ତାଙ୍କ ଅଟାକଳରୁ ହାରାହାରି ମାସିକ ୪ ହଜାର ଟଙ୍କା ରୋଜଗାର କରୁଛନ୍ତି । ନିୟମିତ ଭାବେ ବ୍ୟାଙ୍କ ଋଣ ପରିଶୋଧ, ବିଦ୍ୟୁତ୍ ଦେୟ ପ୍ରଦାନ ଏବଂ ଦୁଇଜଣ ବ୍ୟକ୍ତିଙ୍କର ପ୍ରାପ୍ୟ ପ୍ରଦାନ ପରେ ଅବଶିଷ୍ଟ ଅର୍ଥରେ ତାଙ୍କ ପରିବାର ହସଖୁସିରେ ଚଳୁଛନ୍ତି ।

ସୌଜନ୍ୟ : ଇନ୍ଦ୍ରମଣି ମହାଳିକ, ଅତିରିକ୍ତ ରଚନା ଅଧିକାରୀ, ସୂଚନା ଓ ଲୋକ ସଂପର୍କ ବିଭାଗ

# ବିଶ୍ୱାସର ପ୍ରତୀକ - ରେଡ଼କ୍ରସ

ପଦ୍ମନାଭ ପଣ୍ଡା

**ସ**ଦ୍ଦାମ ଉପନ୍ୟାସ ଲେଖୁଛନ୍ତି । ତାଙ୍କ ଉପନ୍ୟାସରେ ଯିଏ ନାୟକ, ତାଙ୍କ ନାମ ସଲିମ୍ । ଦୀର୍ଘକାୟ ଚେହେରା, ଘନ କେଶରାଶି, ମୋଟା ନିଶ । ମୋଟାମୋଟି ଭାବରେ ଆକର୍ଷଣୀୟ ବ୍ୟକ୍ତିତ୍ୱ । ଆଖିର ଚାହାଣୀରେ ଆଦେଶ ଦେଇପାରୁଥିବା ଏହି ନାୟକଙ୍କର ଯିଏ ସ୍ରଷ୍ଟା, ସିଏ ଆଜି ନିଜ ଦେଶର ମାଟିରେ ବନ୍ଦି - ଏକ ନିଭୃତ କୋଠରୀରେ । କିଛି ଦିନ ତଳେ ଯାହାର ମୁଖ ନିସୃତ ବାଣୀ ଥିଲା ଅକାଟ୍ୟ ଆଇନ୍, ଯାହାର ଆଦେଶକୁ କାର୍ଯ୍ୟକାରୀ କରିବାକୁ ଅଧସ୍ତନମାନଙ୍କ ମଧ୍ୟରେ ହେଉଥିଲା ପ୍ରତିଯୋଗିତା - ସେ ଆଜି ନିର୍ବାସିତ । ଭାବନା ରୂପାନ୍ତରିତ ହେଉଛି ଉପନ୍ୟାସରେ । ସଦ୍ଦାମ ହୁସେନଙ୍କ ସଂପର୍କରେ ଏହି ଖବରଟି ବାହାରିଥିଲା ଦୈନିକ ଧରିତ୍ରୀରେ - ମଇ ତିନି ତାରିଖ ଦିନ । ଯାହା ଜଣାଗଲା ଏହି ଖବରଟି ଲୋକଲୋଚନକୁ ଆଣି ପାରିଛନ୍ତି ରେଡ଼କ୍ରସର ପ୍ରତିନିଧିଗଣ, ଯେଉଁମାନେ କି ଭେଟି ଥିଲେ ସଦ୍ଦାମଙ୍କୁ ତାଙ୍କ ପାଇଁ ଟଣା ଯାଇଥିବା ଲକ୍ଷ୍ମଣ ରେଖା ଭିତରେ । କେତେକଙ୍କ ପାଇଁ ଖବରଟି ଥିଲା ଆଶ୍ୱସ୍ତିକର ।

ଯାହା ହେଉ କାହା ଦ୍ୱାରା ହୁଏନି, ତାହା କରନ୍ତି ରେଡ଼କ୍ରସ୍‌ର ସ୍ୱେଚ୍ଛାସେବକମାନେ । ନିଷିଦ୍ଧାଞ୍ଚଳ ଭିତରକୁ ପ୍ରବେଶ କରିପାରନ୍ତି ସେମାନେ କିଛି ମହତ୍ ଉଦ୍ଦେଶ୍ୟ ନେଇ । ସେମାନଙ୍କ ପାଇଁ ଶତ୍ରୁ-ମିତ୍ର ବାଛବିଚାର କିଛି ନାହିଁ । ଯେତେବେଳେ ସମସ୍ତେ ଆହତ, ଯେତେବେଳେ ଆକାଶ ଭରିଯାଏ ବେଦନାରେ, ସେତେବେଳେ ସମସ୍ତେ ଖୋଜନ୍ତି ଜଣେ ପ୍ରିୟଜନର ଉପସ୍ଥିତି, ଆଉ ଆହା ପଦଟିଏ । ଆଉ ଏହି ଭାବୋଚ୍ଛ୍ୱାସ ଭିତରୁ ହିଁ ରେଡ଼କ୍ରସର ସୃଷ୍ଟି । ପ୍ରକୃତିକୃତ ହେଉ ବା ମଣିଷକୃତ ହେଉ - ବିପର୍ଯ୍ୟସ୍ତ କବଳରୁ କାହାର ନିସ୍ତାର ନାହିଁ । ଜାତି, ଧର୍ମ, ବର୍ଣ୍ଣ, ଧନୀ, ଦରିଦ୍ର ନିର୍ବିଶେଷରେ ସମସ୍ତେ ଶିକାର ହୁଅନ୍ତି ଏ ଭୟାନକ ପରିସ୍ଥିତିରେ । ଆଉ ସେତିକିବେଳେ ସହାୟତାର କୋମଳହାତ ଲମ୍ବି ଆସେ ରେଡ଼କ୍ରସ ସଂସ୍ଥାରୁ । ଏହି ଶବ୍ଦର ନାମ ଉଚ୍ଚାରଣ ମାତ୍ରେ କାହିଁକି କେଜାଣି ସୃଷ୍ଟି ହୁଏ ଏକ ଆତ୍ମପ୍ରତ୍ୟୟ ।

ଏହି ସଂସ୍ଥାର ଯିଏ ସ୍ରଷ୍ଟା, ଏହି ପ୍ରତୀକର ଯିଏ ଜନକ, ସେ ଥିଲେ ହେନେରୀ ଡୁନାଣ୍ଟ, ସ୍ୱିଜରଲ୍ୟାଣ୍ଡର ଜଣେ ବ୍ୟବସାୟୀ । ଜନ୍ମ ୧୯୨୮ ମସିହାରେ । ୩୧ ବର୍ଷ ବୟସରେ ବ୍ୟବସାୟ କାର୍ଯ୍ୟରେ ଇଟାଲୀ ଯାଇଥିବାବେଳେ, ଜୁନ୍ ୨୪ ତାରିଖର ସଲଫେରିନୋ ଯୁଦ୍ଧ ତାଙ୍କ ଜୀବନରେ ଏକ ବିରାଟ ପରିବର୍ତ୍ତନ ଆଣିଥିଲା, ଠିକ୍ ଯେମିତି ପରିବର୍ତ୍ତନ ଆଣିଥିଲା କଳିଙ୍ଗ ଯୁଦ୍ଧ ଚଣ୍ଡାଶୋକଙ୍କ ମନରେ । ସଲଫେରିନୋର ୧୪ ଘଣ୍ଟିଆ ଯୁଦ୍ଧରେ ମଲେ ୪୦ ହଜାର, ଆହତ ହେଲେ ଆହୁରି ଅନେକ । ଯୁଦ୍ଧକ୍ଷେତ୍ରରେ ଆହତ ସୈନିକମାନଙ୍କ ଆର୍ତ୍ତ ଚିତ୍କାର ଥିଲା ସାମାନ୍ୟ ପାଣି ଟିକିଏ ପାଇଁ, ସେମାନଙ୍କର ଚିକିତ୍ସା ପାଇଁ । କିଛି ସମଭାବାପନ୍ନ ଯୁବକଙ୍କୁ ଯୋଗାଡ଼କରି ଏହି ୩୧ ବର୍ଷୀୟ ବ୍ୟକ୍ତି ଜଣକ ଲାଗିପଡ଼ିଲେ ନରନାରାୟଣଙ୍କ ସେବାରେ । ତାଙ୍କର ଆଦର୍ଶ ହୋଇଗଲା 'କାମୟେ ଦୁଃଖ ତପ୍ତାନାଂ, ପ୍ରାଣୀନାଂ ଆର୍ତ୍ତ ନାଶନମ୍ ।' ସେଇଦିନଠାରୁ ଏହି ସଂସ୍ଥାର ସୃଷ୍ଟି, ଆଉ ପ୍ରତୀକର ମଧ୍ୟ । ସ୍ୱିଜରଲ୍ୟାଣ୍ଡର ଜାତୀୟ ପତାକା ଥିଲା, ନାଲି ପୃଷ୍ଠଭୂମିରେ ଧଳାଛକି । ଏଠି ଖାଲି ରଙ୍ଗ ବଦଳି ଗଲା । ଧଳା ପୃଷ୍ଠଭୂମିରେ ନାଲିଛକି ହେଲା ରେଡ଼କ୍ରସ, ଆଜିର ବିଶ୍ୱରେ ସର୍ବକାଳୀନ ଶ୍ରେଷ୍ଠ ମାନବବାଦୀ ସଂଗଠନ, ଯାହାର କି ୧୭୯ଟି ରାଷ୍ଟ୍ରରେ ଜାତୀୟ ଶାଖାମାନ ଅଛି । ସମୟର ସ୍ରୋତରେ କେତେକ ମୁସଲମାନ ରାଷ୍ଟ୍ରରେ ଏହା ରେଡ଼କ୍ରସ ପରିବର୍ତ୍ତେ ରେଡ଼କ୍ରିସେଣ୍ଟ (ଲାଲ୍ ବଙ୍କିମଚନ୍ଦ୍ର) ରୂପେ କାର୍ଯ୍ୟକରି ଆସୁଅଛି । ଲକ୍ଷ୍ୟ ଗୋଟିଏ - ମାନବ ସେବା ହିଁ ମାଧବ ସେବା । ସେଇଥି ପାଇଁ ଶ୍ରୀମଦ୍ ଭଗବତ ଗୀତାର ପଞ୍ଚଦଶାଧ୍ୟାୟରେ ଉଲ୍ଲେଖ ଅଛି 'ମମୈନାଂଶୋ ଜୀବଲୋକେ ଜୀବଭୂତଃ ସନାତନଃ ।'

ହେନେରୀଙ୍କ ଜନ୍ମ ଦିବସ ମଇ ଆଠ ତାରିଖରେ ସମଗ୍ର ବିଶ୍ୱରେ ପାଳନ ହୁଏ ବିଶ୍ୱ ରେଡ଼କ୍ରସ ଦିବସ । ସେଇ ପରିପ୍ରେକ୍ଷୀରେ ଆନ୍ତର୍ଜାତିକ ସ୍ତରରେ ଗୋଟିଏ ଥିମ୍ ଉପରେ ଗୁରୁତ୍ୱ ଦିଆଯାଏ । ଚଳିତବର୍ଷ ପାଇଁ ବାର୍ତ୍ତା ହେଲା 'Stop Discrimination'

ଯାହାକୁ କି କୁହାଯାଇପାରିବ ବାଛବିଚାର ବନ୍ଦକର, ଭେଦଭାବ ବନ୍ଦକର । ଗତବର୍ଷର ଥିମ୍ ବା ଆହ୍ୱାନ ଥିଲା, 'Truth About Aids-pass it on' ଅର୍ଥାତ୍, ଏଡ୍ସ୍ ବିଷୟରେ ସତକଥା - ସମସ୍ତଙ୍କୁ କହି ଦିଅନ୍ତୁ । ତା' ପୂର୍ବବର୍ଷର ଥିମ୍ ବା ପ୍ରସଙ୍ଗ ଥିଲା, 'Stop misuse of Red-Cross Emblem' ଅର୍ଥାତ୍, ରେଡ୍‌କ୍ରସ ପ୍ରତୀକର ଅପବ୍ୟବହାର ବନ୍ଦ କର ।

ଦିବସ ପାଳନ ହୁଏ ବହୁତ ଜାକଜମକରେ । କିଛି ଦିନ ପୂର୍ବରୁ ପ୍ରସ୍ତୁତି । ଆଉ ତା'ପରେ ସ୍ୱର୍ଗଦ୍ୱାରଠାରେ ଶବସତ୍କାର କଲାବେଳର ବୈରାଗ୍ୟ ସାଗର ସ୍ନାନ ବେଳେ ଧୋଇଗଲା ପରି ଏ ମନୋଭାବ କୁଆଡ଼େ ଉଭେଇ ଯାଏ । କିନ୍ତୁ ରେଡ୍‌କ୍ରସ ସଂସ୍ଥାରେ ଏ କଥା ଟିକିଏ ନିଆରା । ସାଧାରଣତଃ ଏଠାରେ କର୍ମୀମାନେ ଟିକିଏ ଭିନ୍ନ ମାନସିକତାର । ଅସାମାନ୍ୟ ମାଦକତା ବହନ କରୁଥିବା ଚିହ୍ନଟିଏ ପୋଷାକରେ ଲଗାଇ ଦେଲେ ମନୋଭାବ ବଦଳିଯାଏ ସେମାନଙ୍କର । ଖିଆପିଆ ଭୁଲିଯାଇ ଲାଗି ଯାଆନ୍ତି ସେମାନେ ନିଃସ୍ୱାର୍ଥପର କାର୍ଯ୍ୟରେ । ୨୦୦୨ ବିଶ୍ୱ ରେଡ୍‌କ୍ରସ ଦିବସ ପୂର୍ବରୁ ଯେତେବେଳେ ସେ ବର୍ଷର ପ୍ରସଙ୍ଗ ଜଣାପଡ଼ିଲା, ଜାଣିବା ଶୁଣିବା ଲୋକ ଆଶ୍ଚର୍ଯ୍ୟ ହେଲେ । ତାହା ଥିଲା ରେଡ୍‌କ୍ରସ ପ୍ରତୀକର ଅପବ୍ୟବହାର ସଂପର୍କରେ । ସେତେବେଳ ପର୍ଯ୍ୟନ୍ତ ପ୍ରାୟ ଲୋକମାନେ ଜାଣିଥିଲେ ଯେ, ରେଡ୍‌କ୍ରସ ଚିହ୍ନଟି ଡାକ୍ତରମାନଙ୍କ ପାଇଁ, ଔଷଧ ଦୋକାନ ପାଇଁ ଓ ଆମ୍ବୁଲାନ୍ସ ପାଇଁ ଉଦ୍ଦିଷ୍ଟ, କିନ୍ତୁ ରେଡ୍‌କ୍ରସ ତରଫରୁ ବଣ୍ଟନ କରାଯାଇଥିବା ପ୍ରଚାରପତ୍ରରୁ ଯାହା ଜଣାଗଲା, ଏହି ଚିହ୍ନ ବ୍ୟବହାର କରିବା ପାଇଁ ଉପରୋକ୍ତ ତିନିବର୍ଗ କେହି ହକ୍‌ଦାର ନୁହଁନ୍ତି । ସେମାନଙ୍କର ଅଲଗା ଅଲଗା ପ୍ରତୀକ ଅଛି । ରେଡ୍‌କ୍ରସ ଚିହ୍ନ ଦୁର୍ଗତମାନଙ୍କ ପାଇଁ ନିଃଶୁଳ୍କ ସେବା ପ୍ରଦାନ କରିବାବେଳେ, ରେଡ୍‌କ୍ରସ ପାଇଁ ପାଣ୍ଠି ସଂଗ୍ରହ ଉଦ୍ଦେଶ୍ୟରେ, ସୂଚନାତ୍ମକ ଓ ସୁରକ୍ଷାତ୍ମକ ଭାବରେ ତଥା ଅନୁରୂପ କେତେକ କ୍ଷେତ୍ରରେ ବ୍ୟବହାର କରାଯାଇପାରିବ । ଏହି ବିଚାରରେ ରେଡ୍‌କ୍ରସ ବାହିନୀଙ୍କ ଉଦ୍ୟମ ଫଳରେ କେତେକ ଚିକିତ୍ସାଳୟରେ (ଉଦାହରଣ : ବଡ଼ ଡାକ୍ତରଖାନା, ପୁରୀ) ଓ କେତେକ ଆମ୍ବୁଲାନ୍ସରେ ସଠିକ୍ ସଂକେତ ବ୍ୟବହାର କରାଯାଉଅଛି । ଏପରିକି କେତେକ ସଚେତନ ଔଷଧ ଦୋକାନୀ ସେମାନଙ୍କ ରସିଦ୍‌ରେ ନାଲିଛକି ପରିବର୍ତ୍ତେ ନେଳିଛକି ବ୍ୟବହାର କଲେଣି । ଗାଡ଼ିରେ ନାଲିବତୀର ଅପବ୍ୟବହାର ପରି ରେଡ୍‌କ୍ରସ ପ୍ରତୀକର ଅପବ୍ୟବହାର ସଂପୂର୍ଣ୍ଣ ବନ୍ଦ ନହେଲେ ମଧ୍ୟ ସେଥିପାଇଁ ସଚେତନତା ଜାଗ୍ରତ ହେଲାଣି ।

ରେଡ୍‌କ୍ରସ ସଂଗଠନ ପାଇଁ ଗତବର୍ଷର ପ୍ରସଙ୍ଗ ଥିଲା ଏଡ୍ସ୍ ରୋଗ ସଂପର୍କିତ । ଗାଁଗହଳିରେ କୁହାଯାଏ ରୋଗ ଚାରି ପ୍ରକାରର । ଶାପଜ, ପାପଜ, ଗ୍ରହଜ, ଓ ଅନ୍ତଜ । ଶାପଜ ଓ ପାପଜଜନିତ ରୋଗଗୁଡ଼ିକରୁ ଶାପ କିମ୍ବା ପାପ ମୁକ୍ତ ହେଲେ, ଗ୍ରହଜ ସଂପର୍କିତ ରୋଗରୁ ସଂପୃକ୍ତ ଗ୍ରହର ପ୍ରଭାବ ତୁଟିଲେ କିମ୍ବା ଗ୍ରହ ଶାନ୍ତି କଲେ ଉପଶମ ମିଳୁଥିବା ବେଳେ, ଅନ୍ତଜଜନିତ ରୋଗରୁ ଚିକିତ୍ସା ଦ୍ୱାରା ଉପଶମ ମିଳେ । କିନ୍ତୁ ମାତ୍ର ଦୁଇ ଦଶନ୍ଧି ଧରି ବିଭୀଷିକା ସୃଷ୍ଟି କରିଥିବା ଏଡ୍ସ୍ ରୋଗ ହେଉଛି ମଣିଷର ନିଜର କୃତକର୍ମର ଫଳ । ପୁରାଣକୁ ବିଶ୍ୱାସ କରନ୍ତୁ ବା ନକରନ୍ତୁ, ନାରୀ ସଙ୍ଗଜନିତ ଦୋଷରୁ ଦେବରାଜ ଇନ୍ଦ୍ରଙ୍କ ଅବସ୍ଥା କ'ଣ ହୋଇଥିଲା, ତାହା ଯଦି ଆମ ଉପରେ ଟିକିଏ ପ୍ରଭାବ ପକାଇ ଥାଆନ୍ତା, ତା'ହେଲେ ୧୯୮୬ ମସିହାରେ ଏହି ରୋଗ ଏ ଦେବଭୂମିକୁ ପ୍ରବେଶ କରିବା ପାଇଁ ଟିକେଟ କରିପାରି ନଥାନ୍ତା । ଏହି ରୋଗରେ ଶାରୀରିକ ପୀଡ଼ା ଅପେକ୍ଷା ମାନସିକ ଦଂଶନ ରୋଗୀକୁ ଅସ୍ତବ୍ୟସ୍ତ କରିପକାଏ ଯାହା ଫଳରେ କି ରୋଗୀଟି ସବୁବେଳେ ଶୁଣୁଥାଏ ଶୀତଳ ମୃତ୍ୟୁର ପାଦ ଶବ୍ଦ । ମୃତ୍ୟୁ ପୂର୍ବରୁ ମୃତ୍ୟୁ । ବର୍ଷକ ଭିତରେ ଲୋକମାନେ ରେଡ୍‌କ୍ରସର ଏହି ଥିମ୍‌ରେ କେତେକ ପ୍ରଭାବିତ ହୋଇଛନ୍ତି ତାହା ପରିସଂଖ୍ୟାନ କହିବ, କିନ୍ତୁ ଦର୍ପଣରେ ଦେଖିବା ପରି ଆମେ ସମସ୍ତେ ବିଶ୍ୱବାସୀଙ୍କ ସହ ଏକାଠି ମିଶି ଦେଖିଲେ ଅପ୍ରେଲ ମାସର ଭାରତ-ପାକିସ୍ଥାନ କ୍ରିକେଟ ଖେଳ ଯେଉଁଥିରେ କି ଉଭୟ ଦଳର ସମସ୍ତ ଖେଳାଳୀ ମୁଲତାନ ପଡ଼ିଆକୁ ଓହ୍ଲାଇ ଆସିଥିଲେ, ଜନସଚେତନତା ପାଇଁ ପୋଷାକ ଉପରେ ଲାଲ୍ ରିବନ (ଏଚ୍.ଆଇ.ଭି. ଏଡ୍ସ୍‌ର ପ୍ରତିଷେଧକର ସଙ୍କେତ) ଲଗାଇ । ପ୍ରସଙ୍ଗ ମୂଲ୍ୟହୀନ ହୋଇ ନାହିଁ ।

ଚଳିତବର୍ଷ ପାଇଁ ରେଡ୍‌କ୍ରସର ଥିମ୍ ହେଲା 'Stop Discrimination', ଯାହାକୁ ବୁଝିବାଭଳି କୁହାଯାଇପାରିବ 'ବାଛ ବିଚାର ବନ୍ଦ କର' । ଆଜିକାଲି ସମାଜରେ ବିଭିନ୍ନ କାରଣରୁ ଜାତି, ଧର୍ମ, ବର୍ଣ୍ଣ, ଲିଙ୍ଗ, ସାମାଜିକ ସ୍ଥିତି, ଅର୍ଥନୈତିକ ସ୍ଥିତି ନିର୍ବିଶେଷରେ ବହୁତ ବାଛବିଚାର କରାଯିବାର ନଜିର ଅଛି । ଏହି ବାଛବିଚାର, ଭେଦଭାବ ଆରମ୍ଭ ହେଉଛି ମାତୃ ଗର୍ଭରୁ । ଗର୍ଭସ୍ଥ ଶିଶୁର ଲିଙ୍ଗ ନିରୂପଣ କରିବା ବେଆଇନ ହୋଇଥିଲେ ହେଁ, କେତେକ କ୍ଷେତ୍ରରେ ଏହା କରାଯାଉଅଛି ଏବଂ ଗର୍ଭସ୍ଥ ଶିଶୁଟି କନ୍ୟା ହୋଇଥିଲେ ସେଠାରେ ଭ୍ରୂଣହତ୍ୟା କରାଯାଉଅଛି । ପଞ୍ଜାବ ରାଜ୍ୟରେ କନ୍ୟା ନିଅଣ୍ଟ ପଡୁଥିବା କଥା କିଛି ଦିନ ତଳେ ଖବର କାଗଜରେ ବାହାରିଥିଲା । ତାହାର କାରଣ କନ୍ୟା ଭ୍ରୂଣଜନିତ ବାଛବିଚାର ନୁହେଁ ତ ? ଜାତି ଭିତ୍ତିରେ କରାଯାଉଥିବା ବାଛବିଚାର ସଂପର୍କରେ ଆଲୋକପାତ କରିବା ନିଷ୍ପ୍ରୟୋଜନ । ବିପର୍ଯ୍ୟୟ ପରେ ଯେଉଁ କେତୋଟି 'ଅଲୋଡ଼ାବର୍ଗ' ସୃଷ୍ଟି ହୁଅନ୍ତି, ତାହା କେବଳ ଏହି ଭେଦଭାବ-ବାଛବିଚାର ଯୋଗୁଁ ।

ମଣିଷକୃତ ଯୁଦ୍ଧର ଧ୍ୱଂସ କାହାଣୀ ଅବର୍ଣ୍ଣନୀୟ । ଜଣେ ମରିଗଲାପରେ ତା'ର ମା', ଭଉଣୀ ଓ ଶିଶୁର ଲୁହରେ ବସୁଧା ଭିଜିଯାଏ । ଏ କଷ୍ଟଠାରୁ କଷ୍ଟ ଆହୁରି ବଢ଼ି ଯାଏ, ଯେତେବେଳେ ଜଣେ ନିଖୋଜ ହୁଏ । ସେତେବେଳେ ହଠାତ୍ ସୃଷ୍ଟି ହୁଏ ଭୟଙ୍କର ପରିସ୍ଥିତି । ଏଥିପାଇଁ ରେଡ୍‌କ୍ରସ ସଚେତନ । ଆଉ ସେଇଥିପାଇଁ ହୁଏତ ଗତ ଡିସେମ୍ବର ମାସର ପ୍ରଥମ ସପ୍ତାହରେ ବିଭିନ୍ନ ଦେଶର ରେଡ୍‌କ୍ରସର ପ୍ରତିନିଧି,

ଜେନେଭା କନଭେନସନ୍‌ରେ ସ୍ୱାକ୍ଷର କରିଥିବା ଦେଶର ପ୍ରତିନିଧିଗଣ, ବଛା ବଛା ସ୍ୱେଚ୍ଛାସେବୀ ସଂଗଠନର କର୍ମକର୍ତ୍ତା, ମିଳିତ ଜାତିସଂଘର ପ୍ରତିନିଧି, ଜେନେଭାଠାରେ ମିଳିତ ହୋଇଥିଲେ ରେଡ଼କ୍ରସ ପତାକା ତଳେ ଏ ବିଷୟରେ ଆଲୋଚନା କରିବାକୁ । ସେମାନଙ୍କୁ ବ୍ୟଥିତ କରିଥିଲା ମାନବିକ ମୂଲ୍ୟବୋଧକୁ ସମ୍ମାନ ନଦେବା, ସେମାନଙ୍କୁ ବ୍ୟଥିତ କରିଥିଲା ଅସ୍ତ୍ରଶସ୍ତ୍ର ପ୍ରତିଯୋଗିତାରେ ବଳି ପଡୁଥିବା ନିରୀହ ଜନସାଧାରଣଙ୍କ ଯନ୍ତ୍ରଣା । ସେମାନଙ୍କୁ ବ୍ୟଥିତ କରିଥିଲା ଆନ୍ତର୍ଜାତୀକ ଆଇନ ଉଲ୍ଲଙ୍ଘନ, ସେମାନଙ୍କୁ ବ୍ୟଥିତ କରିଥିଲା ବିପର୍ଯ୍ୟୟ ପରବର୍ତ୍ତୀ ଅବସ୍ଥାରେ ଦାରିଦ୍ର୍ୟ କିପରି ବଞ୍ଚିବାର ଅଧିକାରକୁ, ସ୍ୱାସ୍ଥ୍ୟ ସେବାର ଅଧିକାରକୁ, ଆତ୍ମସମ୍ମାନର ଅଧିକାରକୁ ଛଡ଼ାଇ ନେଉଛି । ସେମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ ଯୁଦ୍ଧ ପରବର୍ତ୍ତୀ ଅବସ୍ଥାରେ ନିଖୋଜ ବ୍ୟକ୍ତିମାନଙ୍କ ଅବସ୍ଥା ଚିନ୍ତା କରି । ସେମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ ଯୁଦ୍ଧବନ୍ଦୀମାନଙ୍କ ପ୍ରତି ହେଉଥିବା ଅମାନବୀୟ ଆଚରଣ ଯୋଗୁଁ, ସେମାନେ ବ୍ୟତିବ୍ୟସ୍ତ ହୋଇପଡ଼ିଥିଲେ ଏଚ.ଆଇ.ଭି./ଏଡ଼ସ୍ ରୋଗରେ ପୀଡ଼ିତ ବ୍ୟକ୍ତିମାନଙ୍କ ପ୍ରତି ସାମାଜିକ ପ୍ରତିକ୍ରିୟା ନେଇ । ସମ୍ଭବତଃ ଏଇଥିରୁ ହିଁ ଚଳିତ ବର୍ଷ ଥିମ୍ 'Stop Discrimination'ର ସୃଷ୍ଟି ।

ଜଗତର ନାଥ ଜଗନ୍ନାଥଙ୍କର ଏ ଦେଶ । ତାଙ୍କ ବଡ଼ଦେଉଳରେ ଶ୍ରୀମହାପ୍ରସାଦ ପାଇବାରେ ବାଛବିଚାର ନାହିଁ । ସେଥିରେ ସମସ୍ତଙ୍କର ସମାନ ଅଧିକାର । ହିନ୍ଦୁର ପରମାରାଧ୍ୟ କାଳିଆଠାକୁର ଘୋଷଯାତ୍ରା ପାଇଁ ମନ୍ଦିର ବାହାରକୁ ବାହାରି ଆସନ୍ତି ସଭିଁଙ୍କୁ ଭେଟିବାକୁ । ସେଥିରେ ବାଛବିଚାର ନାହିଁ । ଦୈନନ୍ଦିନ ନୀତିରେ ଠାକୁର ନିଜେ ପ୍ରାତଃ ଭୋଜନ (ଗୋପାଳ ବଲ୍ଲଭ ଭୋଗ) ଗ୍ରହଣ କରିବା ପୂର୍ବରୁ ବୁଝନ୍ତି ତାଙ୍କର ଦ୍ୱାରପାଳମାନଙ୍କ କଥା । ଆଗ ଜୟ-ବିଜୟ ଖାଇ ସାରିବା ପରେ ପରେ ସେ' ଖାଆନ୍ତି । ଦ୍ୱାରପାଳ ବା ପ୍ରହରୀ ବୋଲି ମନରେ ବାଛବିଚାର ନାହିଁ । ଆଗ ଦ୍ୱାରପାଳ ପୂଜା ଓ ପରେ ଗୋପାଳ ବଲ୍ଲଭ ପୂଜା ଅନୁଷ୍ଠିତ ହୁଏ ଶ୍ରୀମନ୍ଦିରରେ ପ୍ରତ୍ୟହ । ଆମେ ତାଙ୍କରି ଚକ୍ର ଆଢୁଆଳରେ ଥାଇ ତାଙ୍କଠାରୁ କ'ଣ କିଛି ଶିଖିବାନି ? ତାହା ହିଁ ଆଜିର ଅନୁଚିନ୍ତା ।

ଅନୁସଚିବ
ରାଜସ୍ୱ ପର୍ଷଦ, କଟକ

---

# ଅବଳା ଦୁର୍ବଳା ନୁହଁନ୍ତି
## (ସଫଳ କାହାଣୀ)

ପୁରୀ ସହରର ଟିକରପଡ଼ା ମହାନ୍ତି ସାହିର ଶଙ୍କର ମିଶ୍ରଙ୍କର ସୁପୁତ୍ରୀ ରଞ୍ଜନା ମିଶ୍ର ନାରୀ ହେଲେ ମଧ୍ୟ ନିଜକୁ ପୁରୁଷଙ୍କଠାରୁ କେବେ ନ୍ୟୁନ ମନେ କରୁନଥିଲେ । ସର୍ବଦା ତାଙ୍କ ମନ ଭିତରେ ଭରି ରହିଥିଲା କିଛି କରିବା ପାଇଁ ଅଦମ୍ୟ ଇଚ୍ଛା ଏବଂ ପ୍ରଗାଢ଼ ଆତ୍ମବିଶ୍ୱାସ । ଏହି ଆତ୍ମବିଶ୍ୱାସ ତଥା ଇଚ୍ଛାଶକ୍ତିକୁ ପାଥେୟ କରି ସରକାରଙ୍କ ବିଭିନ୍ନ କଲ୍ୟାଣକର ଯୋଜନା ସମ୍ପର୍କରେ ବିଭାଗୀୟ ଅଧିକାରୀମାନଙ୍କ ସହିତ ବିଚାର ବିମର୍ଶ କରି ସେ ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାକୁ ତାଙ୍କର ଭବିଷ୍ୟତ ଗଠନ ପାଇଁ ଉପଯୁକ୍ତ ବୋଲି ବିବେଚିତ କଲେ । ପ୍ରଧାନମନ୍ତ୍ରୀ ରୋଜଗାର ଯୋଜନାରେ ଅନ୍ତର୍ଭୁକ୍ତ ହୋଇ ୨୦୦୨-୦୩ ଆର୍ଥିକ ବର୍ଷରେ ଏକ କତା ଦଉଡ଼ି ଏବଂ ପାପୋଛ ତିଆରି କେନ୍ଦ୍ର ପ୍ରତିଷ୍ଠା ନିମନ୍ତେ ପଞ୍ଜାବ ନ୍ୟାସନାଲ ବ୍ୟାଙ୍କ, ବଡ଼ଦାଣ୍ଡ ଶାଖାରୁ ଟ.୭୫,୮୦୦ଙ୍କା ଋଣ ଆକାରରେ ଆଣିଥିଲେ । ବର୍ତ୍ତମାନ ତାଙ୍କର ଏହି କ୍ଷୁଦ୍ର ଶିଳ୍ପରେ ୧୦ ଜଣ ବ୍ୟକ୍ତି କାର୍ଯ୍ୟରତ । ଏହି କ୍ଷୁଦ୍ର ଶିଳ୍ପଟି ବେଶ୍ ଭଲ ଭାବରେ ଚାଲିଛି । ସମ୍ପ୍ରତି ସେ ତାଙ୍କର ବ୍ୟାଙ୍କ ଋଣ ନିୟମିତ ଭାବେ ଶୁଝି ଚାଲିଛନ୍ତି । ତାଙ୍କ କହିବା ଅନୁଯାୟୀ ତାଙ୍କର ଏହି କାରଖାନାରୁ ଉତ୍ପାଦିତ ସାମଗ୍ରୀର ବଜାରରେ ବେଶ୍ ଚାହିଦା ରହିଛି ଏବଂ ଭବିଷ୍ୟତରେ ଏହି କେନ୍ଦ୍ରର କଳେବର ବୃଦ୍ଧି ପାଇବ ବୋଲି ସେ ଆଶାବାଦୀ । ଏହି କେନ୍ଦ୍ରରୁ ସମସ୍ତ ଖର୍ଚ୍ଚ ଯାଇ ମାସିକ ହାରାହାରି ଟ.୪୦୦୦ଙ୍କା ତାଙ୍କର ଉପାର୍ଜନ ହୋଇପାରୁଛି ଯାହାକି ତାଙ୍କର ପରିବାର ପ୍ରତିପୋଷଣ ପାଇଁ ବେଶ୍ ସହାୟକ ହେଉଛି ।

ସୌଜନ୍ୟ : ଦେବାଶିଷ ପଟ୍ଟନାୟକ, ରଚନା ଶାଖା, ସୂଚନା ଓ ଲୋକ ସଂପର୍କ ବିଭାଗ

# ରାଷ୍ଟ୍ରୀୟ ସେବାରେ ଯୁବସମାଜ ପାଇଁ ଆହ୍ୱାନ : ଜାତୀୟ ସେବା ଯୋଜନା

ରବୀନ୍ଦ୍ର କୁମାର ଦାଶ

ପ୍ରାକ୍ ସ୍ୱାଧୀନତା କାଳରେ ବ୍ରିଟିଶ୍ ସରକାରଙ୍କ ପ୍ରବର୍ତ୍ତିତ ଶିକ୍ଷା ବ୍ୟବସ୍ଥା କେବଳ ସାକ୍ଷରତାଭିତ୍ତିକ ଥିଲା । ସ୍ୱାଧୀନୋତ୍ତର ଭାରତରେ ଜାତିର ଜନକ ମହାତ୍ମା ଗାନ୍ଧୀଙ୍କ ଆଦର୍ଶ ଓ ପରିକଳ୍ପନାରେ ଭାରତର ଛାତ୍ରଛାତ୍ରୀମାନଙ୍କୁ ଜାତୀୟ ସେବା କ୍ଷେତ୍ରରେ ଜଡ଼ିତ କରିବା ଆରମ୍ଭ ହୋଇଥିଲା । କାରଣ ଶିକ୍ଷାର୍ଥୀମାନେ ଖାଲି ଅଧ୍ୟୟନ ଭିତରେ ସୀମିତ ନରହି ସର୍ବାଙ୍ଗୀନ ବିକାଶ ଓ ପୂର୍ଣ୍ଣାଙ୍ଗ ଶିକ୍ଷାଲାଭ ପାଇଁ ସାମାଜିକ ଚଳଣି, ସଭ୍ୟତା ଓ ସଂସ୍କୃତି ଭିତରେ ତଲ୍ଲୀନ ହେବା ଆବଶ୍ୟକ । ଏହା ଦ୍ୱାରା ଶିକ୍ଷାର୍ଥୀର ଚିନ୍ତାଚେତନା ପରିବ୍ୟାପ୍ତ ହୁଏ । ଏକ ଉତ୍ତମ ମଣିଷ ହୋଇ ସେ ଦେଶ ଓ ଏକ ପ୍ରଗତିଶୀଳ ଶାନ୍ତିକାମୀ ବିଶ୍ୱ ଗଠନରେ ସହାୟକ ହୁଏ । ଜୀବନର ଆରମ୍ଭରୁ ସେ ତା'ର ଚତୁଃପାର୍ଶ୍ୱର ପୃଥିବୀକୁ ଚିହ୍ନିଥାଏ । ଏହା ତାକୁ ସଚେତନଶୀଳ ମଣିଷ କରି ଗଢ଼ିଥାଏ । ମଣିଷ ଜୀବନର ସକଳ ଦୁଃଖ, ଝଡ଼ଝଞ୍ଜା, ତାକୁ ବିବ୍ରତ କରିପାରେନି । ବସ୍ତୁବାଦ ଓ ଭୋଗବାଦଠାରୁ ଦୂରରେ ରହି ସେ ନିରୂତା ଆଧାତ୍ମିକତାର ମଣିଷଟିଏ ପାଲଟିଯାଏ ସାରା ମଣିଷ ଜାତିକୁ ସେ ଭଲପାଏ । ରାଷ୍ଟ୍ର ସେବାରେ ସେ ନିଜକୁ ସୈନିକଟିଏ ମନେକରେ । ରାଷ୍ଟ୍ର ହୋଇଥାଏ ତା' ଆଖିରେ ତା'ର ପରିବାର । ସ୍ୱତଃସ୍ଫୂର୍ତ୍ତ ଭାବେ ଶିକ୍ଷାର୍ଥୀ ମନରୁ ହିଂସା-ଦ୍ୱେଷ, ରାଗ, ମିଥ୍ୟାଚାର, ଅହଙ୍କାର, ଈର୍ଷା ପରାୟଣତା, ପରଶ୍ରୀକାତରତା ପରି ଦୁର୍ଗୁଣଗୁଡ଼ିକ ଦୂରେଇଯାଏ । ଅଧିକନ୍ତୁ ଏହା ଯୁବ ସମାଜ ମନରେ ଜାତୀୟତାଭାବ, ସ୍ୱଦେଶପ୍ରୀତି, ଭ୍ରାତୃତ୍ୱବୋଧ, ସ୍ନେହ-ମମତା, ନିର୍ଭୀକତା ଭାବ ଉଦ୍ରେକ କରେ । ସେବା ମାଧ୍ୟମରେ ଯୁବସମାଜର ବ୍ୟକ୍ତିତ୍ୱର ବିକାଶ ଘଟିଥାଏ ।

ଏହି ମହାନ୍ ଲକ୍ଷ୍ୟକୁ ନେଇ ବାପୁଜୀଙ୍କ ଆଦର୍ଶରେ ତଲ୍ଲୀନ ଜାତୀୟ ସେବା ଯୋଜନା (NSS)ର ଅୟମାରମ୍ଭ ହୋଇଥିଲା । ବିଶେଷତଃ ସାମ୍ପ୍ରତିକ ସମାଜରେ ବହୁ ହିଂସା, ପାଶବିକତା ଓ ବ୍ୟକ୍ତି ଚରିତ୍ରର ଅବକ୍ଷୟ ତଥା ରାଷ୍ଟ୍ରୀୟ ସଂହତି ପ୍ରତି ବିପଦର ଆଶଙ୍କା ଥିବାବେଳେ ଜାତୀୟ ସେବା ଯୋଜନା National Service Scheme (NSS) ଏକ ଉପାଦେୟ ତଥା ବଳିଷ୍ଠ ପ୍ରତିକାର, ଏବେକାର ଘଡ଼ିସନ୍ଧି ସମୟରେ ରାଷ୍ଟ୍ରୀୟ ସେବାରେ ଏହା ଯୁବ ସମାଜ ପାଇଁ ଏକ ଆହ୍ୱାନ ଅଟେ ।

କଲେଜ ଶିକ୍ଷାରେ ଏହା ଭାରତ ସରକାରଙ୍କର ଏକ ମହତ୍ ଯୋଜନା ଅଟେ । ଯୁବ ସମାଜରେ ଉତ୍ତର ଦାୟିତ୍ୱ (Accountibility) ଓ ସ୍ୱଚ୍ଛତା (Transparancy)ର ବିକାଶ ଧାରାରେ ରାଷ୍ଟ୍ରର ସେବା ଓ ସଂହତି ବୃଦ୍ଧି ଏହାର ମୂଳଲକ୍ଷ୍ୟ । ବିଶେଷତଃ ସେବା କାର୍ଯ୍ୟ ମାଧ୍ୟମରେ ସର୍ବସାଧାରଣ, ଶିକ୍ଷକ ଓ ଶିକ୍ଷାର୍ଥୀ ମନରେ ସ୍ୱେଚ୍ଛାକୃତ ସେବା ମନୋବଳକୁ ଏହା ଦୃଢ଼ କରିଥାଏ । ସଫଳତା ଅର୍ଜନ କ୍ଷେତ୍ରରେ ଜ୍ଞାନ ଓ କର୍ମର ଆବଶ୍ୟକତା ଯେ କିଭଳି ଅପରିହାର୍ଯ୍ୟ, ତାହା ଶିଖାଇଥାଏ । ଏହି ଜାତୀୟ ସେବା ଯୋଜନା (NSS) ଏବେ ଭାରତର ସର୍ବବୃହତ୍ ସେବାମୂଳକ ସଂଗଠନ । ଶିକ୍ଷା ବ୍ୟବସ୍ଥାରେ ସମାଜ ସେବାକୁ ଅନ୍ତର୍ଭୁକ୍ତ କରି ଛାତ୍ର ଶିକ୍ଷକ ମଧ୍ୟରେ ସୁସମ୍ପର୍କ ଓ ସୁସ୍ଥ ବାତାବରଣ ସୃଷ୍ଟି କରିବା ସହ ସେମାନେ ବସବାସ କରୁଥିବା ସମାଜ ସହ ଅବଗତ କରାଇବା କ୍ଷେତ୍ରରେ ଏହା ଶିକ୍ଷାର ଏକ ଅଂଶ ରୂପେ ଶିକ୍ଷାନୁଷ୍ଠାନରେ ସ୍ୱେଚ୍ଛାକୃତ ଭାବେ ଆରମ୍ଭ ପାଇଁ ଡଃ ରାଧାକ୍ରିଷ୍ଣନ୍‌ଙ୍କ ଅଧ୍ୟକ୍ଷତାରେ ଗଠିତ ବିଶ୍ୱବିଦ୍ୟାଳୟ ଆୟୋଗ (University Grant Commission) ପ୍ରଥମେ ସୁପାରିଶ କରିଥିଲେ । ୧୯୫୨ ମସିହାରେ ଭାରତ ସରକାରଙ୍କର ପ୍ରଥମ ପଞ୍ଚବାର୍ଷିକ ଯୋଜନା କାର୍ଯ୍ୟକାରୀ ବେଳେ ଶିକ୍ଷାର୍ଥୀମାନେ ପାଠପଢ଼ା ବେଳେ ଏକବର୍ଷ ସେବାକାର୍ଯ୍ୟ କରିବା ଉଚିତ ବୋଲି ଗୁରୁତ୍ୱାରୋପ କରାଗଲା । ତତ୍କାଳୀନ ପ୍ରଥମ ପ୍ରଧାନମନ୍ତ୍ରୀ ପଣ୍ଡିତ ଜବାହରଲାଲ ନେହେରୁ ମଧ୍ୟ ଏହାକୁ କାର୍ଯ୍ୟକାରୀ କରିବା ପାଇଁ ବିଭିନ୍ନ ରାଜ୍ୟର ମୁଖ୍ୟମନ୍ତ୍ରୀମାନଙ୍କୁ ଚିଠି ଲେଖିଲେ । ତେଣୁ ସମାଜସେବା ଜଣେ ସ୍ନାତକର ପ୍ରାଥମିକ ଆବଶ୍ୟକତା ଅଟେ ଉତ୍ତମ ନାଗରିକ ହେବା ପାଇଁ । ୧୯୫୯ରେ ଏହି ଯୋଜନାକୁ ରାଜ୍ୟ ଶିକ୍ଷାମନ୍ତ୍ରୀମାନଙ୍କର ସମ୍ମିଳନୀରେ ଉପସ୍ଥାପନା କରାଗଲା । ସେହିବର୍ଷ ଅଗଷ୍ଟ ୨୮ ତାରିଖରେ ଡଃ ସି.ଡି. ଦେଶମୁଖଙ୍କ ଅଧ୍ୟକ୍ଷତାରେ ଏକ ଜାତୀୟ ସେବା କମିଟି ଗଠନ କରାଗଲା । ୧୯୬୪-୬୬ ମସିହାରେ ଡଃ ଡି.ଏସ୍. କୋଠାରୀଙ୍କ ଅଧ୍ୟକ୍ଷତାରେ ଗଠିତ ଶିକ୍ଷା

କମିଶନ୍ ସମାଜ ସେବାକୁ ଶିକ୍ଷାର ଏକ ଅଙ୍ଗ ବୋଲି ସୁପାରିଶ କଲେ । ଏହାପରେ ଶିକ୍ଷା ମନ୍ତ୍ରଣାଳୟ ଓ ବିଶ୍ୱବିଦ୍ୟାଳୟ ମଞ୍ଜୁରୀ ଆୟୋଗ (UGC) ମିଳିତ ଭାବେ ସମାଜ ସେବାକୁ ଶିକ୍ଷାନୁଷ୍ଠାନରେ କାର୍ଯ୍ୟକାରୀ କରିବାକୁ ଘୋଷଣା କଲେ । ଚତୁର୍ଥ ପଞ୍ଚବାର୍ଷିକ ଯୋଜନାରେ ଏହାର କାର୍ଯ୍ୟକାରିତା ପାଇଁ ଭାରତ ସରକାର ପାଞ୍ଚ କୋଟି ଟଙ୍କା ମଞ୍ଜୁର କଲେ । ସେପ୍ଟେମ୍ବର ୨୪ ତାରିଖ ୧୯୬୯ ମସିହାରେ ତତ୍କାଳୀନ କେନ୍ଦ୍ର ଶିକ୍ଷାମନ୍ତ୍ରୀ ଡଃ ଭି.କେ.ଆର୍.ଭି. ରାଓ ଦେଶର ୩୭ଟି ବିଶ୍ୱବିଦ୍ୟାଳୟର ୪୦ ହଜାର ସ୍ୱେଚ୍ଛାସେବୀଙ୍କୁ ନେଇ ଜାତୀୟ ସେବା ଯୋଜନାର କାର୍ଯ୍ୟକାରିତା ପାଇଁ ସବୁ ପ୍ରଦେଶର ମୁଖ୍ୟମନ୍ତ୍ରୀମାନଙ୍କର ପୂର୍ଣ୍ଣ ସହଯୋଗ କାମନା କଲେ ।

ଆଜିର ଏହି ଜାତୀୟ ସେବା ଯୋଜନା ଆରମ୍ଭର ଦୀର୍ଘ ତିନି ଦଶନ୍ଧି ପରେ ୧୬୦ଟି ବିଶ୍ୱବିଦ୍ୟାଳୟରେ ସାଢ଼େ ସାତ ହଜାର ଶିକ୍ଷକଙ୍କ ତତ୍ତ୍ୱାବଧାନରେ ଆଠ ହଜାର ଶାଖା ମାଧ୍ୟମରେ ୧୩ ଲକ୍ଷ ୫୨ ହଜାର ସ୍ୱେଚ୍ଛାସେବୀଙ୍କୁ ନେଇ ଏହି ଶ୍ରମଦାନ ଭିତ୍ତିକ ଅନୁଷ୍ଠାନ କର୍ମମୁଖର ହୋଇ ଉଠିଛି । ସାଧାରଣ ଭାବେ ବିଶ୍ୱବିଦ୍ୟାଳୟ ଦ୍ୱାରା ସ୍ୱୀକୃତିପ୍ରାପ୍ତ ତଥା ସହବନ୍ଧନ (Affiliation) ଲାଭ କରିଥିବା ମହାବିଦ୍ୟାଳୟଗୁଡ଼ିକର ଶିକ୍ଷାର୍ଥୀମାନଙ୍କୁ ନେଇ ଜଣେ ଜଣେ ଅଧ୍ୟାପକ ବା ଅଧ୍ୟାପିକାଙ୍କୁ ନେଇ ଗୋଟିଏ ଲେଖାଏଁ ଶାଖା ଗଠିତ ହୋଇଛି । ଶିକ୍ଷାର୍ଥୀମାନଙ୍କର ଶିକ୍ଷାକୁ ଆଖି ଆଗରେ ରଖି ଏହି ଅନୁଷ୍ଠାନଗୁଡ଼ିକ ନିୟମିତ ଓ ଦୀର୍ଘ ଛୁଟିମାନଙ୍କରେ ସ୍ୱତନ୍ତ୍ର ଅବକାଶକାଳୀନ ଶିବିର କାର୍ଯ୍ୟକ୍ରମର ଆୟୋଜନ ହୋଇଥାଏ । ପ୍ରତି ବର୍ଷ ଗୋଟିଏ ଗୋଟିଏ ଗାଁକୁ ପୋଷ୍ୟଗ୍ରାମ (Adopted Village) ରୂପେ ଗ୍ରହଣ କରି ଏଥିରେ ଶ୍ରମଦାନ ସରକାରଙ୍କର ବିଭିନ୍ନ ଜନହିତକର କାର୍ଯ୍ୟକ୍ରମ ଲୋକମାନଙ୍କୁ ଅବଗତ କରିବା, ନାଗରିକର ଅଧିକାର ସମ୍ପର୍କରେ ସଚେତନତା ବୃଦ୍ଧିପରି ବହୁ କାର୍ଯ୍ୟକ୍ରମମାନ ହାତକୁ ନେଇଥାନ୍ତି । ବୃକ୍ଷରୋପଣ, ପରିବେଶ ସୁରକ୍ଷା, ସ୍ୱାସ୍ଥ୍ୟ ପରୀକ୍ଷା, ରକ୍ତଦାନ, ପରିମଳ ବ୍ୟବସ୍ଥା, ନିରକ୍ଷରତା ଦୂରୀକରଣ, ସାମାଜିକ ସଚେତନତା ବୃଦ୍ଧି, ଏଡ୍ସ୍ ସଚେତନତା, ଶାରୀରିକ ଅକ୍ଷମ ବ୍ୟକ୍ତିଙ୍କ ପାଇଁ କୃତ୍ରିମ ଅଙ୍ଗରୋପଣ, ଶିଶୁ ଓ ଗର୍ଭବତୀ ମହିଳାଙ୍କୁ ପ୍ରତିଷେଧକ ଟୀକାଦାନ, ପରିବାର ନିୟନ୍ତ୍ରଣ ଅସ୍ତ୍ରୋପଚାର, ଜାତୀୟ ସଂହତି ବୃଦ୍ଧି ଓ କୁଷ୍ଠ-ହଇଜା ପରି ସଂକ୍ରାମକ ରୋଗର ନିଦାନ ଓ ବିଭିନ୍ନ କୁ-ସଂସ୍କାର ବିରୁଦ୍ଧରେ ବିଭିନ୍ନ କାର୍ଯ୍ୟକ୍ରମମାନ ସ୍ୱେଚ୍ଛାସେବୀମାନଙ୍କ ସହାୟତାରେ ହୋଇଥାଏ ।

ଭାରତ ପରି ଏକ ବିଶାଳ ଜନବହୁଳ ଦେଶର ମୁଖ୍ୟ ଶକ୍ତି ଯୁବଶକ୍ତି (Youth Power)କୁ ରାଷ୍ଟ୍ର ନିର୍ମାଣରେ ବିନିଯୋଗ କରିବା ପାଇଁ ଜାତୀୟ ସେବା ଯୋଜନା ରାଷ୍ଟ୍ରସ୍ତରୀୟ ବିଭିନ୍ନ ଆହ୍ୱାନମାନ ହାତକୁ ନେବା ଉଲ୍ଲେଖନୀୟ । ସେହି ପର୍ଯ୍ୟାୟରେ ୧୯୭୩ ମସିହାରେ 'ଦୁର୍ଭିକ୍ଷ ଦୂରୀକରଣରେ ଯୁବ ସମାଜ' ୧୯୭୪-୭୫ରେ 'ଆବର୍ଜନା ଓ ରୋଗ ଦୂରୀକରଣରେ ଯୁବ ସମାଜ', ୧୯୯୩-୯୫ ବର୍ଷ ପାଇଁ 'ଜାତୀୟ ସଂହତି ଓ ସଦ୍‌ଭାବନା ପ୍ରତିଷ୍ଠା ପାଇଁ ଯୁବସମାଜ', ୧୯୯୫-୯୬ରେ 'ଜଳ ପ୍ରକଳ୍ପର ପରିଚାଳନା ଓ ଅନାବାଦି ଜମିର ଉନ୍ନତି ପାଇଁ ଯୁବସମାଜ' ଏବଂ ଏବେ 'ସୁସ୍ଥ ସମାଜ ଗଠନ ପାଇଁ ଯୁବ ସମାଜ', 'ଜଳଛାୟା ପ୍ରକଳ୍ପ, ଜଳ ସଂରକ୍ଷଣ ଓ ଏହାର ସୁବିନିଯୋଗ' ଶିରୋନାମାରେ ସ୍ୱେଚ୍ଛାସେବୀମାନେ କାର୍ଯ୍ୟକରି ଆସୁଛନ୍ତି ।

ବାସ୍ତବିକ୍, ବହୁବିଧ ରାଷ୍ଟ୍ରୀୟ ସେବାରେ ଜାତୀୟ ସେବା ଯୋଜନା ଆଜିର ଯୁବ ସମାଜ ପାଇଁ ଏକ ସଫଳ ଆହ୍ୱାନ ଅଟେ । ବ୍ୟକ୍ତି ଚରିତ୍ରର ବିକାଶ ଓ ସୁସ୍ଥ ସାମାଜିକତାର ସୁରକ୍ଷାରେ ଏହା ଯେ ଖାଲି ସହାୟକ, ତା' ନୁହେଁ ଆହୁରି ମଧ୍ୟ ପ୍ରବୃଦ୍ଧ ରାଷ୍ଟ୍ର ନିର୍ମାଣରେ ଏହା ସହାୟକ ହୋଇଥାଏ ଓ ଯୁବ ସମାଜର ଚିନ୍ତାଚେତନାକୁ ବିକଶିତ, ମାର୍ଜିତ କରିଥାଏ ।

ଆଡ୍‌ଭୋକେଟ୍ ଓ 'ସମାଜ' ପ୍ରତିନିଧି
ଭୁବନ, ଢେଙ୍କାନାଳ- ୭୫୯୦୧୭

# ଆମ ଦେଶରେ ମହିଳା ଆନୁପାତିକହାର ପତନର କାରଣ

ସତ୍ୟନାରାୟଣ ମହାପାତ୍ର

**ବି**ଗତ କିଛିମାସ ତଳେ ଭାରତୀୟ ଆୟୁର୍ବିଜ୍ଞାନ ସଂସ୍ଥା (AIIMS) ଦ୍ୱାରା ଏକ ସଂଗୋଷ୍ଠୀର ଆୟୋଜନ ହୋଇଥିଲା ଦେଶର ରାଜଧାନୀ ନୂଆଦିଲ୍ଲୀଠାରେ । ସେଥିରେ ଅଂଶ ଗ୍ରହଣ କରିଥିଲେ ଡାକ୍ତରମାନଙ୍କ ସମେତ ଦେଶର ପ୍ରମୁଖ ରାଜନୀତିକ ନେତାଗଣ ଏବଂ ଧାର୍ମିକ ଗୋଷ୍ଠୀର ପ୍ରତିନିଧିବୃନ୍ଦ । ଏଭଳି ଏକ ବିଶେଷ ସଂଗୋଷ୍ଠୀରେ ତାତ୍ପର୍ଯ୍ୟପୂର୍ଣ୍ଣ ଆଲୋଚନାର ବିଷୟ ଥିଲା, ଦେଶର କୋଣ ଅନୁକୋଣରେ ଦୀର୍ଘ କିଛି କାଳଧରି ସଂଘଠିତ ହୋଇ ଆସୁଥିବା କନ୍ୟା ଭ୍ରୂଣ ହତ୍ୟା ବିରୁଦ୍ଧରେ ଦୃଢ଼ ସ୍ୱର ଉତ୍ତୋଳନ କରିବା ଏବଂ ସେଭଳି ପରମ୍ପରାର ପ୍ରତିହତ କରାଯିବା ପାଇଁ ଫଳପ୍ରଦ ଜନମତ ଜାଗ୍ରତ କରାଇବା । ଏକ ମୁକ୍ତ ବାତାବରଣ ଭିତରେ ଉକ୍ତ ଆଲୋଚନାରେ ଅଂଶ ଗ୍ରହଣ କରି ଦେଶର ବିଭିନ୍ନ ଧାର୍ମିକ ସଂପ୍ରଦାୟର ପ୍ରବକ୍ତାଗଣ ସେଭଳି ଅତ୍ୟନ୍ତ ଘୃଣ୍ୟ କାର୍ଯ୍ୟକୁ କୌଣସି ଧର୍ମ ସ୍ୱୀକୃତି ଦିଏ ନାହିଁ ବୋଲି ବିଭିନ୍ନ ଯୁକ୍ତି ଉପସ୍ଥାପିତ କରିବା ସଂଗେସଂଗେ ସେହି ଜଘନ୍ୟ କାର୍ଯ୍ୟର ପ୍ରତିହତ କରାଯିବା ବରଂ ଧର୍ମ ସମ୍ମତ ବୋଲି ମଧ ମତ ପ୍ରକାଶ କରିଥିଲେ ।

ରାଜନୈତିକ ନେତାମାନଙ୍କର କାର୍ଯ୍ୟ ଦେଶର ପରିଚାଳନା ପାଇଁ ଜନମାନସରେ ରାଜନୀତିକ ଚେତନାର ଉଦ୍ରେକ କରାଇବା ସଂଗେସଂଗେ ନିଜ ଦଳପାଇଁ ସମର୍ଥନ ସଂଗ୍ରହ କରିବା । ଅନ୍ୟ ଭାଷାରେ କହିଲେ - ସରକାର ଗଢ଼ିବା ଦେଶର ପରିଚାଳନା ତଥା ପ୍ରଗତି ପାଇଁ ଆଇନ ପ୍ରଣୟନ କରିବା ଏବଂ ସେ ସବୁକୁ କାର୍ଯ୍ୟକାରୀ କରାଇବା ପାଇଁ ଉଦ୍ୟମ କରିବା । ସେହିଭଳି ଧାର୍ମିକ ନେତାଗଣଙ୍କ ମୁଖ୍ୟ କାର୍ଯ୍ୟ ଜନସମାଜରେ ପ୍ରଚଳିତ ବିଭିନ୍ନ ଧର୍ମ ପରମ୍ପରାକୁ ବଜାୟ ରଖିବା, ଜନଗଣଙ୍କ ମନରେ ଧାର୍ମିକ ଚେତନା ଜାଗ୍ରତ କରାଇବା ଏବଂ ନୀତିଗତ ଜୀବନଯାପନ ପାଇଁ ପ୍ରେରଣା ପ୍ରଦାନ କରିବା । ବର୍ତ୍ତମାନ ଦେଶରେ ପରମ୍ପରାକ୍ରମେ ଚଳି ଆସିଥିବା ଏକ ଅନୈତିକ କ୍ରିୟାର ପ୍ରତିହତ ପାଇଁ ଧାର୍ମିକ ନେତାଗଣ ରାଜନୈତିକ ନେତୃବୃନ୍ଦଙ୍କ ସହ ଗୋଟିଏ ମଣ୍ଡପରୁ ସତର୍କତାମୂଳକ ସ୍ୱର ଉତ୍ତୋଳନ କରିବା ଏକ ଉଲ୍ଲେଖଯୋଗ୍ୟ ଘଟଣା ନିଶ୍ଚୟ ଏବଂ ସେଇଥିରୁ ହିଁ ଏପର୍ଯ୍ୟନ୍ତ ଗୁରୁତ୍ୱହୀନ ମନେ ହେଉଥିବା ଘଟଣାର ଯଥାର୍ଥ ଗୁରୁତ୍ୱ ଉପଲବ୍ଧି କରାଯାଇପାରେ ।

ବର୍ତ୍ତମାନ ଆମ ଦେଶର ସାମୂହିକ ପ୍ରଗତି କ୍ଷେତ୍ରରେ ଯେଉଁ କେତେକ ସମସ୍ୟା ଭୀମକାୟ ରୂପ ଗ୍ରହଣ କରିଛି ତନ୍ମଧ୍ୟରୁ ଏକ ପ୍ରଧାନ ସାମାଜିକ ସମସ୍ୟା ହେଉଛି କ୍ରମାଗତ ଭାବେ ମହିଳା ଆନୁପାତିକ ହାରରେ ଅବନତି । ୨୦୦୧ ମସିହା ଜନଗଣନାରୁ ସ୍ପଷ୍ଟ ହୋଇଛି ଯେ ଆମ ଦେଶରେ ହାରାହାରି ୧୦୦୦ ପୁରୁଷଙ୍କ ପରିବର୍ତ୍ତେ ୯୩୩ ମହିଳା ଦେଖିବାକୁ ମିଳନ୍ତି । ଏହି ସାମାଜିକ ଅସନ୍ତୁଳନ ଅର୍ଥାତ୍ ସମାଜରେ ନାରୀ ସଂଖ୍ୟାର ସ୍ୱଳ୍ପତା ଭବିଷ୍ୟତର ସୁସ୍ଥ ସମାଜ ଗଠନ ଦିଗରେଏକ ମୁଖ୍ୟ ପ୍ରତିବନ୍ଧକ ଏବଂ ଆଗାମୀ ଭବିଷ୍ୟତ ପାଇଁ ଏକ ସ୍ପଷ୍ଟ ବିପଦ କାଳୀନ ଘଣ୍ଟି ।

ଆମ ଦେଶର କେବଳ ପୁରାଣ କାହିଁକି, ଭାରତର ଇତିହାସ ମଧ ଅନେକ ଅନେକ ମହନୀୟା ନାରୀଙ୍କ ଶୌର୍ଯ୍ୟ, ବୀର୍ଯ୍ୟ, ବିଜ୍ଞତା, ଦେଶପ୍ରେମ ତଥା ଅନ୍ୟାନ୍ୟ ଗୁଣାବଳୀରେ ସମୃଦ୍ଧ । ଅତୀତ ପର୍ଯ୍ୟାଲୋଚନାରୁ ଜଣାଯାଏ, ଜାତୀୟ ତଥା ଆଞ୍ଚଳିକ ସ୍ତରରେ ସୁଦ୍ଧା ଅସଂଖ୍ୟ ନାରୀ ପ୍ରତିଭା ଆମ ଜାତୀୟ ଜୀବନରେ ସେମାନଙ୍କ ଅଲିଭା ସ୍ୱାକ୍ଷର ରଖି ଯାଇଛନ୍ତି । କେବଳ ସାମାଜିକ ବା ସାଂସ୍କୃତିକ କ୍ଷେତ୍ର କାହିଁକି, ଭାରତୀୟ ସ୍ୱାଧୀନତା ସଂଗ୍ରାମଠାରୁ ଆରମ୍ଭ କରି ଦେଶର ଶାସନ ତଥା ଆର୍ଥିକ ବିକାଶ କ୍ଷେତ୍ରରେ ମଧ ସେମାନଙ୍କ ପଦଚିହ୍ନ ସ୍ପଷ୍ଟ ବାରି ହୋଇଯାଏ । କିନ୍ତୁ ତଥାପି ସେମାନେ ଯେମିତି ମୁଷ୍ଟିମେୟ । ସେମାନଙ୍କ ଉତ୍ତର ଦାୟାଦମାନେ ଆଜି କେବଳ ସେଇ ମହନୀୟାମାନଙ୍କ ଗୁଣାବଳୀ ସ୍ମରଣ କରିବା ବ୍ୟତୀତ ସେମାନଙ୍କ ଆଦର୍ଶର ପ୍ରତିଫଳନ କରାଇବା ପାଇଁ ସତେ ଯେମିତି ପରାଂମୁଖ ।

ସମ୍ଭବତଃ ତାହା ହିଁ ଏକ ମୁଖ୍ୟକାରଣ ଯେଉଁଥି ପାଇଁ ଆମ ସମାଜ ପୁରୁଷ ପ୍ରଧାନ ହେବା ସୁଯୋଗ ପାଇଛି ଏବଂ ସେଇଥି ପାଇଁ ସମ୍ବିଧାନରେ ଭାରତୀୟ ମହିଳାମାନଙ୍କୁ ପୁରୁଷମାନଙ୍କ ଭଳି ସମାନ ଅଧିକାରର ମର୍ଯ୍ୟାଦା ଦିଆଯାଇଥିଲେ ସୁଦ୍ଧା ସ୍ୱାଧୀନତା ପ୍ରାପ୍ତିର ଦୀର୍ଘକାଳ ଅତିକ୍ରାନ୍ତ ହେବାପରେ ଆଜି ମହିଳା ସଶକ୍ତିକରଣ ବର୍ଷ ପାଳନର ଆବଶ୍ୟକତା ଅନୁଭୂତ ହେଉଛି ।

ନାରୀ ହିଁ ଆଜି ନାରୀ ଜାତିର ଶତ୍ରୁ ହୋଇ ଛିଡ଼ା ହେବାର ଅନେକ ଦୃଷ୍ଟାନ୍ତ ମିଳୁଛି । ନାରୀତ ସୃଷ୍ଟିର ଉତ୍ସ । ନାରୀ ହିଁ ତ

ପୁରୁଷମାନଙ୍କ ଜନ୍ମଦାତ୍ରୀ । ତା'ହେଲେ ଆମ ସମାଜରେ ତୁଳନାତ୍ମକ ଭାବେ ନାରୀ ସଂଖ୍ୟା ବୃଦ୍ଧିରେ ହ୍ରାସ ପରିଲକ୍ଷିତ ହେଉଛି କାହିଁକି ? କାହିଁକି କ୍ରମାଗତ ଭାବେ ପୁରୁଷ-ମହିଳା ଆନୁପାତିକ ହାର କମିକମି ଯିବାରେ ଲାଗିଛି ?

ଆମ ସାମାଜିକ ଜୀବନର ସେଭଳି ଅସନ୍ତୁଳିତ ଅବସ୍ଥା ସୃଷ୍ଟି ହେବା ମୂଳରେ ଯେ ପୁରୁଷମାନଙ୍କର ଭୂମିକା ନାହିଁ ତାହା କହିବା ଅସମୀଚୀନ ନିଶ୍ଚୟ । ଅନେକ କ୍ଷେତ୍ରରେ ଦେଖାଯାଇଛି କନ୍ୟାଟିଏ ଭୂମିଷ୍ଠ ହେବାପରେ ପରେ ତାହାକୁ ପୃଥିବୀରୁ ସ୍ଥିତିହୀନ କରିବା କାମନା ହେଉଛି ଉଗ୍ରରୂପ । ଏପରିକି, ମାଆ ଗର୍ଭରେ ତାହାର ଜୀବନ ସଂଚାର ହେବା ପରମୁହୂର୍ତ୍ତରୁ ସେଭଳି ନିଷ୍ପତ୍ତି ନିଆଯିବା ଆମ ସମାଜର ପାରିବାରିକ ଜୀବନରେ ଏକ ମୁଖ୍ୟ ଅଙ୍ଗରେ ପରିଣତ ହୋଇଯାଇଛି । ଅବଶ୍ୟ କେତେକ କ୍ଷେତ୍ରରେ ସେଭଳି ନିଷ୍ପତ୍ତି ପାଇଁ ପୁରୁଷ ମୁଖ୍ୟ ଅଂଶୀଦାର । କିନ୍ତୁ ତଥାପି ଯୌଥ ନିଷ୍ପତ୍ତିରେ ମୁଖ୍ୟତଃ ସେସବୁ ଘଟଣା ସଂଘଠିତ ହୋଇଥାଏ । ଜନନୀ କାହିଁକି ଦୃଢ଼ ପ୍ରତିବାଦ କରୁନି ସେଇଥିପାଇଁ ? କି କହିପାରିବ, ସେଇ ଉଲୁଣ୍ଠିତ କଳିକାଟି କୌଣସିନା କୌଣସି କ୍ଷେତ୍ରରେ ସାମାଜିକ ପ୍ରତିଷ୍ଠା ଲାଭ କରିବା ପାଇଁ ଅସମର୍ଥ ଥିଲା ବୋଲି । ଯେକୌଣସି କାରଣରୁ ହେଉ, ସେହିଭଳି ବୃନ୍ତଚ୍ୟୁତ ଫୁଲଗୁଡ଼ିକର ଅଭାବରେ ବର୍ତ୍ତମାନର ସୃଷ୍ଟି ହୋଇଛି ଏକ ଗୁରୁତର ସାମାଜିକ ଅସନ୍ତୁଳିତ ଅବସ୍ଥା । ଏକ ସାମାଜିକ ଆଲୋଡ଼ନ ।

ବିଗତ ଦୀର୍ଘ ଏକ ଶତାବ୍ଦୀରୁ ଅଧିକ କାଳ ଧରି ଭାରତୀୟ ଜନଜୀବନରେ ମହିଳାମାନଙ୍କ ବୃଦ୍ଧିହାରରେ ଅବନତି ହିଁ ଦେଖାଦେଇଛି କ୍ରମାଗତ ଭାବେ । ୧୯୦୧ ମସିହାରେ ଆମ ଜାତୀୟ ଜୀବନରେ ପ୍ରତି ଏକ ହଜାର ପୁରୁଷଙ୍କ ପାଇଁ ୯୭୨ ମହିଳା ଉପଲବ୍ଧ ହେଉଥିବାବେଳେ ଏହି ଲିଙ୍ଗ ଅନୁପାତ ୨୦୦୧ ମସିହାରେ ହୋଇଛି ୯୩୩ । ଏଭଳି ବ୍ୟତିକ୍ରମର କାରଣ ସବୁ କ'ଣ ହୋଇପାରେ ?

ପ୍ରଥମ ଓ ପ୍ରଧାନ କାରଣ ହେଉଛି - ଆମ ସମାଜରେ ସାଧାରଣତଃ କନ୍ୟା ସନ୍ତାନ ପ୍ରତି ପ୍ରବଳ ଅନାସ୍ଥାଭାବ । ପୁରୁଷ ପ୍ରଧାନ ଆମ ଦେଶରେ ପୁଅଟିଏ ପାଇବା ପାଇଁ ପରିବାରଗୁଡ଼ିକ ଯେମିତି ପାଗଳ । ଧର୍ମାନ୍ଧ ସମାଜ ନାରୀକୁ ଉପଯୁକ୍ତ ସମ୍ମାନ ଦେବା ପାଇଁ କୁଣ୍ଠିତ । ରକ୍ଷଣଶୀଳ ହିନ୍ଦୁ ପରିବାର ଚାହେଁ ସେମାନଙ୍କ ଉତ୍ତରାଧିକାରୀ ପୁଅଟିଏ ହେଲେ ସେ ପିତୃ ପୁରୁଷଙ୍କୁ ପିଣ୍ଡ ଦେବ - ଶ୍ରାଦ୍ଧ ଦେବ - ତିଳତର୍ପଣ କରିବ - ଯାହା ସେମାନେ ପିତୃ ଲୋକରେ ଥାଇ ସୁଖ ପ୍ରାପ୍ତ ହେବେ । କିନ୍ତୁ ସେଭଳି ଶ୍ରାଦ୍ଧ - ପିଣ୍ଡଦାନ କରିବାର ପରମ୍ପରା କନ୍ୟା ସନ୍ତାନର ନାହିଁ । ସେଥିପାଇଁ ଅନେକ ପରିବାରରେ ତୁଳନାତ୍ମକ ଭାବେ କନ୍ୟା ସନ୍ତାନର ଆଦର କମ୍ ହୋଇଥାଏ । କେବଳ ସେତିକି ନୁହେଁ, ଓଡ଼ିଆରେ ଗୋଟିଏ ପ୍ରବାଦ ପ୍ରଚଳିତ - 'ଝିଅ ଜନମ ପରଘରକୁ ।' କେବଳ ଓଡ଼ିଶା କାହିଁକି, ଭାରତର ଅନ୍ୟାନ୍ୟ ଅନେକ ପ୍ରାନ୍ତରେ ସେଇ ସଂସ୍କୃତିର ଧାରା ପ୍ରବାହିତ । ଝିଅଟିଏ ଜନ୍ମ ହୁଏ ପର ଘର ପାଇଁ । ତେଣୁ ତା' ପାଇଁ ବିବାହ ନିଶ୍ଚିତ । ତାହାର ବୟସ ପ୍ରାପ୍ତି ସଂଗେସଂଗେ ତାକୁ ଘରୁ ବିଦାୟ ଦେବା ପାଇଁ ପରିବାର ବ୍ୟାକୁଳ ହେବା ସ୍ୱାଭାବିକ । ତେବେ ଏଭଳି ସାମାଜିକ ବ୍ୟବସ୍ଥା ସହିତ ସଂଯୁକ୍ତ ଆଉ ଗୋଟିଏ ବିଶିଷ୍ଟ ଦିଗ - ଅର୍ଥ ବ୍ୟବସ୍ଥା । ଜାନିଯୌତୁକରେ ସମ୍ଭାର । ସେଥିପାଇଁ ଆବଶ୍ୟକ ପ୍ରଚୁର ଅର୍ଥର ଆୟୋଜନ ଏବଂ ତାହା ହିଁ ଅନ୍ୟତମ କାରଣ ଯେଉଁଥିପାଇଁ ବର୍ତ୍ତମାନ ସୁଦ୍ଧା ପରିବାରରେ କନ୍ୟା ସନ୍ତାନ ପାଇଁ ଅନାସ୍ଥାଭାବ ।

ପୁଣି, ଝିଅଟ ଯିବ ଅନ୍ୟ ଘରକୁ ବୋହୂ ହୋଇ । ମାତା ପିତାଙ୍କ ବୟସାଧିକ୍ୟ ବେଳେ ସେମାନଙ୍କ ଦେଖାଶୁଣା କରିବ କିଏ ! ପୁଅଟିଏ ଥିଲେ ସିନା ବୋହୂଟିଏ ଘରକୁ ଆସିବ । ବୁଢ଼ାବୁଢ଼ୀଙ୍କ ସେବା ଶୁଶ୍ରୂଷା କରିବ । ସେଥିପାଇଁ ଝିଅ ଅପେକ୍ଷା ପୁଅର ଗୁରୁତ୍ୱ ପାରମ୍ପରିକ ଭାବେ ଅଧିକାଂଶ ଭାରତୀୟ ପରିବାରରେ ପରିଦୃଷ୍ଟ । ଜନମାନସରେ ଏପ୍ରକାର ମତିଗତିର ପରିଣାମ ଭିନ୍ନ ଦିଗରେ ପ୍ରତିଫଳିତ ହେବା ସ୍ୱାଭାବିକ । ପରିବାରର କନ୍ୟା ସନ୍ତାନଗଣ ବିଶେଷକରି ଖାଦ୍ୟ ତଥା ସ୍ୱାସ୍ଥ୍ୟ କ୍ଷେତ୍ରରେ ଅବହେଳିତ । ପାରିବାରିକ ସ୍ୱଚ୍ଛଳତା ଅନୁଯାୟୀ ଉପଲବ୍ଧ ଗୁଣାତ୍ମକ ଖାଦ୍ୟ ସବୁ କିମ୍ବା ତା'ର ଅଧିକାଂଶ ଭାଗ ଯାଇଥାଏ ପୁତ୍ରମାନଙ୍କ ନିକଟକୁ । ବଳକା ଖାଦ୍ୟର ଭାଗୀଦାର କନ୍ୟାମାନେ । ଠିକ୍ ସେହିଭଳି ରୋଗ ବୈରାଗ୍ୟରେ ପୁଅମାନଙ୍କ ପାଇଁ ଯେଭଳି ଫଳପ୍ରଦ ଚିକିତ୍ସାଲାଗି ମାତାପିତା ତତ୍ପର ହୋଇ ଉଠନ୍ତି, କନ୍ୟାମାନଙ୍କ କ୍ଷେତ୍ରରେ ତା'ର କିୟଦଂଶ ହିଁ କାର୍ଯ୍ୟକାରୀ ହୋଇଥାଏ । ଏହା ହିଁ ଏକ ସର୍ଭେର ଫଳାଫଳ । ଏହାର ସ୍ୱାଭାବିକ ପରିଣତି ନୈରାଶ୍ୟଜନକ । ଉପଯୁକ୍ତ ଖାଦ୍ୟ ଓ ଚିକିତ୍ସାର ଅଭାବ ଯୋଗୁଁ କନ୍ୟାମାନଙ୍କର ଶିଶୁ ଓ କୈଶୋର ଅବସ୍ଥାରେ ହିଁ ଅଧିକ ହାରରେ ମୃତ୍ୟୁ ହୋଇଥାଏ । ଅଧ୍ୟୟନରୁ ଜଣାଯାଇଛି ଯେ ଛଅ ବର୍ଷ ବୟସ ପୂର୍ଣ୍ଣ ହେବା ଆଗରୁ କିଶୋରମାନଙ୍କ ତୁଳନାରେ ଅଧିକ କିଶୋରୀ ମୃତ୍ୟୁବରଣ କରିଥାନ୍ତି ଆମ ଦେଶରେ ଏବଂ ପରିଣାମତଃ ଅନେକ ଅଞ୍ଚଳରେ କନ୍ୟା ମୃତ୍ୟୁହାର ଅଧିକ ହେଉଥିବା କାରଣରୁ ତା'ର ସମ୍ଭାବ୍ୟ ପରିଣତି ହେଉଛି ସମାଜରେ ପୁରୁଷ ବହୁଳତା - ମହିଳା ଅନୁପାତରେ ହ୍ରାସ ।

ସେଭଳି ଅବହେଳାଜନିତ ମୃତ୍ୟୁ ସବୁ ସମାଜରେ ସାଧାରଣ ମୃତ୍ୟୁ ରୂପେ ପରିଚିତି ଲାଭ କରିଥାଏ । ସେସବୁ ତଥାକଥିତ ସାଧାରଣ ମୃତ୍ୟୁକୁ ବାଦ୍ ଦେଲେ, ଘୃଣାଜନିତ ଅସାଧାରଣ କନ୍ୟାଶିଶୁ ମୃତ୍ୟୁ ବିଷୟରେ ପ୍ରସଙ୍ଗତଃ ଏଠାରେ ଆଲୋଚନା କରାଯାଇପାରେ । ଏଠାରେ ସେହି ନାରୀ ଛିଡ଼ା ହୋଇଥାଏ ନବଜନ୍ମିତ କନ୍ୟା ସନ୍ତାନର ଗୋଷ୍ଠୀ ସ୍ୱୀକୃତ ମୃତ୍ୟୁଦୂତ ଭାବେ । ଏକ ନିର୍ଦ୍ଦିଷ୍ଟ ସଂପ୍ରଦାୟର ପରିବାରରେ ଅବାଞ୍ଛିତ ମନେ ହେଉଥିବା କନ୍ୟାଟିଏ ଜନ୍ମ ହେବା ପରେ ପରେ ସେଇ ସଂପ୍ରଦାୟର ଜଣେ ସ୍ୱୀକୃତ ବୟସ୍କ ମହିଳା ଆସନ୍ତି ହାତରେ ମେଞ୍ଚାଏ କପା ତୂଳା ନେଇ । ନବଜନ୍ମିତ କନ୍ୟା ସନ୍ତାନଟିକୁ କୋଳେଇ

ନିଅନ୍ତି ପୂତନାର ଦୀର୍ଘହସ୍ତ ପ୍ରସାରଣ କରି । ତା'ପରେ ଜବରଦସ୍ତ ଦୁଇ ନାକପୁଡ଼ା ଓ ପାଟି ଭିତରେ ଭରି ଦିଅନ୍ତି ମେଞ୍ଚାଏ ମେଞ୍ଚାଏ କପାତୂଳା । ନିଃଶ୍ୱାସ-ପ୍ରଶ୍ୱାସ ବିହୀନ କନ୍ୟା ସନ୍ତାନଟି ମାତ୍ର କେତୋଟି ମୁହୂର୍ତ୍ତ ଭିତରେ ନିସ୍ପନ୍ଦ ହୋଇଯାଏ । ପୃଥିବୀ ପାଇଁ ଅଲୋଡ଼ା ପାଲଟି ଯାଏ ସେଇ ମୁହୂର୍ତ୍ତରେ । ତା'ପରେ ନିଜର କର୍ତ୍ତବ୍ୟ ଶେଷ କରି ଚାଲି ଯାଇଥାଏ ଧାଇ ଜଣକ । ପରିବାର ବା ସାହିବସ୍ତିର କାହାରି ମନରେ କୌଣସି ଅସ୍ଥିରତା ନଥାଏ, ନଥାଏ ଦ୍ୱନ୍ଦ୍ୱ । ମଧ୍ୟଭାରତର କୌଣସି ଏକ ସଂପ୍ରଦାୟରେ ସେଭଳି ହେଉଥିବା କନ୍ୟା ମୃତ୍ୟୁ ସଂପର୍କରେ ତଥ୍ୟ ପ୍ରକାଶ ପାଇଥିଲା ଖବରକାଗଜମାନଙ୍କରେ । କନ୍ୟା ସନ୍ତାନମାନଙ୍କ ପ୍ରତି ଘୃଣା ଭାବରେ ଆଉ ଅଧିକ ନିଦର୍ଶନ କଣ ବା ଥାଇପାରେ ।

କିନ୍ତୁ ସେଭଳି ଚନ୍ତାଧାରାରେ ଘୋର ପରିବର୍ତ୍ତନ ଘଟୁଛି ଏବଂ ତାହା ନବକଳେବର ଗ୍ରହଣ କରୁଛି । କଥାରେ ଅଛି, 'ମୂଳୁ ମାଇଲେ ଯିବ ସରି' । କନ୍ୟାଟିଏ ଜନ୍ମ ହେଲେ ସିନା ଏତେ ଚିନ୍ତା । ବାସ୍ତବରେ ଭୂମିଷ୍ଠ ହେବା ପୂର୍ବରୁ ତାହାକୁ ନିଶ୍ଚିହ୍ନ କରି ଦେଲେ ସବୁ ସମସ୍ୟାର ସମାଧାନ । ତାହା ହିଁ ବର୍ତ୍ତମାନ ସାମାଜିକ ଜୀବନରେ ସର୍ବଶ୍ରେଷ୍ଠ କଳଙ୍କ । ଗର୍ଭସ୍ଥ ଶିଶୁର ଲିଙ୍ଗ ନିରୂପଣ ପାଇଁ ବୈଜ୍ଞାନିକ ଉଦ୍‌ଭାବନର ପ୍ରଭାବ ଏବଂ ପୁଣି ତାହାର ମୂଳୋତ୍ପାଟନ ପାଇଁ ସହଜ ଲଭ୍ୟ ଡାକ୍ତରୀ ସୁଯୋଗ - ଆମ ସମାଜର ଛତ୍ରେ ଛତ୍ରେ ସେଭଳି କଳଙ୍କର କାଳିମାକୁ ଲୋକାଭିମୁଖୀ କରାଇବାରେ ସହାୟତା ଯୋଗାଇ ଦେଇଛି ନିଃସନ୍ଦେହ ଭାବେ । ଆଧୁନିକ ଯୁଗରେ କି ଶିକ୍ଷିତ କି ଅଶିକ୍ଷିତ, ରକ୍ଷଣଶୀଳ ମନୋଭାବାପନ୍ନ ବ୍ୟକ୍ତି ବା ଆଧୁନିକ - ସମସ୍ତେ ସେଇ ଜାଲରେ ଛନ୍ଦି ହୋଇଯାଉଛନ୍ତି ।

ବିଗତ ଦୁଇ ତିନି ଦଶନ୍ଧି ମଧ୍ୟରେ ସେଇ ଅପ ସଂସ୍କୃତିର ବିଶେଷ ବିକାଶ ଘଟିଛି । ପୁତ୍ରାଭିଳାଷୀ ମାତାପିତାମାନେ ଗର୍ଭ ସଂଚାର ହେବା ମାତ୍ରେ ଚାହୁଁଛନ୍ତି ଗର୍ଭସ୍ଥ ଭ୍ରୂଣର ଲିଙ୍ଗ ନିରୂପଣ ପାଇଁ । ସେଭଳି ଚାହିଦା ମେଣ୍ଟାଇବା ନିମନ୍ତେ ୧୯୮୦ ମସିହା ପରକାଳରୁ ଦେଶର ଛତ୍ରେ ଛତ୍ରେ ଅଲଟ୍ରାସାଉଣ୍ଡ ମେସିନ୍ ପ୍ରତିଷ୍ଠିତ ହୋଇଛି । ବାସ୍ତବରେ ତାହା ପ୍ରମାଣିତ ହୋଇଛି ଏକ ବେଶ୍ ଲାଭଜନକ ବ୍ୟବସାୟ ରୂପେ । ସେଭଳି ତୀବ୍ର ପ୍ରତିଯୋଗିତା କାରଣରୁ କମ୍ ଖର୍ଚ୍ଚରେ ସାଧାରଣ ଜନତା ଭବିଷ୍ୟତ ସନ୍ତାନର ଲିଙ୍ଗ ନିରୂପଣ କରି ପାରୁଛନ୍ତି । କ୍ରମଶଃ ଅଧିକରୁ ଅଧିକ ଦମ୍ପତି ଆକର୍ଷିତ ହେଉଛନ୍ତି ସେଇଥିପାଇଁ । କିନ୍ତୁ ଦୁର୍ଦ୍ଦଶା ହେଉଛି କନ୍ୟା ଭ୍ରୂଣର । ବ୍ୟବସାୟିକ ସୂତ୍ରରେ ଚାଲୁଥିବା ବ୍ୟକ୍ତିଗତ ନର୍ସିଂହୋମ୍‌ମାନଙ୍କରେ ଗର୍ଭପାତ କରାଯାଇ ଅଧିକାଂଶ କନ୍ୟା ସନ୍ତାନଙ୍କୁ ଗର୍ଭୋଦୟର କିଛିକାଳ ମଧ୍ୟରେ ହିଁ ବିଲୋପ କରି ଦିଆଯାଉଛି । ସେଭଳି କାର୍ଯ୍ୟକଳାପ ବିରୁଦ୍ଧରେ ଦେଶରେ ଆଇନ ପ୍ରଚଳିତ । କିନ୍ତୁ ତାହା ରହିଯାଉଛି କେବଳ ପୋଥିଗତ ବିଦ୍ୟା ହୋଇ । ଦେଶର ଛତ୍ରେ ଛତ୍ରେ ସେଭଳି ଘଟଣାର ଅଭାବ ନାହିଁ । ତଥାପି ଏକ ଗବେଷଣାମୂଳକ ସନ୍ଦର୍ଭ ଅନୁଯାୟୀ ଦେଶର କେନ୍ଦ୍ର ତଥା ପଶ୍ଚିମାଞ୍ଚଳର ବିଶେଷ ଜନବହୁଳ ରାଜ୍ୟ ତଥା କେନ୍ଦ୍ର ଶାସିତ ଅଞ୍ଚଳଗୁଡ଼ିକରେ ଏ ପ୍ରକ୍ରିୟା ଅତ୍ୟନ୍ତ ଉଗ୍ରରୂପ ଧାରଣ କରିଛି ।

ସମ୍ଭବତଃ ସେହି କାରଣରୁ ବର୍ତ୍ତମାନ ସୁଦ୍ଧା ସେସବୁ ଅଞ୍ଚଳଗୁଡ଼ିକରେ ପୁରୁଷ-ମହିଳା ଆନୁପାତିକ ହାର ଜାତୀୟ ସ୍ତର (୯୩୩)ଠାରୁ ଆଶାତୀତ ଭାବରେ କମ୍ । ସେଭଳି ଯେଉଁ ଅଞ୍ଚଳ ସବୁକୁ ପ୍ରମୁଖ ରୂପେ ବିବେଚନା କରାଯାଇପାରେ, ସେଗୁଡ଼ିକ ମଧ୍ୟରେ ଅନ୍ତର୍ଭୁକ୍ତ ପଂଜାବ (୮୭୪), ଚଣ୍ଡିଗଡ଼ (୭୭୩), ହରିଆନା (୮୬୧), ଦିଲ୍ଲୀ (୮୨୧), ରାଜସ୍ଥାନ (୯୨୨), ଉତ୍ତରପ୍ରଦେଶ (୮୯୮), ବିହାର (୯୨୧), ମଧ୍ୟପ୍ରଦେଶ (୯୨୦) , ଗୁଜରାଟ (୯୨୧) ଏବଂ ମହାରାଷ୍ଟ୍ର (୯୨୨) । ଏସବୁ ବିଶେଷ ଜନବହୁଳ ଅଞ୍ଚଳକୁ ବାଦ ଦେଇ ଅନ୍ୟାନ୍ୟ କେତେକ ଅଞ୍ଚଳରେ ମଧ୍ୟ ଜାତୀୟ ହାରଠାରୁ କମ୍ ମହିଳା ଆନୁପାତିକ ହାର ଥିବା ପରିସ୍ଥିତିର ସାମନା କରିବାକୁ ହୁଏ । ସେଗୁଡ଼ିକ ହେଲା ଜାମ୍ମୁ-କାଶ୍ମୀର (୯୦୦), ସିକିମ୍ (୮୭୫), ଅରୁଣାଞ୍ଚଳ ପ୍ରଦେଶ (୯୦୧), ନାଗାଲ୍ୟାଣ୍ଡ (୯୦୯), ଆସାମ (୯୩୨), ଡାମନ୍-ଡିଉ (୭୦୯), ଦାଦ୍ରାନଗର ହାବେଳୀ (୮୧୧) ଏବଂ ଆଣ୍ଡାମାନ୍ ଓ ନିକୋବର ଦ୍ୱୀପପୁଂଜ (୮୪୬) । ତେବେ ଏଗୁଡ଼ିକ କ୍ଷେତ୍ରରେ ଜନସଂଖ୍ୟାର ଆକାର ଦୃଷ୍ଟିରୁ ଜାମ୍ମୁ-କାଶ୍ମୀରକୁ ବାଦ୍ ଦେଇ ଅନ୍ୟ ଅଞ୍ଚଳଗୁଡ଼ିକ ପାଇଁ ଜାତୀୟ ସ୍ତରରେ ଆପେକ୍ଷିକ ଗୁରୁତ୍ୱ କମ୍ ମନେହୁଏ । କିନ୍ତୁ ପ୍ରଥମୋକ୍ତ ଅଞ୍ଚଳଗୁଡ଼ିକର ମହିଳା ଆନୁପାତିକ ହାର ସଂପୃକ୍ତ ଅଞ୍ଚଳଗୁଡ଼ିକରେ ସମସ୍ୟାର ବିଶାଳକାୟ ସୌଧ ନିର୍ମାଣ କରିବା ସଂଗେସଂଗେ ଜାତୀୟ ହାରକୁ ମଧ୍ୟ ବିଶେଷଭାବେ ପ୍ରଭାବିତ କରିଛି ଏବଂ ତାହା ବର୍ତ୍ତମାନ ସୃଷ୍ଟି କରିଛି ଦେଶର ସାମାଜିକ କ୍ଷେତ୍ରରେ ଗଭୀର ଆଲୋଡ଼ନ । ସେହି କାରଣରୁ ହିଁ ଧାର୍ମିକ ନେତାଗଣଙ୍କ ସମେତ ରାଜନୈତିକ ନେତାଗଣ ବର୍ତ୍ତମାନ ସ୍ୱରଉତ୍ତୋଳନ କରିଛନ୍ତି ଲିଙ୍ଗ ନିରୂପଣ ତଥା କନ୍ୟାଭ୍ରୂଣ ହତ୍ୟା ବିରୁଦ୍ଧରେ । ଏହା ଅନେକ ଜନସଂଖ୍ୟା ବିଶ୍ଳେଷଣକାରୀଙ୍କ ଦ୍ୱାରା ସ୍ୱୀକୃତ ଯେ ଦେଶରେ ସହଜ ଲଭ୍ୟ ଲିଙ୍ଗ ନିରୂପଣ ପ୍ରକ୍ରିୟା ଯୋଗୁଁ ହିଁ ମହିଳା ଆନୁପାତିକ ହାର ଗଭୀର ଭାବେ ପ୍ରଭାବିତ ହୋଇଛି । ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ, ବର୍ତ୍ତମାନ ଜାତୀୟ ହାରଠାରୁ କମ୍ ଥିବା ପଂଜାବ, ଚଣ୍ଡିଗଡ଼, ହରିଆନା, ଦିଲ୍ଲୀ, ଗୁଜରାଟ, ମହାରାଷ୍ଟ୍ର, ଦାଦ୍ରା-ନଗର ହାବେଳୀ, ଡାମନ୍-ଡିଉ ଓ ସିକିମ୍ ଭଳି ଅଞ୍ଚଳଗୁଡ଼ିକର ମହିଳା ଆନୁପାତ ହାର ବିଗତ ଦଶନ୍ଧି (୧୯୯୧)ର ହାରଠାରୁ ମଧ୍ୟ କମ୍ ପରିଲକ୍ଷିତ ହୋଇଛି । ଏହାକୁ ସେହି ଯୁକ୍ତିର ଉପଯୁକ୍ତ ପ୍ରମାଣ ରୂପେ ଉପସ୍ଥାପିତ କରାଯାଇପାରେ ।

ଦେଶରେ କନ୍ୟାଭ୍ରୂଣ ହତ୍ୟାର ଆଉ ଏକ ବଳିଷ୍ଠ ପ୍ରମାଣ ମିଳିଥାଏ ଛଅ ବର୍ଷ ବୟସ୍କ ଶିଶୁ/କିଶୋରମାନଙ୍କ ଲିଙ୍ଗ ଅନୁପାତ ଅନୁଶୀଳନରୁ । ବର୍ତ୍ତମାନ ଆମ ଦେଶରେ ସେହି ବୟସର ୧୦୦୦

ଶିଶୁ ପୁତ୍ରଙ୍କ ପରିବର୍ତ୍ତେ ଅଛନ୍ତି ମାତ୍ର ୯୨୭ ଜଣ କନ୍ୟା ସନ୍ତାନ । ଭାଗ୍ୟର ବିଡ଼ମ୍ବନା, ସେହି ସଂଖ୍ୟା ୧୯୯୧ରେ ୯୪୫ ଥିବାବେଳେ ୯୬୨ ଥିଲା ୧୯୮୧ ମସିହାରେ । ବିଗତ ଦୁଇ ଦଶନ୍ଧି ଧରି ଏହି ହାର ବିଶେଷ ଉଲ୍ଲେଖଯୋଗ୍ୟ ଭାବେ ନିମ୍ନଗାମୀ ହୋଇଛି । ସବୁସ୍ତରରେ ସ୍ୱୀକୃତିଲାଭ କରିଥିବା ଏହାର ମୁଖ୍ୟ କାରଣ - ପୃଥିବୀର ଆଲୋକ ଦେଖିବା ପୂର୍ବରୁ ଅଧିକ ମାତ୍ରାରେ କନ୍ୟାଭ୍ରୂଣକୁ ନିପାତ କରାଯିବା ।

ପ୍ରସଙ୍ଗକ୍ରମେ ଏଠାରେ ଉଲ୍ଲେଖ କରାଯାଇପାରେ ଯେ, କେବଳ ଭାରତରେ ନୁହେଁ, ସାରା ପୃଥିବୀରେ କନ୍ୟା ସନ୍ତାନ ତୁଳନାରେ ମାତୃଗର୍ଭରେ ସଂଚାରିତ ପୁତ୍ର ସନ୍ତାନର ସଂଖ୍ୟା ସାମାନ୍ୟ ଅଧିକ । ୧୦୦୦ କନ୍ୟାଭ୍ରୂଣ ସଂଚାର ତୁଳନାରେ ୧୦୫୦ ପୁତ୍ର ସାଧାରଣତଃ ସୃଷ୍ଟ ହୁଅନ୍ତି ବୋଲି ମିଳିତ ଜାତିସଂଘର ଜନସଂଖ୍ୟା ବିଶାରଦ ପ୍ରତିନିଧି (Representative of United Nation's Population Fund) ଫ୍ରାନ୍‌ସିସ୍.ଏମ୍. ଫାରାଙ୍କ ମତ । ତାଙ୍କରି ମତରେ ପୁରୁଷମାନଙ୍କ ଅପେକ୍ଷା ମହିଳାମାନଙ୍କ ହାରାହାରି ବୟସ ଅଧିକ ହୋଇଥିବାରୁ ସେହି ଜନ୍ମଗତ ଅସନ୍ତୁଳନ ସମୟକ୍ରମେ ସୁଧୁରି ଯାଇଥାଏ । କିନ୍ତୁ ଆମ ଦେଶରେ ଏଭଳି ନୈରାଶ୍ୟଜନକ ଅବସ୍ଥାରେ ଥିବା ଏବଂ କ୍ରମାଗତ ଭାବେ ଅନ୍ତତଃ ଦୁଇ ଶତାବ୍ଦୀ ଧରି ତୀବ୍ର ନିମ୍ନଗାମୀ ହୋଇଥିବା ଶିଶୁ ଲିଙ୍ଗ ଆନୁପାତିକ ହାରର ଏକ ବିଶେଷ କାରଣ ହେଉଛି - କନ୍ୟାଭ୍ରୂଣର ନିପାତନ । ବିଶିଷ୍ଟ ଜନସଂଖ୍ୟା ତଥ୍ୟ ବିଶ୍ଳେଷଣକାରୀ ଡ: ଆଶିଷ୍ ବୋଷଙ୍କ ମତରେ ଦେଶରେ ପ୍ରଚଳିତ ସାମାଜିକ ପରମ୍ପରା ସହିତ ଔଦ୍ୟୋଗିକ ବିକାଶର ଅନୈତିକ ସଂପର୍କ ଯୁକ୍ତ ହୋଇଯାଇଛି । ପରମ୍ପରା ଅନୁଯାୟୀ ସାମାଜିକ ଜୀବନରେ ପୁତ୍ର ସନ୍ତାନପ୍ରତି ଅହେତୁକ ଆଗ୍ରହ ଥିବାବେଳେ ଔଦ୍ୟୋଗିକ ବିକାଶର ସମ୍ଭବ ହୋଇଥିବା ଯୋଗୁଁ ମାଆ ପେଟରେ ସଂଚାରିତ ଭ୍ରୂଣର ଲିଙ୍ଗ ଚିହ୍ନଟ କରାଯାଇ କେବଳ ପୁତ୍ର ସନ୍ତାନଗଣଙ୍କୁ ସୂର୍ଯ୍ୟାଲୋକ ଦେଖିବାର ପଥ ପରିଷ୍କାର କରାଇ ଦିଆଯାଉଛି । କନ୍ୟାମାନଙ୍କୁ ନୁହେଁ । ତାଙ୍କରି ମତାନୁଯାୟୀ ପ୍ରାୟ ୧୯୮୦ ମସିହା ପରକାଳରେ ସାଧାରଣ ଜନଜୀବନରେ ପ୍ରବେଶ କରିଥିବା ଅଲଟ୍ରାସାଉଣ୍ଡ ଯୋଗୁଁ କନ୍ୟା ଶିଶୁ ହାରର ପତନ ତୀବ୍ରତର ହୋଇଛି । ଅତଏବ ମୋଟାମୋଟି ଭାବରେ ଦେଖିଲେ ଜାତୀୟ ସ୍ତରରେ ମହିଳା ଆନୁପାତିକ ହାରର ହ୍ରାସ ପ୍ରକ୍ରିୟା ପାଇଁ ମୁଖ୍ୟତଃ ଶିଶୁ କନ୍ୟା ଭ୍ରୂଣ ହତ୍ୟାକୁ ହିଁ ଅଗ୍ରାଧିକାର ଦିଆଯାଇପାରେ । ତଥାପି ସେହି ହାରକୁ କିଛି ପରିମାଣରେ ହେଲେ ବି ପ୍ରଭାବିତ କରିପାରିବା ଭଳି ଅନ୍ୟ କେତେକ କାରଣ ମଧ୍ୟ ରହିଛି ।

ସେ ଯାହାହେଉ ନା କାହିଁକି, କନ୍ୟା ସନ୍ତାନ ପ୍ରତି ଘୃଣା ଏବଂ ପୁତ୍ର ସନ୍ତାନ ପ୍ରତି ଆଗ୍ରହ - ଏହି ଉଭୟ ଭାବି ଭାରତର ବିଶେଷ ଜନବହୁଳ ଅଞ୍ଚଳଗୁଡ଼ିକରେ ଉଗ୍ରରୂପ ଧାରଣ କରିବା ଜାତୀୟ ଜୀବନ ପ୍ରତି ଆଦୌ ଶୁଭଙ୍କରି ନୁହେଁ । କାରଣ ତାହା ଦେଶର ଜନସଂଖ୍ୟାରେ ମହିଳାଙ୍କ ଆନୁପାତିକ ହାର ହ୍ରାସ କରିବା ଦିଗରେ ଯଥେଷ୍ଟ ସହାୟତା କରିଥାଏ । ଏକ ଗବେଷଣାରୁ ଜଣାଯାଇଛି ଯେ ଉତ୍ତରପ୍ରଦେଶ ଭଳି ଜନାକୀର୍ଣ୍ଣ ରାଜ୍ୟର ମାତା-ପିତାଗଣ ପୁତ୍ର ସନ୍ତାନ ପାଇଁ ଏତେ ବ୍ୟାକୁଳ ଯେ ସେମାନଙ୍କ ଆକାଂକ୍ଷା ମୁତାବକ ପୁତ୍ର ସନ୍ତାନ ନ ହେବା ପର୍ଯ୍ୟନ୍ତ ସେମାନେ କୌଣସି ପ୍ରକାର ପରିବାର ନିୟୋଜନ ପ୍ରଣାଳୀ ବ୍ୟବହାର କରିବା ଲାଗି ଆଗ୍ରହୀ ନୁହନ୍ତି । ସେହି କାରଣରୁ ସେଠାରେ ଶିଶୁ ଜନ୍ମହାର ଅଧିକ । ପୁଣି ଅଧିକ ତର୍ଜମାରୁ ଜଣାଯାଇଛି ଯେ ଅଶିକ୍ଷିତ ତଥା ମାଟ୍ରିକ୍ ପର୍ଯ୍ୟନ୍ତ ଅଧ୍ୟୟନ କରିଥିବା ବିବାହିତ ମହିଳାଗଣ ଏକାଧିକ ପୁତ୍ର ସନ୍ତାନର ଜନନୀ ହେବା ପାଇଁ ଅଧିକ ଆଗ୍ରହୀ । ଧାର୍ମିକ ମତଭେଦରେ ହିନ୍ଦୁମାନେ ଅନ୍ୟାନ୍ୟ ଧର୍ମାବଲମ୍ବୀଙ୍କଠାରୁ ସେହି କ୍ଷେତ୍ରରେ ଶୀର୍ଷ ସ୍ଥାନରେ ସ୍ଥାନୀତ । ପରିବାର ପାଇଁ ଉପାର୍ଜନକ୍ଷମ ହୋଇପାରିବା ଏବଂ ସମସ୍ତଙ୍କ ପାଇଁ ଭରଣପୋଷଣରେ ସହାୟକ ମନେ ହେଉଥିବା ପୁତ୍ର ସନ୍ତାନ ପ୍ରତି ଆଗ୍ରହ ହିଁ ବିଗତ ଶତାବ୍ଦୀଧରି ସେଠିକାର ସାମାଜିକ ଜୀବନରେ ମହିଳା ଅନୁପାତରେ ହ୍ରାସ ଆଣିଛି ବୋଲି ସେଥିରେ ଯୁକ୍ତି ଦର୍ଶାଯାଇଛି ।

ଉତ୍ତରପ୍ରଦେଶର ଉପରୋକ୍ତ ସ୍ଥିତି ଦେଶର ଅନ୍ୟାନ୍ୟ କେତେକ ଅଞ୍ଚଳ ପାଇଁ ମଧ୍ୟ ସମାନ ଭାବରେ ପ୍ରଯୁଜ୍ୟ । ତେବେ ବର୍ତ୍ତମାନ ପରିବାର ନିୟୋଜନ ବ୍ୟବସ୍ଥା ଆଦୃତ ହେବାପରେ ଆମ ଦେଶରେ ଧର୍ମ, ଆର୍ଥିକ ଅବସ୍ଥା ଓ ସାମାଜିକ ସ୍ଥିତି ନିର୍ବିଶେଷରେ ଅନେକ ପରିବାର ଚାହାନ୍ତି କମ୍ ସନ୍ତାନଯୁକ୍ତ ଛୋଟ ପରିବାରଟିଏ ଏବଂ ସେମାନଙ୍କ ମଧ୍ୟରୁ ଅଧିକାଂଶ ଚାହାନ୍ତି ସେମାନଙ୍କ ପରିବାରରେ କେବଳ ପୁତ୍ର ସନ୍ତାନଗଣ । ସେହି କାରଣରୁ ହିଁ ସମୟାନୁକ୍ରମେ ଅଧିକରୁ ଅଧିକ ମହିଳା ଅନୁପାତରେ ହ୍ରାସ । କିଛି ଆଲୋଚକଙ୍କ ମତରେ ଏହା ହେଉଛି ପରିବାର ନିୟୋଜନର ଏକ ଅନ୍ଧକାରାଚ୍ଛନ୍ନ ଦିଗ ।

ମୋଟାମୋଟି ଭାବେ ପୁରୁଷମାନଙ୍କ ତୁଳନାରେ ମହିଳା ମୃତ୍ୟୁହାରର ଆଧିକ୍ୟ ମଧ୍ୟ ସୃଷ୍ଟି କରିପାରେ ପୁରୁଷ-ନାରୀ ଆନୁପାତିକ ହାରରେ ଅସନ୍ତୁଳନ । ନାରୀ ସମାଜର ଉନ୍ନତିରେ ଜାତିର ଉନ୍ନତି ବୋଲି ଦୁହା ଦିଆଯାଇଥିଲେ ମଧ୍ୟ ବାସ୍ତବ କ୍ଷେତ୍ରରେ ଆମ ଦେଶରେ ନାରୀ ଅବହେଳିତ । ପରିବାରରେ ସେ ଅନ୍ୟମାନଙ୍କ ଯତ୍ନ ନେଉଥିଲେ ସୁଦ୍ଧା ସାଧାରଣତଃ ତା'ର ସୁଖ ସମୃଦ୍ଧି ପାଇଁ କେହି ଯେମିତି ବ୍ୟସ୍ତ ନୁହନ୍ତି । ଅଧିକାଂଶ କ୍ଷେତ୍ରରେ ନାରୀ ଗର୍ଭବତୀ ଥିବାବେଳେ ସୁଷମ ଖାଦ୍ୟ ପାଇବା କଷ୍ଟ । ସାଧାରଣ ଜୀବନରେ ତାହା ଅନେକଙ୍କ ପାଇଁ ଦୁଃସ୍ୱପ୍ନ । ପରିବାରରେ ସମସ୍ତେ ଖାଇସାରିବାପରେ ଯାହା ବଳିଲା ସେଥିରେ ସନ୍ତୁଷ୍ଟ ହୋଇଥାନ୍ତି ଅନେକ 'ଗୃହଲକ୍ଷ୍ମୀ' । ସ୍ୱାସ୍ଥ୍ୟ ପ୍ରତି ଯତ୍ନର ଅବସ୍ଥା ବି ଖାଦ୍ୟାବସ୍ଥା ଭଳି । ପରିବାରରେ ନାରୀମାନଙ୍କ ସାଧାରଣ ରୋଗ ପାଇଁ ପୁରୁଷମାନେ ବିଶେଷ ତତ୍ପରତା ଦେଖାଇ ନଥାନ୍ତି । ଅନେକ ସମୟରେ ତାହାର କୁ-ପରିଣତି ହୁଏ ଅତି ଭୟଙ୍କର । ପୁଣି ସେମାନଙ୍କ ସ୍ୱାସ୍ଥ୍ୟ ଉପରେ ବିଶେଷ ପ୍ରଭାବ ପକାଇଥାଏ ବାରମ୍ବାର

ପ୍ରସବଜନିତ ଯନ୍ତ୍ରଣା । ଅଧିକ ସନ୍ତାନର ଜନନୀ ହେବାର ସୁଖ ଏବଂ ବାରମ୍ବାର ଗର୍ଭଧାରଣ ଅଜାଣତରେ ସେମାନଙ୍କ ଶରୀରରେ ବାର୍ଦ୍ଧକ୍ୟ ଭରି ଦେଇଥାଏ ଏବଂ ବିଭିନ୍ନ ଭାବରେ ଦୁର୍ବଳ କରି ଦେଇଥାଏ ଶରୀରର ଅଙ୍ଗପ୍ରତ୍ୟଙ୍ଗକୁ । ନାରୀ ଜୀବନର ପରିସୀମାକୁ କ୍ଷୁଦ୍ର କରାଇବାରେ ଅନେକଙ୍କ ପାଇଁ ସେସବୁ ଘଟଣା ଦୁର୍ଘଟଣାର ରୂପ ନେଇଥାଏ । ପୁଣି ଅନୁଶୀଳନରୁ ମଧ୍ୟ ଜଣାଯାଇଛି ଯେ କେତେଗୁଡ଼ିଏ ନିର୍ଦ୍ଦିଷ୍ଟ ରୋଗ ପୁରୁଷଙ୍କ ତୁଳନାରେ ନାରୀମାନଙ୍କୁ ଅଧିକ ମାତ୍ରାରେ ପ୍ରଭାବିତ କରିଥାଏ ଏବଂ ପରିଣାମତଃ ସେହି ରୋଗଜନିତ ମୃତ୍ୟୁହାର ଅଧିକ ପରିଲକ୍ଷିତ ହୋଇଥାଏ ମହିଳାମାନଙ୍କ କ୍ଷେତ୍ରରେ । କହିବା ବାହୁଲ୍ୟ ଯେ, ସେଭଳି ଅଧିକ ମହିଳା ମୃତ୍ୟୁହାର ପରିମାଣାତ୍ମକ ଦୃଷ୍ଟିରୁ ସ୍ୱଳ୍ପ ହେଲେ ସୁଦ୍ଧା ତାହା ପୁରୁଷ-ମହିଳା ଆନୁପାତିକ ହାରକୁ ପ୍ରଭାବିତ କରିଥାଏ ।

ଭାରତରେ ବିଗତ ଏକ ଶତାବ୍ଦୀ ଧରି ଅବଲୀଳାକ୍ରମେ କମି କମି ଆସିଥିବା ପୁରୁଷ-ମହିଳା ଆନୁପାତିକ ହାରର ଏକ କାରଣ ସ୍ୱରୂପ ଆଲୋଚକମାନେ ମତବ୍ୟକ୍ତ କରିଥାନ୍ତି ଯେ ଜନଗଣନା କାଳରେ ଗଣନାକାରୀଙ୍କ ଅବହେଳା ଯୋଗୁଁ ଅନେକ ମହିଳା ଗଣନାଭୁକ୍ତ ହୋଇପାରିନଥାନ୍ତି । କିନ୍ତୁ ଏଭଳି ଆଲୋଚନା ବିଶେଷ ଯୁକ୍ତିଯୁକ୍ତ ମନେହୁଏ ନାହିଁ । ଯଦିବା ଅଗଣତିଜନିତ ଭ୍ରାନ୍ତିକୁ ସଂପୂର୍ଣ୍ଣ ଅସ୍ୱୀକାର କରି ହେବ ନାହିଁ, ତଥାପି ଏଠାରେ ଉଲ୍ଲେଖ ପ୍ରୟୋଜନ ଯେ ମହିଳାମାନଙ୍କ ଭଳି କିଛି ପୁରୁଷ ମଧ୍ୟ ଗଣନାଭୁକ୍ତ ନହୋଇ ରହିଯାଇ ଥାଇପାରନ୍ତି । ତେଣୁ କେବଳ ମହିଳାମାନଙ୍କ ପାଇଁ ସେହି ଯୁକ୍ତି ଅସଂଗତ ମନେହୁଏ ।

ଦେଶର ନାରୀ ପୁରୁଷ ଆନୁପାତିକ ହାର ଏଭଳି ଏକ ବିଷୟ ଯାହାର ସ୍ଥିତି ଜନସାଧାରଣ ଜାଣିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କରନ୍ତି ନାହିଁ କିମ୍ବା ତାହାର ଗତି ଓ ପ୍ରକୃତି ବିଷୟକ ଅନୁଧ୍ୟାନ ପାଇଁ ମଧ୍ୟ ଆଗ୍ରହୀ ନୁହନ୍ତି । ସେମାନଙ୍କ ସଂଖ୍ୟାତ୍ମକ ଅସନ୍ତୁଳନ ସମୟକ୍ରମେ ଯେ ସମାଜରେ ଏକ ଗମ୍ଭୀର ପରିସ୍ଥିତି ସୃଷ୍ଟି କରିବ, ସେ ବିଷୟରେ ମଧ୍ୟ ସଚେତନ ନୁହନ୍ତି । ଏତଏବ, ଆମ ଜାତୀୟ ଜୀବନରେ ସେହି ହାର ଯେ ଅତ୍ୟନ୍ତ ପ୍ରତିକୂଳ ଅବସ୍ଥାରେ ଉପନୀତ ସେହି ବିଷୟରେ ଜନଗଣଙ୍କୁ ବିଶେଷ ଭାବେ ସଚେତନ କରାଇ ଦିଆଯିବା ଆବଶ୍ୟକ । ପୁଣି ସାମାଜିକ ଜୀବନରେ ମହିଳାଗଣଙ୍କ ହାରରେ ହ୍ରାସର ବିଷୟ ପରିସ୍ଥିତି ଯେ ଦିନେ ନା ଦିନେ ପୁରୁଷମାନଙ୍କୁ ହିଁ ଭୋଗ କରିବାକୁ ପଡ଼ିବ, ସେ ସଂପର୍କରେ ଜନଗଣଙ୍କୁ ଅବହିତ କରାଯିବା ଏକାନ୍ତ ଜରୁରୀ । କେବଳ ସେତିକି ନୁହେଁ, ତାହାର ସମ୍ଭାବ୍ୟ କାରଣ ସବୁ ସୂକ୍ଷ୍ମ ଭାବରେ ଅନୁଧ୍ୟାନ କରାଯାଇ ସେସବୁର ନିରାକରଣ ଦିଗରେ ଉଦ୍ୟମ ସରକାରୀ ସ୍ତରରେ ହେବା ସଂଗେସଂଗେ ଜନଗଣଙ୍କୁ ମଧ୍ୟ ସେ ସଂପର୍କରେ ଯଥେଷ୍ଟ ଧାରଣା ଦିଆଯିବା ଆବଶ୍ୟକ ।

ତିନି ଆର୍/୧୦, ଜନଗଣନା କଲୋନୀ
ବରମୁଣ୍ଡା, ଭୁବନେଶ୍ୱର-୩

# ଭେଷଜ ନିୟନ୍ତ୍ରଣ ପ୍ରଶାସନ ପକ୍ଷରୁ ୧୨ ଲକ୍ଷ ୪୫ ହଜାର ଟଙ୍କା ରାଜସ୍ୱ ଆଦାୟ

ରାଜ୍ୟ ଭେଷଜ ନିୟନ୍ତ୍ରଣ ପ୍ରଶାସନ ପକ୍ଷରୁ ଚଳିତ ଆର୍ଥିକ ବର୍ଷରେ ଜୁନ୍ ମାସ ଶେଷସୁଦ୍ଧା ୧୨ ଲକ୍ଷ ୪୫ ହଜାର ଟଙ୍କା ରାଜସ୍ୱ ଆଦାୟ କରାଯାଇଛି । ରାଜ୍ୟରେ ଜନସାଧାରଣଙ୍କୁ ଗୁଣାତ୍ମକ ମାନର ଔଷଧ ଉପଲବ୍ଧ ହେବା ଦିଗରେ ମଧ୍ୟ ଏହି ପ୍ରଶାସନ ତରଫରୁ ଆବଶ୍ୟକ କାର୍ଯ୍ୟାନୁଷ୍ଠାନ ଗ୍ରହଣ କରାଯିବା ସହିତ ଭେଜାଲ ଔଷଧ କାରବାର ପ୍ରତି ତୀକ୍ଷ୍ଣ ନଜର ରଖାଯାଇଥିବା ପ୍ରକାଶ । ଏହି ସମୟ ମଧ୍ୟରେ ୧୦୪୫ଟି ଔଷଧ ବିକ୍ରୟ ପ୍ରତିଷ୍ଠାନ, ୩୩ଟି ଡାକ୍ତରଖାନା ଷ୍ଟୋର ଏବଂ ୨୯ଟି ପ୍ରସ୍ତୁତକାରୀ ସଂସ୍ଥାର ତନଖି କରାଯାଇଥିବା ବେଳେ ୨୮ଟି ଔଷଧ ବିକ୍ରୟ ନିଷିଦ୍ଧ କରାଯାଇଛି ଏବଂ ୭ଟି ଅଭିଯୋଗର ତଦନ୍ତ କରାଯାଇଛି । ୪୪୨ଟି ନମୂନା ସଂଗ୍ରହ କରାଯାଇ ୩୧୫ଟି ନମୂନା ପରୀକ୍ଷା କରାଯାଇ ୧୯ଟି ନମୂନା ଉପଯୁକ୍ତ ମାନର ନୁହେଁ ବୋଲି ଜଣାପଡ଼ିଛି । ୫୧୨ଟି ଲାଇସେନ୍ସ ନିଲମ୍ବନ କରାଯାଇଥିବା ବେଳେ ୬ଟି ଲାଇସେନ୍ସ ବାତିଲ କରାଯାଇଛି ଏବଂ ୪୪ଟି ସ୍ଥାନରେ ଚଢ଼ାଉ କରାଯାଇଛି । ଭାରତର ଡ୍ରଗସ କଣ୍ଟ୍ରୋଲ ଜେନେରାଲଙ୍କ ଦ୍ୱାରା ନିଷିଦ୍ଧ ୨ଟି ଔଷଧ ମଧ୍ୟ ଧରା ପଡ଼ିଥିବା ଭେଷଜ ନିୟନ୍ତ୍ରକ ଶ୍ରୀ ବିପିନ୍ ଚନ୍ଦ୍ର ପଣ୍ଡାଙ୍କଠାରୁ ପ୍ରକାଶ ।

# ଦିଲ୍ଲୀରେ ଅଲିମ୍ପିକ ମଶାଲ

ଏସ୍.ଏମ୍. କୁମାର

ନିର୍ଦ୍ଧାରିତ ସମୟରେ ବହୁ ପ୍ରତିକ୍ଷିତ ଅଲିମ୍ପିକ ମଶାଲ ଦିଲ୍ଲୀରେ ଆସି ପହଞ୍ଚିଲା । ଏହାକୁ ସ୍ୱାଗତ କରିବା ନିମନ୍ତେ ସମାଜର ବିଭିନ୍ନ ବର୍ଗର ଜନସାଧାରଣ ସ୍ୱତଃସ୍ଫୁର୍ତ୍ତ ଭାବେ ଆଗେଇ ଆସିଥିଲେ । ସ୍ୱତନ୍ତ୍ର ବିମାନ 'ଜୀଉସ୍'ରୁ ଏହି ମଶାଲ ମଇ ମାସ ୧୦ ତାରିଖ ପୂର୍ବାହ୍ନ ୧୦.୩୦ରେ ଅବତରଣ କରିବା ପରେ ଏହାକୁ ଭବ୍ୟ ସ୍ୱାଗତ କରାଯାଇଥିଲା । ବେଜିଂରୁ ବାହାରି ପାଞ୍ଚଟି ମହାଦେଶର ବଛାବଛା ୩୩ଟି ସହର ଅତିକ୍ରମ କରିବାକୁ ଥିବା ଏହି ଅଲିମ୍ପିକ ମଶାଲ ଦିଲ୍ଲୀରେ ଆସି ପହଞ୍ଚିଥିଲା । ଦିଲ୍ଲୀରେ ଏହା ଷଷ୍ଠ ସ୍ଥାନ ଭାବରେ ଅଟକିଥିଲା । ଏଥିପାଇଁ ଦିଲ୍ଲୀର ଇନ୍ଦିରା ଗାନ୍ଧୀ ଆନ୍ତର୍ଜାତିକ ବିମାନବନ୍ଦରକୁ ସ୍ୱତନ୍ତ୍ର ଭାବରେ ସଜା ଯାଇଥିଲା । ସେଠାରେ ବହୁ କ୍ରୀଡ଼ା କର୍ମକର୍ତ୍ତା ଏବଂ କ୍ରୀଡ଼ାପ୍ରେମୀ ଜନସାଧାରଣ ମଶାଲକୁ ଉତ୍କଣ୍ଠାର ସହିତ ଅପେକ୍ଷା କରିଥିଲେ । ଏଥିସହିତ ଦେଶବ୍ୟାପୀ କୋଟିକୋଟି ଲୋକ ଏହି ମଶାଲ ଦିଲ୍ଲୀରେ ପହଞ୍ଚିବା ଘଟଣାର ସିଧା ପ୍ରସାରଣ ଦେଖିବାକୁ ଚାହିଁ ବସିଥିଲେ । ଏକ ସ୍ୱତନ୍ତ୍ର ଲଣ୍ଠନ ଦ୍ୱାରା ଆବୃତ୍ତ ହୋଇଥିବା ମଶାଲ ଭାରତକୁ ଏକ ସ୍ୱତନ୍ତ୍ର ବାର୍ତ୍ତା ବହନ କରି ଆଣିଥିଲା । ତାହା ହେଉଛି 'ମଶାଲକୁ ଗୋଟିଏ ସ୍ଥାନରୁ ଅନ୍ୟତ୍ର ସ୍ଥାନାନ୍ତର କରି ଏବଂ ବିଶ୍ୱକୁ ଏକତାସୂତ୍ରରେ ବାନ୍ଧି ରଖ ।' ମଶାଲରେ ଗ୍ରୀସ୍‌ର ଅଲିମ୍ପିଆଠାରେ ଚଳିତ ବର୍ଷ ମାର୍ଚ୍ଚ ୨୫ ତାରିଖରେ ଅଗ୍ନି ସଂଯୋଗ କରାଯାଇଥିଲା । ସୂଚନାଯୋଗ୍ୟ ଯେ ଚଳିତବର୍ଷ ଏଥେନ୍‌ସଠାରେ ଅଗଷ୍ଟ ୧୩ ତାରିଖଠାରୁ ୨୮ତମ ଅଲିମ୍ପିକ କ୍ରୀଡ଼ା ଅନୁଷ୍ଠିତ ହେବାକୁ ଯାଉଛି । ଖ୍ରୀ:ପୂ: ୭୭୬ରେ ପ୍ରଥମେ ଯେଉଁ ସ୍ଥାନରେ ଅଲିମ୍ପିକ କ୍ରୀଡ଼ାର ଶୁଭାରମ୍ଭ ହୋଇଥିଲା, ଉକ୍ତ ସ୍ଥାନରେ ସୌର ରଶ୍ମୀ ଦ୍ୱାରା ମଶାଲରେ ଅଗ୍ନି ସଂଯୋଗ କରାଯାଇଥିଲା । ଏହି ମଶାଲ ଦିଲ୍ଲୀର ପ୍ରାୟ ସମସ୍ତ ଐତିହ୍ୟପୂର୍ଣ୍ଣ ଏବଂ ଉଲ୍ଲେଖନୀୟ ସ୍ଥାନ ଦେଇ ଯାତ୍ରା କରିଥିଲା । ମଶାଲଯାତ୍ରା ବାଟରେ ହଜାର ହଜାର ଜନସାଧାରଣ ଉପସ୍ଥିତ ରହି ଏହାକୁ ସ୍ୱାଗତ ଜଣାଇଥିଲେ । ଭାରତୀୟ ଅଲିମ୍ପିକ ଆସୋସିଏସନ୍‌ର କେତେକ ବଛାବଛା କର୍ମକର୍ତ୍ତା ଏବଂ ବିଭିନ୍ନ କ୍ରୀଡ଼ାକ୍ଷେତ୍ରରେ କେତେକ ବ୍ୟକ୍ତି ବିଶେଷ ଏହାକୁ ବହନ କରି ନେଇଥିଲେ । ସେମାନଙ୍କ ସହିତ ଭାରତୀୟ ଚଳଚ୍ଚିତ୍ର ଜଗତର କେତେକ ତାରକା ମଧ୍ୟ ସାମିଲ ହୋଇଥିଲେ ।

ସେହିଦିନ କୁତବ ମିନାରଠାରେ ଅପରାହ୍ନ ୨ଟାରେ ଆନୁଷ୍ଠାନିକ ଉତ୍ସବ ଆୟୋଜିତ ହୋଇଥିଲା । ଏଥିରେ ଭାରତରେ ଅବସ୍ଥାପିତ ଗ୍ରୀକ୍ ରାଷ୍ଟ୍ରଦୂତ ଏଫ୍‌ଷ୍ଟାଥିସେ ଲାଜୋସ୍ ଅଲିମ୍ପିକ ମଶାଲ ପ୍ରଜ୍ୱଳନ କରି ଦିଲ୍ଲୀ ମୁଖ୍ୟମନ୍ତ୍ରୀଙ୍କୁ ତାହା ପ୍ରଦାନ କରିଥିଲେ । ଧାତୁ ଓ କାଠରେ ନିର୍ମିତ ତଥା ଅଲିଭ ପତ୍ର ଆକୃତିର ଏହି ମଶାଲକୁ ଦିଲ୍ଲୀ ମୁଖ୍ୟମନ୍ତ୍ରୀ ଶୀଲା ଦୀକ୍ଷିତ ପରେ ଭାରତୀୟ ଅଲିମ୍ପିକ ଆସୋସିଏସନ୍‌ର ସଭାପତି ସୁରେଶ କାଲମାଡ଼ିଙ୍କୁ ହସ୍ତାନ୍ତର କରିଥିଲେ । ଏହାପରେ ମଶାଲ ଐତିହାସିକ କୁତବ୍ ମିନାର୍‌ରୁ ଯାତ୍ରାରମ୍ଭ କରି ୩୩ କିଲୋମିଟର ପଥ ଅତିକ୍ରମ କରିବାପରେ ନ୍ୟାସନାଲ ଷ୍ଟାଡ଼ିୟମରେ ପହଞ୍ଚିଥିଲା । ଏଥିପାଇଁ ୬ ଘଣ୍ଟା ସମୟ ଲାଗିଥିଲା ।

ମଶାଲରେ କମଳା ରଙ୍ଗର ଉଜ୍ଜ୍ୱଳ ଶିଖା ବାହାରିବା ସକାଶେ ବ୍ୟୁଟେନ୍ ଏବଂ ପ୍ରପିଲିନ୍ ଗ୍ୟାସ୍‌ର ମିଶ୍ରଣକୁ ବ୍ୟବହାର କରାଯାଉଛି । ପ୍ରତ୍ୟେକ ମଶାଲ ୨୦ ମିନିଟ୍ ପର୍ଯ୍ୟନ୍ତ ପ୍ରଜ୍ୱଳିତ ହେଉଛି । ୧୦୫ ଜଣ ଧାବକ ଧରିଥିବା ମଶାଲକୁ କିଛିବାଟ ପରେ ଅନ୍ୟ ଜଣକୁ ହସ୍ତାନ୍ତର କରୁଥିବା ଲକ୍ଷ୍ୟ କରାଯାଇଥିଲା । ଅଲିମ୍ପିକ ମଶାଲ ଅଗ୍ନି ଆକାରରେ ସକରାତ୍ମକ ମୂଲ୍ୟବୋଧର ପ୍ରତିନିଧିତ୍ୱ କରୁଛି । ଆଗାମୀ ଦିନମାନଙ୍କରେ ଏହା ଅଲିମ୍ପିକ କ୍ରୀଡ଼ା ଅନୁଷ୍ଠିତ ହୋଇଯାଇଥିବା ସ୍ଥାନଗୁଡ଼ିକୁ ଗସ୍ତ କରିବାର କାର୍ଯ୍ୟକ୍ରମ ରହିଛି । ଏଥିସହିତ ବ୍ରସେଲ୍‌ସ, ଲୌସନେ ଭଳି ଅଲିମ୍ପିକ ସହିତ ସଂପୃକ୍ତ ସ୍ଥାନଗୁଡ଼ିକରେ ଏହା ଅଟକିବ । ୨୦୦୮ରେ ବେଜିଂରେ ଅଲିମ୍ପିକ କ୍ରୀଡ଼ା ଅନୁଷ୍ଠିତ ହେବାକୁ ଯାଉଥିବାବେଳେ ଏହି ମଶାଲ ଉକ୍ତ ସହରକୁ ମଧ୍ୟ ନିଆଯିବ । ଜୁଲାଇ ୯ରେ ଏହି ମଶାଲ ଗ୍ରୀସ୍‌କୁ ଫେରିବା ବେଳକୁ ତାହା ଆକାଶମାର୍ଗରେ ପ୍ରାୟ ୭୮ ହଜାର କିଲୋମିଟର ପଥ ଅତିକ୍ରମ କରିସାରିଥିବ । ମୋଟ ୩୬୦୦ ମଶାଲଧାରୀ ଏହାକୁ ବିଭିନ୍ନ ସହରରେ ୧୫୦୦ କିଲୋମିଟର ପଥ ଶୋଭାଯାତ୍ରାରେ ନେବେ । ଏହି ମଶାଲକୁ ଜଳ ଜାହାଜ, ସାଇକେଲ, ମୋଟର ସାଇକେଲ ଏବଂ ହ୍ୱିଲ ଚେୟାରରେ ମଧ୍ୟ ନିଆଯିବ । ସମଗ୍ର ବିଶ୍ୱରେ ୨୬ କୋଟି ଲୋକ ଏହି ମଶାଲକୁ ଦେଖିବାର ସୌଭାଗ୍ୟ ଲାଭ କରିବେ ।

(ପି.ଆଇ.ବି.)

# ଆମ ସେନାବାହିନୀର ଶକ୍ତି

**ଭା**ରତର ଯୁଦ୍ଧାସ୍ତ୍ର ଉତ୍ପାଦନର ଇତିହାସକୁ ଅନୁଧ୍ୟାନ କଲେ ଜାଣିବାକୁ ମିଳେ ଯେ, ୧୮୦୨ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ମାସ ୧୮ ତାରିଖ ଦିନ ପଶ୍ଚିମବଙ୍ଗର କୋଶିପୁରଠାରେ ହୁଗୁଳି ନଦୀ ଉପକୂଳରେ ପ୍ରଥମେ ଯୁଦ୍ଧାସ୍ତ୍ର ଉତ୍ପାଦନ କାରଖାନା ପ୍ରତିଷ୍ଠିତ ହୋଇ କେବଳ ବନ୍ଧୁକ ଓ ସେଲ୍ (ହାତବୋମା) କାରଖାନାର ପ୍ରଥମ ୟୁନିଟ୍ ପ୍ରତିଷ୍ଠିତ ହୋଇଥିଲା । ମୁଖ୍ୟତଃ ବନ୍ଧୁକରେ ବ୍ୟବହୃତ ହେଉଥିବା ଗୁଳିଗୋଳା ଉତ୍ପାଦନ ପାଇଁ ଏହି କାରଖାନା ଉଦ୍ଦିଷ୍ଟ ଥିଲା । ବର୍ତ୍ତମାନ ଏହା ଦେଶର ୩୯ଟି ଯୁଦ୍ଧାସ୍ତ୍ର ପ୍ରସ୍ତୁତକାରୀ କାରଖାନାର ପ୍ରାଣକେନ୍ଦ୍ର ରୂପେ ପରିଚିତ । ବର୍ତ୍ତମାନ ବିହାରର ନାଳନ୍ଦାଠାରେ ୧୫୫ ଏମ୍.ଏମ୍. ଆର୍ଟିଲେରୀ ଗନ ସିଷ୍ଟମ ପାଇଁ ଆବଶ୍ୟକ ବାଇମୋଡୁଲାର ଚାର୍ଜ ଉତ୍ପାଦନ ପାଇଁ ଏହାର ୪୦ତମ କାରଖାନା ପ୍ରତିଷ୍ଠା ଲାଭ କରିଛି । ୧୯୪୭ ମସିହାରେ ୧୫ କୋଟି ଟଙ୍କା ମୂଲ୍ୟର ଯୁଦ୍ଧାସ୍ତ୍ର ଉତ୍ପାଦନ ଓ ପ୍ରସ୍ତୁତ କରାଯାଇ ପାରୁଥିବାବେଳେ ବର୍ତ୍ତମାନ ଏହା ବୃଦ୍ଧି ପାଇ ୬ ହଜାର ୫୦୦ କୋଟି ଟଙ୍କାରେ ପହଞ୍ଚିଛି । କୋଲକାତା ଅର୍ଡ଼ିନାନ୍‌ସ ଫ୍ୟାକ୍ଟ୍ରି ବୋର୍ଡ଼ (ଓ.ଏଫ୍.ବି.) ଏହିସବୁ କାରଖାନାଗୁଡ଼ିକୁ ନିୟନ୍ତ୍ରଣ କରିବା ସହିତ କାରଖାନାଗୁଡ଼ିକ ମଧ୍ୟରେ ସମନ୍ୱୟ ରକ୍ଷା କରିଥାଏ । ଅସ୍ତ୍ରଶସ୍ତ୍ର ଉତ୍ପାଦନ କାରଖାନାଗୁଡ଼ିକର ମହାନିର୍ଦ୍ଦେଶକ ବୋର୍ଡ଼ର ଅଧ୍ୟକ୍ଷ ଦାୟିତ୍ୱ ବହନ କରନ୍ତି । ଅତିରିକ୍ତ ମହାନିର୍ଦ୍ଦେଶକ ପଦବୀଯୋଗ୍ୟ ନଅ ଜଣ ସଦସ୍ୟଙ୍କୁ ନେଇ ଓ.ଏଫ୍.ବି. ଗଠିତ ହୋଇଛି ।

ବିଗତ କାରଗିଲ ଯୁଦ୍ଧ କାଳରେ ଭାରତୀୟ ଅସ୍ତ୍ରଶସ୍ତ୍ର କାରଖାନା ପୁଣିଥରେ ନିଜର ସାମର୍ଥ୍ୟ ଓ ଦକ୍ଷତା ପ୍ରତିପାଦନ କରିପାରିଛି । ଭାରତୀୟ ସେନାବାହିନୀକୁ ଦେଶରକ୍ଷା ସରଞ୍ଜାମ ଯୋଗାଇବାରେ ଏହିସବୁ କାରଖାନା ସର୍ବାପେକ୍ଷା ନିର୍ଭରଶୀଳ ଅନୁଷ୍ଠାନର ମର୍ଯ୍ୟାଦା ଲାଭ କରିଛି । ଉନ୍ନତ ଓ ଆଧୁନିକ ଅସ୍ତ୍ରଶସ୍ତ୍ର ଉତ୍ପାଦନ କ୍ଷେତ୍ରରେ ଏହିସବୁ କାରଖାନା ନିଜର ଉଦ୍ୟମ ଅବ୍ୟାହତ ରଖିଛି ।

ଅସ୍ତ୍ରଶସ୍ତ୍ର କାରଖାନାଗୁଡ଼ିକର ବୈଷୟିକ ଏବଂ ଗୁଣାତ୍ମକ ସମ୍ମିଶ୍ରଣ ଉପାଦେୟତା କାର୍ଯ୍ୟକ୍ରମ ସାରା ଦେଶରେ ବିସ୍ତାର ଲାଭ କରିଛି । କାରଖାନାଗୁଡ଼ିକ ବହୁବିଧ ସାମରିକ ଉପକରଣ ଉତ୍ପାଦନ କରୁଥିବାବେଳେ ସେଗୁଡ଼ିକ ମଧ୍ୟରେ ସାମରିକ ଅସ୍ତ୍ରଶସ୍ତ୍ର, ସାମୂହିକ ଗାଡ଼ିମଟର ଏବଂ ସେସବୁର ଆବଶ୍ୟକୀୟ ଯନ୍ତ୍ରାଂଶ, ଯୁଦ୍ଧାସ୍ତ୍ର ସଜ୍ଜିତ ମଟରଗାଡ଼ି, ସେନାବାହିନୀର ପୋଷାକପତ୍ର ଓ ଅନ୍ୟାନ୍ୟ ଯନ୍ତ୍ରପାତି, ଅପଟିକାଲ ଏବଂ ଅପଟୋଇଲେକ୍‌ଟ୍ରୋନିକ୍ ଡିଭାଇସ ସହିତ କେବୁଲ ଏବଂ ଫାଇବର ଅପଟିକ୍‌ସ ଉତ୍ପାଦନ କରି ସେନାବାହିନୀକୁ ଯୋଗାଇ ଦେଇଥାନ୍ତି । ଏହି ଓ.ଏଫ୍.ବି. ସଂଗଠନ ଦେଶର ଅନ୍ୟ ୮ଟି ସରକାରୀ ପ୍ରାପ୍ତ ସଂଗଠନ ସହିତ ଦେଶରକ୍ଷା ପାଇଁ ଆବଶ୍ୟକ ଉପକରଣର ଶତକଡ଼ା ୪୪ ଭାଗ ଯୋଗାଇ ଦେଇଥାନ୍ତି । ଦେଶରକ୍ଷା ବଜେଟରେ ହାରାହାରି ଶତକଡ଼ା ୭୦ ଭାଗରେ ଏହି ସଂଗଠନ ଅଂଶିଦାର ହୋଇପାରିଛି । ଗତ ୧୯୯୯-୨୦୦୦ ବର୍ଷଠାରୁ ଦେଶରକ୍ଷା ସାମଗ୍ରୀ ଉତ୍ପାଦନ କରୁଥିବା କାରଖାନାଗୁଡ଼ିକ ବଳକା ଉତ୍ପାଦନ କରି ଚାଲିଛନ୍ତି ।

ଗ୍ରାହକମାନଙ୍କର ସନ୍ତୋଷ ବିଧାନ ଉପରେ ଗୁରୁତ୍ୱ ଦେଇ ଓ.ଏଫ୍.ବି. ଅନ୍ତର୍ଭୁକ୍ତ କାରଖାନାଗୁଡ଼ିକ ଆଇ.ଏସ୍.ଓ. ପ୍ରଶଂସାପତ୍ର (ସାର୍ଟିଫିକେଟ) ହାସଲ କରିବା ଉଦ୍ଦେଶ୍ୟ ରଖିଛି । ଅଧିକାଂଶ କାରଖାନା ଆଇ.ଏସ୍.ଓ. ୯୦୦୧-୯୦୦୨ ସାର୍ଟିଫିକେସନ ପୁରସ୍କାର ଲାଭ କରିଛି । ଉନ୍ନତମାନର ଉପକରଣ ଉତ୍ପାଦନ କ୍ଷେତ୍ରରେ ପଛରେ ନପଡ଼ି କେତେକ କାରଖାନାର ସ୍ୱାସ୍ଥ୍ୟସେବା ଏବଂ ତାଲିମ ଅନୁଷ୍ଠାନ ମଧ୍ୟ ଆଇ.ଏସ୍.ଓ. ୯୦୦୧-୯୦୦୨ ସାର୍ଟିଫିକେଟ ହାସଲ କରିଛି ।

ଡିଫେନ୍‌ସ ରିସର୍ଚ୍ଚ ଆଣ୍ଡ ଡେଭେଲପମେଣ୍ଟ ଅର୍ଗାନାଇଜେସନ (ଡି.ଆର୍.ଡି.ଓ.) ଉନ୍ନତମାନର ଆଧୁନିକ ଉପକରଣ ଆବଶ୍ୟକ କରୁଥିବାବେଳେ ଭାରତୀୟ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତକାରୀ କାରଖାନାଗୁଡ଼ିକ ସେମାନଙ୍କର ନିଜସ୍ୱ ଉତ୍ପାଦନ କ୍ଷେତ୍ରରେ ଉନ୍ନତମାନର ଉପକରଣ ପ୍ରସ୍ତୁତ କରିବାରେ ସଫଳ ହୋଇପାରିଛନ୍ତି ।

ବିଦେଶ ସହିତ ବୈଷୟିକ ଜ୍ଞାନକୌଶଳ ବିନିମୟରେ ଅଭିଜ୍ଞତା ହାସଲ କରି ଅସ୍ତ୍ରଶସ୍ତ୍ର କାରଖାନାଗୁଡ଼ିକ ଉନ୍ନତମାନର ସ୍ୱଦେଶୀ ଉପକରଣ ପ୍ରସ୍ତୁତ କରିପାରୁଛନ୍ତି । ଏଗୁଡ଼ିକ ମଧ୍ୟରେ ବିଜୟନ୍ତ ଏବଂ ଟି-୭୨ ଟ୍ୟାଙ୍କ ଓ ଏହାର ଆବଶ୍ୟକୀୟ ଯୁଦ୍ଧ ଉପକରଣ, ପଦାତିକ ବାହିନୀର କମ୍ବାଟ ମଟରଗାଡ଼ି ସହିତ ଯୁଦ୍ଧ ଉପକରଣ, ୧୫୫-

ଏମ୍.ଏମ୍. ବନ୍ଧୁକ ଏବଂ ୮୪ ଏମ୍.ଏମ୍. ରକେଟ ଲଞ୍ଚର ଏବଂ ଯୁଦ୍ଧାସ୍ତ୍ର ଆଦି ଉପକରଣ ହେଉଛି ଗୁରୁତ୍ୱପୂର୍ଣ୍ଣ ।

ବିଳମ୍ବରେ ହେଲେ ମଧ୍ୟ ଓ.ଏଫ୍.ବି.ଆର୍.ଆଣ୍ଡ.ଡି.କୁ ଶକ୍ତିଶାଳୀ କରିବା ଲକ୍ଷ୍ୟ ରଖି ଏକ ନୂଆନୂଆ ଉପକରଣ ପ୍ରସ୍ତୁତ କରିବା ଏବଂ ଆର୍.ଆଣ୍ଡ.ଡ଼ି.ର କୋଠାବାଡ଼ି ବିସ୍ତାର କରିବାରେ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଛି । ଫଳରେ ଆମେ ବିଦେଶରୁ ଆମଦାନୀ କରୁଥିବା ଦେଶରକ୍ଷା ସାମଗ୍ରୀ ହ୍ରାସ ପାଇବା ସହିତ ବିଦେଶରେ ଆମ ଉତ୍ପାଦିତ ଉପକରଣ ବଜାର ବିଦେଶରେ ସୃଷ୍ଟି କରିପାରିବା ।

କମ ସମୟ ମଧ୍ୟରେ ଆମ ସେନାବାହିନୀକୁ ଆବଶ୍ୟକୀୟ ଉପକରଣ ଯୋଗାଇ ଦେବା ପାଇଁ କାରଖାନାଗୁଡ଼ିକର ଆଧୁନିକୀକରଣ ସହିତ ଆଧୁନିକ ବୈଷୟିକ ଜ୍ଞାନକୌଶଳ ଯୁକ୍ତ ଉପକରଣ ଯୋଗାଇବା ପାଇଁ ଓ.ଏଫ୍.ବି. ଯତ୍ନଶୀଳ ହେଉଛନ୍ତି । ନବମ ପଞ୍ଚବାର୍ଷିକ ଯୋଜନାରେ ଆଧୁନିକୀକରଣ ଦିଗରେ ୧୦୬୨ କୋଟି ଟଙ୍କା ବିନିଯୋଗ କରାଯାଇଛି । ବର୍ତ୍ତମାନ ପ୍ରଚଳିତ ୨୦୦୨-୦୭ ଦଶମ ପଞ୍ଚବାର୍ଷିକୀ ଯୋଜନାରେ ୧୭୮୬ କୋଟି ଟଙ୍କା ବ୍ୟୟବରାଦ କରାଯାଇଛି ।

ଦେଶର ସଶସ୍ତ୍ରବାହିନୀର ବାର୍ଷିକ ଆବଶ୍ୟକତା ଉପରେ ଅସ୍ତ୍ରଶସ୍ତ୍ର କାରଖାନାର କାର୍ଯ୍ୟକାରିତା ନିର୍ଭର କରେ । ଶାନ୍ତି ସମୟରେ କାରଖାନାଗୁଡ଼ିକର ଉତ୍ପାଦନ ତୁଳନାତ୍ମକ ଭାବେ ଆର୍ଥିକ ଦୃଷ୍ଟିରୁ କମ୍ ହେଉଥିବାବେଳେ ଆବଶ୍ୟକ ବେଳେ ଏହା ଲାଭଜନକ ଓ ଗ୍ରାହକମାନଙ୍କ ପାଇଁ ସୁଲଭ ହୋଇଥାଏ ।

ଗତ ୩ ବର୍ଷରେ ଆମ ଦେଶରକ୍ଷା ସେକ୍ଟରଗୁଡ଼ିକର ଉତ୍ପାଦନ ଶତକଡ଼ା ୭୫ ଭାଗ ହୋଇଥିଲା । ସେହି ସମୟରେ ବିଦେଶକୁ ରପ୍ତାନୀ ୬୩ କୋଟି ଟଙ୍କାକୁ ବୃଦ୍ଧି ପାଇଥିଲା । ମାତ୍ର ୧୯୯୯-୨୦୦୦ ବର୍ଷ ବେଳେ ଏହି ପରିମାଣ ୪.୬୩ କୋଟି ଟଙ୍କାରେ ସୀମିତ ଥିଲା । ରପ୍ତାନୀ ହେଉଥିବା ଗୁରୁତ୍ୱପୂର୍ଣ୍ଣ ଦ୍ରବ୍ୟ ମଧ୍ୟରେ ମାଇନ୍-ପ୍ରୁଫ ମଟରଗାଡ଼ି (ଏମ୍.ପି.ଭି.) ଯାହା ଆର.ଆଣ୍ଡ.ଡି.ର ନିଜ ଉତ୍ପାଦିତ । ଓ.ଏଫ୍.ବି. ଉତ୍ପାଦିତ ୧୫୫ ଏମ୍.ଏମ୍. ବନ୍ଧୁକ ୨୦୦୨ ବର୍ଷ ଆବୁଧାବିରେ ପ୍ରଦର୍ଶିତ ହୋଇଥିଲା । ପରେ ବିଭିନ୍ନ ସ୍ଥାନରୁ ଏହାର କ୍ରୟ ପାଇଁ ଆଗ୍ରହ ପ୍ରକାଶ ପାଇଛି ।

ଦେଶର ବିଭିନ୍ନ ସ୍ଥାନରେ ସାମରିକ ଅସ୍ତ୍ରଶସ୍ତ୍ର ଉତ୍ପାଦନ କାରଖାନାମାନ ବିସ୍ତାର ଲାଭ କରିଛି । ଏଥିମଧ୍ୟରୁ ଅନେକ କାରଖାନାର ବିସ୍ଫୋରକ ଏବଂ ମାରାତ୍ମକ ଅସ୍ତ୍ରଶସ୍ତ୍ର ପ୍ରସ୍ତୁତ କରିବାରେ ସକ୍ଷମ । କେତେକ ଆଭ୍ୟନ୍ତରୀଣ ଦୁର୍ଗମ ଅଞ୍ଚଳରେ ମଧ୍ୟ ଏ ଧରଣର କାରଖାନା ସ୍ଥାପିତ ହୋଇଛି । ଏହିସବୁ କାରଖାନାରେ କାର୍ଯ୍ୟରତମାନଙ୍କ ପାଇଁ ଓ ସେମାନଙ୍କ ପରିବାର ପାଇଁ ବାସଗୃହ ଯୋଗାଇ ଦିଆଯାଇଛି । ଏହି ସବୁ ବସତିମାନଙ୍କର ପରିମଳ ବ୍ୟବସ୍ଥା କରାଯାଇଥିଲା ବେଳେ କର୍ମଚାରୀ ଏବଂ ସେମାନଙ୍କ ପରିବାରର ସୁବିଧା ଦୃଷ୍ଟିରୁ ମାର୍କେଟ କଂପ୍ଲେକ୍ସ, ଡାକ୍ତରଖାନା, କମ୍ୟୁନିଟି ସେଣ୍ଟର, ଖେଳ ପାଇଁ ଷ୍ଟାଡ଼ିୟମ, ବିଦ୍ୟାଳୟ, ବ୍ୟାଙ୍କ, ଡାକଘର ଓ କ୍ଲବ ଘରମାନ ରହିଛି । ପରିବେଶ ସୁରକ୍ଷା ପାଇଁ ବହୁ ପରିମାଣରେ ବୃକ୍ଷରୋପଣ କରାଯାଇଛି । ଏହି ସବୁ ଜନବସତି ଭାରତରେ ବିଭିନ୍ନତା ଭିତରେ ଏକତା ପ୍ରତିପାଦନ କରୁଛି ।

(ପି.ଆଇ.ବି.)

# କେନ୍ଦ୍ରୀୟ ଶିକ୍ଷା ପରାମର୍ଶଦାତା ବୋର୍ଡ଼କୁ ରାଜ୍ୟ ବିଦ୍ୟାଳୟ ଓ ଗଣଶିକ୍ଷା ମନ୍ତ୍ରୀ ଶ୍ରୀ ପ୍ରଧାନ ମନୋନୀତ

କେନ୍ଦ୍ରୀୟ ଶିକ୍ଷା ପରାମର୍ଶଦାତା ବୋର୍ଡ଼କୁ ରାଜ୍ୟ ବିଦ୍ୟାଳୟ ଓ ଗଣିଶିକ୍ଷା ମନ୍ତ୍ରୀ ଶ୍ରୀ ନଗେନ୍ଦ୍ର କୁମାର ପ୍ରଧାନ ମନୋନୀତ ହୋଇଛନ୍ତି । ସ୍ୱାଧୀନତାର ପୂର୍ବବର୍ତ୍ତୀ ୧୯୨୦ ମସିହାରୁ ଗଠିତ ଏହି ବୋର୍ଡ଼ କେନ୍ଦ୍ର ଓ ରାଜ୍ୟ ସରକାରଙ୍କୁ ଶିକ୍ଷାର ଗୁଣାତ୍ମକ ମାନ ବୃଦ୍ଧି ଓ ବିକାଶ ସଂପର୍କରେ ପରାମର୍ଶ ଦେଇଥାଏ । ବର୍ତ୍ତମାନ କେନ୍ଦ୍ର ସରକାରଙ୍କ ଦ୍ୱାରା ପୁନର୍ଗଠିତ ଏହି ବୋର୍ଡ଼କୁ ମନ୍ତ୍ରୀ ଶ୍ରୀ ପ୍ରଧାନ ମନୋନୀତ ହେବା ସଂଗେସଂଗେ ଗତ ୧୦.୮.୨୦୦୪ ଓ ୧୧.୮.୨୦୦୪, ଦୁଇଦିନ ଧରି ନୂଆଦିଲ୍ଲୀଠାରେ ଅନୁଷ୍ଠିତ ହେଉଥିବା ପୁନର୍ଗଠିତ ବୋର୍ଡ଼ର ପ୍ରଥମ ବୈଠକରେ ଯୋଗ ଦେଇଛନ୍ତି ବୋଲି ମନ୍ତ୍ରୀଙ୍କ କାର୍ଯ୍ୟାଳୟ ସୂତ୍ରରୁ ପ୍ରକାଶ ।

# ସେବା ପ୍ରକ୍ରିୟାକରଣ ଶିଳ୍ପ ଓ ଆମ ଘରୋଇ ଉତ୍ପାଦ

ଅଧ୍ୟାପକ ପ୍ରଫୁଲ୍ଲ ଚନ୍ଦ୍ର ମହାନ୍ତି (ହାରିତ୍ସ)

**ଗୋ**ଟିଏ ରାଷ୍ଟ୍ରର ସାମଗ୍ରିକ ଓ ସାମୂହିକ ଘରୋଇ ଉତ୍ପାଦ ଉପରେ ସେହି ରାଷ୍ଟ୍ରର ନିଜସ୍ୱ ଅର୍ଥନୀତି ନିର୍ଭର କରିଥାଏ । ସାମଗ୍ରିକ ଘରୋଇ ଉତ୍ପାଦ (GDP) କହିଲେ ରାଷ୍ଟ୍ରର ସମସ୍ତ ପ୍ରକାର ଉତ୍ପାଦନ ତଥା ଦ୍ରବ୍ୟ ଓ ସେବାଦିର ଉତ୍ପାଦ ମୂଲ୍ୟ । ସାଧାରଣରେ ଘରୋଇ ଉତ୍ପାଦର ତିନୋଟି ଆଧାର ରହିଛି । କୃଷି ଉତ୍ପାଦ, ଶିଳ୍ପଜ ଓ ସେବାଜରୁ ପ୍ରସ୍ତୁତ ଉତ୍ପାଦର ସଂଯୁକ୍ତ ମୂଲ୍ୟ (Value Added) । ମନେକରାଯାଉ, ଜଣେ ଚାଷୀ ଏକ କିଲୋଗ୍ରାମ ବିଲାତି ଆଳୁ ଉତ୍ପନ୍ନ କରିଛି, ଯାହାକୁ ସେଭଳି ଭାବେ ବିକ୍ରୀ କଲେ ହୁଏତ ପାଞ୍ଚ ଟଙ୍କାର ମୂଲ୍ୟ ମିଳିପାରେ । କିନ୍ତୁ ସେହି ଏକ କିଲୋଗ୍ରାମ ଆଳୁକୁ ଯଦି ପୋଟାଟ୍ ଚିପ୍‌ସ କରି ବିକ୍ରୀ କରାଯାଏ ତା'ହେଲେ ସେହି ମୂଳ ମୂଲ୍ୟ ପାଞ୍ଚଟଙ୍କା ସହ ଆଉ ଅନ୍ୟୂନ ପଞ୍ଚତିରିଶ ଟଙ୍କାର ମୂଲ୍ୟ ଯୁକ୍ତ କରାଯାଇ ବଜାରରେ ଚାଳିଶ ଟଙ୍କା ମିଳିପାରିବ । ଏଣୁ ଯେଉଁ ରାଷ୍ଟ୍ର ମୂଳ କଞ୍ଚାମାଲକୁ କଞ୍ଚାମାଲ ଭାବେ ବିକ୍ରୀ କରେ ସେ ତା' ଘରୋଇ ଉତ୍ପାଦକୁ ବୃଦ୍ଧି କରିପାରେ ନାହିଁ ଓ ସେହି ରାଷ୍ଟ୍ର ତା' ଉତ୍ପାଦରେ କୌଣସି ମୂଲ୍ୟ ଯୋଗ ନକରି କୃଷକ ମାତ୍ର ପାଞ୍ଚ ଟଙ୍କା ପାଇଲା ଭଳି ପାଏ କିନ୍ତୁ ପାଞ୍ଚ ଟଙ୍କାର ଘରୋଇ ଉତ୍ପାଦକୁ ପ୍ରକ୍ରିୟାକରଣ ଶିଳ୍ପ, ସେବାଦି ଜରିଆରେ ଆଉ ଚାଳିଶ ଟଙ୍କାରେ ପରିବର୍ତ୍ତନ କରିନପାରି - ବିଶ୍ୱର ଅନ୍ୟ ଉନ୍ନତ ରାଷ୍ଟ୍ରମାନଙ୍କଠାରୁ ଢେର୍ ପଛରେ ରହିଯାଏ । ଏଣୁ ପ୍ରତ୍ୟେକ ଉନ୍ନତକାମୀ ରାଷ୍ଟ୍ର ନିଜସ୍ୱ ବୁଦ୍ଧିମତ୍ତା, ଜ୍ଞାନକୌଶଳ, ବାଣିଜ୍ୟ ବିପଣନର ପ୍ରୟୋଗକରି ରାଷ୍ଟ୍ରୀୟ ମୂଳ ଉତ୍ପାଦରେ ମୂଲ୍ୟଯୁକ୍ତ କରାଇ ରାଷ୍ଟ୍ରର ଅର୍ଥନୀତିକୁ ସୁଦୃଢ଼ ସ୍ୱାବଲମ୍ବୀ କରିବା ସଂଗେସଂଗେ ବିଶ୍ୱରେ ଏକ ବିକାଶଶୀଳ ରାଷ୍ଟ୍ରରୁ ବିକଶିତ ରାଷ୍ଟ୍ରରେ ପରିଣତ କରିଥାଏ । ବିଭିନ୍ନ ପ୍ରକ୍ରିୟାକରଣ ଶିଳ୍ପ ପ୍ରତିଷ୍ଠା ଦ୍ୱାରା ମୂଳ ଉତ୍ପାଦରେ ମୂଲ୍ୟ ଯୋଗ ତ ହୁଏ, ତା'ବ୍ୟତୀତ ନିଯୁକ୍ତି ସୁଯୋଗ, ନୂତନ କର୍ମ ସଂସ୍ଥାନ ସୃଷ୍ଟି, କୃଷି, ଶିଳ୍ପ, ସେବା ବଜାରର ବୃଦ୍ଧି ଘଟି ଦେଶ ସମୃଦ୍ଧିର ପାହାଚରେ ପଦାର୍ପଣ କରେ ।

ବିଶ୍ୱର କେତେକ ରାଷ୍ଟ୍ରର ସାମଗ୍ରିକ ଘରୋଇ ଉତ୍ପାଦର ଆଧାର ଉପରେ ବିଶ୍ଲେଷଣ କଲେ ଜଣାଯାଏ ଯେ, ରାଷ୍ଟ୍ରୀୟ ଅର୍ଥନୀତିକୁ ଅଧିକ ପ୍ରଭାବିତ କରେ । ବିଭିନ୍ନ ସେବା ଯୋଗାଉ ଥିବା ଶିଳ୍ପର ଉତ୍ପାଦନ (Service Sector), କୃଷିର ବିକାଶରେ କୃଷିଜ ମୌଳିକ ଦ୍ରବ୍ୟର ଉତ୍ପାଦନ ବଢ଼ିପାରେ । ସେ'ଭଳି ପ୍ରକ୍ରିୟାକରଣ ଶିଳ୍ପ (Manufacturing Sector) ପ୍ରତିଷ୍ଠାରେ କଞ୍ଚାମାଲକୁ ଆଧାରିତ କରି ଦେଶରେ ବିଭିନ୍ନ ଶିଳ୍ପ ସାମଗ୍ରୀର ଉତ୍ପାଦନ ବୃଦ୍ଧି ଲାଭ କରେ ସତ, କିନ୍ତୁ ଯେଉଁ ରାଷ୍ଟ୍ରର କୃଷିଜାତ ସାମଗ୍ରୀ ଉତ୍ପାଦନ ସହ ଶିଳ୍ପ ବ୍ୟବସ୍ଥା ସେତେଟା ସକ୍ରୀୟ ଓ ପ୍ରଭାବଶାଳୀ କ୍ଷମତା ବିସ୍ତାର କରିବା ପାଇଁ କୌଣସି ସୁଯୋଗ ନଥିଲେ ମଧ ସେହି ରାଷ୍ଟ୍ର ନିଜସ୍ୱ ଜ୍ଞାନକୌଶଳର ବିକ୍ରୟ ଓ ବିଭିନ୍ନ ସେବାଶିଳ୍ପ ପ୍ରତିଷ୍ଠାରୁ ବିନା ଅଧିକା ବ୍ୟୟରେ ବହୁ ଅର୍ଥର ଆୟ କରିପାରନ୍ତି । ଏହି ରାଷ୍ଟ୍ରମାନେ ଘରୋଇ ଉତ୍ପାଦ ବୃଦ୍ଧି ଘଟାଇ ଅପେକ୍ଷାକୃତ ଅଧିକା ଧନୀ ତଥା ବିକଶିତ ରାଷ୍ଟ୍ରଭାବରେ ପରିଚିତ ହୋଇଥାଆନ୍ତି । ଜାପାନ ଏକ ବିକଶିତ ରାଷ୍ଟ୍ର ହୋଇଥିଲେ ହେଁ କୃଷିର ସଂପ୍ରସାରଣ ପାଇଁ ଚାଷଜମିର ଅଭାବ ଯୋଗୁଁ ହ୍ରଦ ଉପରେ ଭେଳା ତିଆରି ତା'ରି ଉପରେ କୃଷି କରନ୍ତି । କିନ୍ତୁ ସେହି ଟିକି ଦେଶ ଭାରତ ଭଳି ବିଶାଳ ବନ୍ୟ, କୃଷି, ଖଣିଜ, ନଦୀ, ସମୁଦ୍ର ସଂପଦରେ ଭରପୂର ଦେଶଠାରୁ ବହୁଗୁଣରେ ବିକଶିତ । ଏହାର କାରଣ ସେ ଦେଶ ଶିଳ୍ପ ପ୍ରକ୍ରିୟାକରଣ ଓ ସେବାଶିଳ୍ପ ଉପରେ ଅଧିକା ଗୁରୁତ୍ୱ ଦେଇଛି । ସେଭଳି ବିଶ୍ୱର ସମସ୍ତ ରାଷ୍ଟ୍ରକୁ ସେମାନଙ୍କ ଉତ୍ପାଦର ମାତ୍ରାଧିକକୁ ଆଖି ଆଗରେ ରଖି ତିନୋଟି ଶ୍ରେଣୀରେ ବିଭକ୍ତ କରାଯାଇପାରେ । ଯଥା- ନିମ୍ନ ଆୟକାରୀ (ଅବିକଶିତ), ମଧ୍ୟମ ଆୟକାରୀ (ବିକାଶଶୀଳ) ଓ ଉଚ୍ଚ ଆୟକାରୀ (ବିକଶିତ) ରାଷ୍ଟ୍ର । ଏହି ଆୟ ମୁଖ୍ୟତଃ ସେବା, ଶିଳ୍ପ ବା କୃଷି ଉତ୍ପାଦରୁ ସୃଷ୍ଟି ।

**ରାଷ୍ଟ୍ରର ଘରୋଇ ଉତ୍ପାଦର ବିଭାଗୀକରଣ ଓ ସଂରଚନ (ଶତାଂଶରେ)**

| ରାଷ୍ଟ୍ରର ପ୍ରକାର | ସେବା | ଶିଳ୍ପ | କୃଷି | ମୋଟ |
|---|---|---|---|---|
| ନିମ୍ନ ଆୟକାରୀ ରାଷ୍ଟ୍ର | ୪୪ | ୩୦ | ୨୬ | ୧୦୦% |
| ମଧ୍ୟମ ଆୟକାରୀ ରାଷ୍ଟ୍ର | ୫୪ | ୩୬ | ୧୦ | ୧୦୦% |

| | | | | |
|---|---|---|---|---|
| ଉଚ୍ଚ ଆୟକାରୀ ରାଷ୍ଟ୍ର | ୭୧ | ୨୭ | ୦୨ | ୧୦୦% |
| ବିଶ୍ୱର ହାରାହାରି | ୬୩ | ୩୨ | ୦୫ | ୧୦୦% |

**ଆଧାର :** ୱାଲର୍ଡ଼ ଡେଭେଲପମେଣ୍ଟ ରିପୋର୍ଟ - ୨୦୦୧

ୱାଲର୍ଡ଼ ଡେଭେଲପମେଣ୍ଟ ରିପୋର୍ଟ-୨୦୦୧ର ଦିଆଯାଇଥିବା ତଥ୍ୟ ଅନୁଯାୟୀ ଜାଣିବାକୁ ମିଳେ ଯେ, ଯେଉଁ ରାଷ୍ଟ୍ରର ସେବା ଶିଳ୍ପ ଉତ୍ପାଦ ଯେତେ ଅଧିକା ସେହି ରାଷ୍ଟ୍ର ସେତେ ଉନ୍ନତ ଓ ବିକଶିତ । ବିଶ୍ୱରେ ନିମ୍ନ ଆୟକାରୀ ରାଷ୍ଟ୍ରମାନଙ୍କର ଘରୋଇ ଉତ୍ପାଦରେ କୃଷିଜ ଉତ୍ପାଦ ୨୬ ଶତାଂଶ, ଶିଳ୍ପରୁ ୩୦ ଶତାଂଶ ଓ ସେବାରୁ ୪୪ ଶତାଂଶ । କିନ୍ତୁ ଏହି ବିଭାଜନ ମଧ୍ୟମ ଆୟକାରୀ ରାଷ୍ଟ୍ରମାନଙ୍କ ପାଇଁ ଅଲଗା । ଏମାନଙ୍କ ମୋଟ ଘରୋଇ ଉତ୍ପାଦ ସେବାରୁ ୫୪ ଭାଗ, ଶିଳ୍ପରୁ ୩୬ ଏବଂ କୃଷିରୁ ମାତ୍ର ୧୦ ଶତାଂଶ ଭାଗ । ଉଚ୍ଚ ଆୟକାରୀ ରାଷ୍ଟ୍ରମାନଙ୍କର ଘରୋଇ ଉତ୍ପାଦର ୭୧ ଶତାଂଶ ସେବା ଶିଳ୍ପରୁ ୨୭ ଓ କୃଷିରୁ ମାତ୍ର ୨ ଶତାଂଶ ଭାଗ ରହିଛି । ଏଥିରୁ ଅନୁମାନ କରାଯାଇପାରେ ଯେ, ରାଷ୍ଟ୍ରର ଆୟ ବୃଦ୍ଧି କରିବାକୁ ହେଲେ ବିଶେଷତଃ କୃଷି ଓ ଶିଳ୍ପଠାରୁ ସେବା ବଜାର ଉପରେ ଅଧିକା ଗୁରୁତ୍ୱ ଦେବାକୁ ହେବ । ଏହି ଉତ୍ପାଦର ବିଶ୍ୱର ହାରାହାରି ଭାଗ ହେଲା ସେବା ୬୩, ଶିଳ୍ପ ୩୨ ଓ କୃଷି ମାତ୍ର ୫ ଶତାଂଶ । ଦେଶ କୃଷି ପ୍ରଧାନ ହୋଇଗଲେ ଧନୀ ହୋଇପାରେନା ବରଂ କି କି ପ୍ରକାର ସେବା ବଜାର ପ୍ରତିଷ୍ଠା କରି କିଭଳି ନିରଙ୍କୁଶ ସେବା ଯୋଗାଇବାରେ ସମର୍ଥ ହୋଇପାରୁଛି ତା'ରି ଉପରେ ରାଷ୍ଟ୍ରର ଅର୍ଥନୀତି ବା ଧନୀ ହେବା ନିର୍ଭର କରିଥାଏ । ଏବେ ଆସନ୍ତୁ ଦେଖିବା ବିଶ୍ୱର କେତୋଟି ମୁଖ୍ୟ ରାଷ୍ଟ୍ରମାନଙ୍କର ଘରୋଇ ଉତ୍ପାଦର ଆଧାର ଉପରେ ବ୍ୟକ୍ତିଗତ ସମୀକ୍ଷା କରିବା ଏବଂ କେଉଁ ରାଷ୍ଟ୍ର କେତେ ଶତାଂଶ ସେବା ଘରୋଇ ଉତ୍ପାଦରେ ସନ୍ନିବେଶିତ କରି କିଭଳି ଅର୍ଥନୈତିକ ସ୍ଥିତିରେ ପହଞ୍ଚିଛି ତାକୁ ଅନୁଧ୍ୟାନ କରିବା । ସାରଣୀ-୨ରେ ପ୍ରଦତ୍ତ ବିଶ୍ୱର କୋଡ଼ିଏଟି ରାଷ୍ଟ୍ରର ଉତ୍ପାଦକୁ ଅନୁଧ୍ୟାନ କଲେ ଆମ ଭାରତର ସ୍ଥାନ ପ୍ରାୟତଃ ଦୁର୍ବଳ । ଆମ ଦେଶ ଘରୋଇ ଉତ୍ପାଦନର ୪୬ ଶତାଂଶ, ସେବା କ୍ଷେତ୍ରରୁ ୨୬ ଶତାଂଶ ମାତ୍ର ଶିଳ୍ପରୁ ଏବଂ କୃଷି କ୍ଷେତ୍ରରୁ ୨୮ ଶତାଂଶ ଆସିଥାଏ । ପ୍ରଦତ୍ତ ସାରଣୀରେ ଉଚ୍ଚାଧିକ୍ରମେ ଦେଖିବାକୁ ଗଲେ ଜଣାଯାଏ, ଭାରତ ବିଶ୍ୱରେ କୃଷିଜ ଉତ୍ପାଦରୁ ସବୁଠାରୁ ବଡ଼ଭାଗ ଘରୋଇ ଉତ୍ପାଦନରେ ମିଶାଇଥାଏ । ଅନ୍ୟ ସମସ୍ତ ରାଷ୍ଟ୍ରମାନଙ୍କ ତୁଳନାରେ ପ୍ରଥମ । ଶିଳ୍ପଜ ଉତ୍ପାଦରେ ଚତୁର୍ଦ୍ଦଶ ଏବଂ ସେବାଜ କ୍ଷେତ୍ରରେ ସପ୍ତଦଶତମ ସ୍ଥାନରେ ସ୍ଥାନିତ ହୋଇଛି ଓ ନିଜକୁ ବିକାଶଶୀଳ ରାଷ୍ଟ୍ର ତାଲିକାରେ ରଖିଛି । ସ୍ୱାଧୀନତାର ଏବେ ଛ'ଦଶକ ପୂରଣ ହେବାକୁ ଯାଉଥିଲେବି ଯେଉଁ ଗତିରେ ଭାରତର ବିକାଶ ହେବା କଥା ସେହି ହାରରେ ବିକାଶ ହୋଇପାରିନି । ବରଂ ବେଳେବେଳେ ଗୋଟିଏ ମସୃଣ ଖୁଣ୍ଟରେ ମାଙ୍କଡ଼ ଦଶଫୁଟ ଉପରକୁ ଉଠିଲା ବେଳେ ତା' ପରମୁହୂର୍ତ୍ତରେ ବାରଫୁଟ ତଳକୁ ଖସି ଆସିବାର ଦେଖାଯାଉଛି । ଭାରତ ଏକ କୃଷି ପ୍ରଧାନ ଦେଶ । ଅଧିକାଂଶ ଲୋକ ଚାଷୀ । କୃଷି ଉପରେ ନିର୍ଭର କରି ଜୀବିକା ନିର୍ବାହ କରିଥାନ୍ତି । ଜାପାନ, ଜର୍ମାନୀ ଭଳି ଅନ୍ୟ ବହୁ ରାଷ୍ଟ୍ର ଅଛନ୍ତି ଯାହାର ଅର୍ଥନୀତି କୃଷିଭିତ୍ତିକ ନୁହଁ । କାରଣ ସେମାନଙ୍କ ଦେଶ ଭାରତ ଭଳି ବ୍ୟାପ୍ତ ଆୟତନ ବିଶିଷ୍ଟ ନୁହଁକି ଭାରତ ଭଳି କୃଷିକ୍ଷେତ୍ର ପାଇଁ ପର୍ଯ୍ୟାପ୍ତ ଭୂମି ନାହିଁ ତଥାପି ସେମାନଙ୍କ ବିକାଶ ହାର ତଥା ଉତ୍ପାଦର ମାତ୍ରା ଭାରତଠାରୁ ଢେର ଉଚ୍ଚରେ ପ୍ରଦତ୍ତ ସାରଣୀରୁ ଜଣାଯାଏ, ଯେଉଁସବୁ ରାଷ୍ଟ୍ର କୃଷିଜ ଉତ୍ପାଦନ ଉପରେ ଅଧିକା ନିର୍ଭର କରିଥାନ୍ତି ସେମାନେ ପ୍ରାୟତଃ ଦରିଦ୍ର । ଭାରତ ନିଜସ୍ୱ ଉତ୍ପାଦର ୨୮ ଶତାଂଶ, ପାକିସ୍ଥାନ ୨୭ ଶତାଂଶ, ଜାମ୍ବିଆ ୨୫ ଶତାଂଶ, ଇଣ୍ଡୋନେସିଆ ଓ ଜିମ୍ବାୱେ ୨୦ ଶତାଂଶ ପ୍ରାୟ କୃଷିରୁ ଉତ୍ପାଦନ କରିଥାନ୍ତି । ଏମାନେ ଏ' ଯାବତ୍ ଅବିକଶିତ ତଥା ଋଣୀ ରାଷ୍ଟ୍ର କହିବା ଭୁଲ ନୁହଁ । ଅନ୍ୟପକ୍ଷରେ ଚୀନ ୪୯ ଶତାଂଶ, ମାଲେସିଆ ୪୬ ଶତାଂଶ, ସାଉଥ୍ କୋରିଆ ଆଦି ଦେଶ ଶିଳ୍ପରୁ ୪୪ ଶତାଂଶ ପ୍ରାୟ ଉତ୍ପାଦନ କରିଥାଆନ୍ତି - ଏଣୁ ଏମାନଙ୍କ ଆର୍ଥିକ ସ୍ଥିତି ଭାରତ, ପାକିସ୍ଥାନଠାରୁ ଢେର୍ ଭଲ । କିନ୍ତୁ ଆମେରିକା, ଅଷ୍ଟ୍ରେଲିଆ, ବ୍ରାଜିଲ୍ ମେକ୍ସିକୋ ଆଦି ଦେଶଠାରୁ ବହୁପଛରେ । ଏହାର ମୁଖ୍ୟ କାରଣ ହେଲା ନିଜସ୍ୱ ଉତ୍ପାଦର ମାତ୍ରାରେ ସେବା ଶିଳ୍ପ ଉତ୍ପାଦନର ଭାଗ କମ୍ । ୟୁରୋପର ସେବାଜ ଉତ୍ପାଦ ସର୍ବାଧିକ ୭୪ ଶତାଂଶ ଭାଗ । ତା'ପଛକୁ ଫ୍ରାନ୍ସ ୭୪ ଶତାଂଶ, ଜାପାନ ଓ ଅଷ୍ଟ୍ରେଲିଆ ୭୨ ଶତାଂଶ, ଇଟାଲି, ଜର୍ମାନୀ ଆଦି ଦେଶର ୭୧ ଶତାଂଶ ଭାଗ ସେବା ନିୟୋଗରୁ ଆସେ । ଏଣୁ ଏମାନେ ଧନୀକ ରାଷ୍ଟ୍ର ଶ୍ରେଣୀଭୁକ୍ତ ।

**ବିଭିନ୍ନ ରାଷ୍ଟ୍ରର ଘରୋଇ ଉତ୍ପାଦର ବିଭାଗୀକରଣ (ଶତାଂଶରେ)**

**ଘରୋଇ ଉତ୍ପାଦ**

| ରାଷ୍ଟ୍ରର ନାମ | ସେବା | ଶିଳ୍ପ | କୃଷି |
|---|---|---|---|
| ୧. ଆର୍ଜେଣ୍ଟିନା | ୬୭ (୮) | ୨୮ (୧୧) | ୦୫ (୧୧) |
| ୨. ଅଷ୍ଟ୍ରେଲିଆ | ୭୨ (୪) | ୨୫ (୧୫) | ୦୩ (୧୫) |
| ୩. ବ୍ରାଜିଲ | ୬୧ (୯) | ୩୧ (୦୯) | ୦୯ (୦୯) |
| ୪. ଚୀନ | ୩୩ (୨୦) | ୪୯ (୦୧) | ୧୮ (୦୬) |
| ୫. ଫ୍ରାନ୍ସ | ୭୪ (୦୨) | ୨୩ (୨୦) | ୦୩ (୧୬) |
| ୬. ଜର୍ମାନୀ | ୭୧ (୦୫) | ୨୮ (୧୬) | ୦୧ (୧୯) |
| ୭. ଭାରତ | ୪୬ (୧୭) | ୨୬ (୧୪) | ୨୮ (୦୧) |
| ୮. ଇଣ୍ଡୋନେସିଆ | ୩୭ (୧୯) | ୪୩ (୦୪) | ୨୦ (୦୪) |
| ୯. ଇଟାଲି | ୭୧ (୦୫) | ୨୬ (୧୨) | ୦୩ (୧୭) |
| ୧୦. ଜାପାନ | ୭୨ (୦୩) | ୩୬ (୦୭) | ୦୨ (୧୮) |
| ୧୧. ସାଉଥ କୋରିଆ | ୫୧ (୧୩) | ୪୪ (୦୩) | ୦୫ (୧୨) |

| | | | |
|---|---|---|---|
| ୧୨. ମାଲେସିଆ | ୪୩ (୧୮) | ୪୬ (୦୨) | ୧୧ (୦୭) |
| ୧୩. ମେକ୍ସିକୋ | ୬୭ (୦୭) | ୨୮ (୧୦) | ୦୫ (୧୪) |
| ୧୪. ପାକିସ୍ଥାନ | ୫୦ (୧୬) | ୨୩ (୧୯) | ୦୭ (୦୨) |
| ୧୫. ଋଷ | ୫୫ (୧୧) | ୩୬ (୦୬) | ୦୯ (୧୦) |
| ୧୬. ଥାଇଲେଣ୍ଡ | ୫୦ (୧୫) | ୪୦ (୦୫) | ୧୦ (୦୮) |
| ୧୭. ୟୁ.କେ. | ୭୪ (୦୧) | ୨୫ (୧୬) | ୦୧ (୨୦) |
| ୧୮. ଭେନଜୁଆଲ୍ | ୫୯ (୧୦) | ୩୬ (୦୮) | ୦୫ (୧୩) |
| ୧୯. ଜାମ୍ବିଆ | ୫୧ (୧୪) | ୨୪ (୧୮) | ୨୫ (୦୩) |
| ୨୦. ଜିମ୍ବାୱେ | ୫୫ (୧୨) | ୨୫ (୧୭) | ୨୦ (୦୫) |

(..) ବନ୍ଧନୀମଧ୍ୟସ୍ଥ ସଂଖ୍ୟା ଉଚ୍ଚାଧିକ୍ରମ (Rank)

**ଆଧାର :** ୱାରଲଡ୍ ଡେଭେଲପମେଣ୍ଟ ରିପୋର୍ଟ-୨୦୦୧

ବର୍ତ୍ତମାନକୁ ବହୁ ଡେରି ହେଇ ଯାଇଥିଲେ ବି ଆମ ଅର୍ଥନୀତିଜ୍ଞମାନେ ଦେଶର ଘରୋଇ ଉତ୍ପାଦନକୁ ସେବା ଶିଳ୍ପର ବୃଦ୍ଧି ଘଟାଇ ବଢ଼ାଇବାକୁ ପଡ଼ିବ । ବଡ଼ ଖୁସିର କଥା ୨୦୦୩-୦୪ ଆର୍ଥିକ ବର୍ଷରେ ସେବା କ୍ଷେତ୍ର ଘରୋଇ ଉତ୍ପାଦର ଅଧାରୁ ଅଧିକା ଭାଗ ଯୋଗ କରିପାରିଛି । ଆମର ଇଲେକ୍ଟ୍ରୋନିକ୍ସ, ଟେଲିଫୋନ୍, ବ୍ୟାଙ୍କ, ବୀମା, ପରିବହନ, ଡାକସେବା ସହ କମ୍ପ୍ୟୁଟର ସୂଚନା ପ୍ରଯୁକ୍ତି ସେବା ବ୍ୟବସ୍ଥାରେ ଯଥେଷ୍ଟ ଉନ୍ନତି ପରିଲକ୍ଷିତ ହେଉଛି । ତଥାପି ଅନ୍ୟ ବିକଶିତ ରାଷ୍ଟ୍ରମାନଙ୍କ ସମକକ୍ଷ ହେବାକୁ ହେଲେ ଆହୁରି ଦ୍ରୁତ ଗତିରେ ଆମ ସେବା ପ୍ରକ୍ରିୟାକରଣ କ୍ଷେତ୍ରର ବିକାଶ କରାଇବାକୁ ହେବ ।

ବାଣିଜ୍ୟ ବିଭାଗ
ଆସିକା ବିଜ୍ଞାନ ମହାବିଦ୍ୟାଳୟ, ଆସିକା, ଗଂଜାମ

# ଆନ୍ତର୍ଜାତିକ ବାଣିଜ୍ୟ ମେଳା - ୨୦୦୪ରେ ଓଡ଼ିଶା ମଣ୍ଡପକୁ ଆକର୍ଷଣୀୟ ଓ ସର୍ବାଙ୍ଗ ସୁନ୍ଦର କରାଯିବା ଉପରେ ମନ୍ତ୍ରୀ ଶ୍ରୀ ନାୟକଙ୍କ ଗୁରୁତ୍ୱ

ଚଳିତ ବର୍ଷ ନଭେମ୍ବର ମାସ ୧୪ ତାରିଖରୁ ୨୭ ତାରିଖ ପର୍ଯ୍ୟନ୍ତ ନୂଆଦିଲ୍ଲୀର ପ୍ରଗତି ମଇଦାନଠାରେ ଅନୁଷ୍ଠିତ ହେଉଥିବା ଆନ୍ତର୍ଜାତିକ ବାଣିଜ୍ୟ ମେଳା-୨୦୦୪ (ଆଇ.ଆଇ.ଟି.ଏଫ୍.)ରେ ଓଡ଼ିଶା ମଣ୍ଡପକୁ ସବୁ ଦିଗରୁ ଆକର୍ଷଣୀୟ ଓ ସର୍ବାଙ୍ଗ ସୁନ୍ଦର କରିବା ପାଇଁ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଗୁରୁତ୍ୱ ଆରୋପ କରିଛନ୍ତି ।

ଗତ ଅଗଷ୍ଟ ୨୫ ତାରିଖ ଦିନ ସୂଚନା ଓ ଲୋକ ସଂପର୍କ ବିଭାଗ ସମ୍ମିଳନୀ କକ୍ଷରେ ଅନୁଷ୍ଠିତ ପ୍ରସ୍ତୁତି କମିଟି ବୈଠକରେ ମନ୍ତ୍ରୀ ଶ୍ରୀ ନାୟକ ଯୋଗ ଦେଇ ପ୍ରଗତି ମଇଦାନଠାରେ ଆୟୋଜିତ ହେଉଥିବା ଏହି ମର୍ଯ୍ୟାଦାଜନକ ବାଣିଜ୍ୟ ମେଳାରେ ରାଜ୍ୟର ପ୍ରଗତି ଓ ବିକାଶକୁ ଉପଯୁକ୍ତ ଭାବେ ଦର୍ଶିତ କରିବା ପାଇଁ ଅଂଶ ଗ୍ରହଣ କରୁଥିବା ବିଭାଗୀୟ କର୍ତ୍ତୃପକ୍ଷ ଦୃଷ୍ଟି ଦେବାକୁ ପରାମର୍ଶ ଦେଇଥିଲେ । ମେଳା ଆରମ୍ଭ ହେବାର ଯଥେଷ୍ଟ ପୂର୍ବରୁ ଓଡ଼ିଶା ପ୍ୟାଭିଲିୟନର ମରାମତି ଓ ନବୀକରଣ କାର୍ଯ୍ୟ ସଂପୂର୍ଣ୍ଣ କରିବାକୁ ମଧ୍ୟ କହିଥିଲେ । ସେହିପରି ଗତାନୁଗତିକ ଭାବେ କରାନଯାଇ ଚଳିତ ବର୍ଷର ଏହି ବାଣିଜ୍ୟ ମେଳାରେ ଓଡ଼ିଶା ମଣ୍ଡପକୁ କିଛି ନୂତନତ୍ୱ ଦେବା ପାଇଁ ସେ ପରାମର୍ଶ ଦେଇଥିଲେ ।

ବିଭାଗୀୟ ଶାସନ ସଚିବ ଶ୍ରୀ ସୁରେନ୍ଦ୍ରନାଥ ତ୍ରିପାଠୀ ଚଳିତ ବର୍ଷର ଏହି ବାଣିଜ୍ୟ ମେଳା ପାଇଁ ଓଡ଼ିଶାର କୃଷି, ସୂଚନା ପ୍ରଯୁକ୍ତି ବିଦ୍ୟା ଓ ମହିଳା ସଶକ୍ତିକରଣ କ୍ଷେତ୍ରରେ ସାଫଲ୍ୟକୁ ଆଧାର କରି ଉପଯୁକ୍ତ ପ୍ରଦର୍ଶନ କରାଯିବା ପାଇଁ ସ୍ଥିର କରାଯାଇଥିବା ସୂଚନା ଦେଇଥିଲେ । ଏଣୁ କୃଷିର ଉନ୍ନତି ପାଇଁ ଗ୍ରହଣ କରାଯାଇଥିବା ପାଣିପଞ୍ଚାୟତଠାରୁ ଆରମ୍ଭ କରି ଆଉ ସବୁ ଯେତେ କାର୍ଯ୍ୟକ୍ରମମାନ ଗ୍ରହଣ କରାଯାଇଛି, ସୂଚନା ପ୍ରଯୁକ୍ତି ବିଦ୍ୟାର ପ୍ରସାର ନିମନ୍ତେ ଓଡ଼ିଶା ପ୍ରକୃଷ୍ଟ ସ୍ଥାନ ଏବଂ ମହିଳା ସଶକ୍ତିକରଣ କ୍ଷେତ୍ରରେ ଦେଶରେ ଏକ ଅଗ୍ରଣୀ ରାଜ୍ୟ ବୋଲି ପ୍ରତିପାଦିତ କରିବାକୁ ଉଦ୍ୟମ କରିବା ପାଇଁ କହିଥିଲେ ।

ବିଭାଗୀୟ ନିର୍ଦ୍ଦେଶକ ଶ୍ରୀ ବୈଷ୍ଣବ ପ୍ରସାଦ ମହାନ୍ତି ମେଳାରେ ଓଡ଼ିଶାର ଅଂଶଗ୍ରହଣ, ପୂର୍ବ ବର୍ଷମାନଙ୍କରେ ମେଳାରେ ହାସଲ କରିଥିବା ସାଫଲ୍ୟ ସଂପର୍କରେ ସୂଚନା ପ୍ରଦାନ କରିଥିଲେ ।

ଏହି ଉଚ୍ଚସ୍ତରୀୟ ବୈଠକରେ ସୂଚନା ଓ ଲୋକ ସଂପର୍କ ବିଭାଗ ସମେତ ଶିଳ୍ପ, କୃଷି, ସୂଚନା ପ୍ରଯୁକ୍ତି ବିଦ୍ୟା, ସଂସ୍କୃତି, ପର୍ଯ୍ୟଟନ, ପୂର୍ତ୍ତ, ଜି.ଇ.ଡ଼ି., ହସ୍ତତନ୍ତ ଓ ବୟନଶିଳ୍ପ ପ୍ରଭୃତି ବିଭାଗ, ଇନ୍‌ଫୋସିସ୍, ଟାଟା ଏବଂ ବିଭିନ୍ନ ସରକାରୀ ଓ ବେସରକାରୀ ଉଦ୍ୟୋଗର ବରିଷ୍ଠ ପଦାଧିକାରୀମାନେ ଯୋଗ ଦେଇ ଆଲୋଚନାରେ ଅଂଶଗ୍ରହଣ କରିଥିଲେ ।

# ଓଡ଼ିଶାରେ ଡାଲିଜାତୀୟ ଫସଲର ଉତ୍ପାଦନ ବୃଦ୍ଧି ଆବଶ୍ୟକ ଓ ଉପାୟ

ଡକ୍ଟର ଦାମୋଦର ଲେଙ୍କା

ଡାଲିଭାତ-ଭୋଜିଭାତ । ଭାତ ସାଙ୍ଗକୁ ଟିକିଏ ଡାଲି ହେଲେ ମୁଠାଏ ଭଲ କରି ଖାଇ ହୁଏ । ଡାଲି ଶରୀରକୁ ପୁଷ୍ଟିସାର ଯୋଗାଏ - ଅତି ଉପକାରୀ । ପୁଷ୍ଟିସାରର ଶସ୍ତା ଉପାୟ - ଡାଲି । ଡାଲିରୁ ଏକ କି.ଗ୍ରା ପୁଷ୍ଟିସାର ପାଇଁ ଟ.୧୦୦ଙ୍କା ଧରା ଗଲେ ଏତିକି ପରିମାଣ ପୁଷ୍ଟିସାର ପାଇଁ ଅଣ୍ଡା, ଦୁଧ ଓ ମାଛ ପାଇଁ ଯଥାକ୍ରମେ ଟ.୨୦୦, ଟ.୩୦୦ ଓ ଟ.୪୫୦ ପଡ଼େ । ଡାଲି ସମସ୍ତଙ୍କୁ ଖାଇବାକୁ ମିଳେ ନାହିଁ । ବର୍ତ୍ତମାନ ଡାଲି ଦର ଏତେ ହେଲାଣି ଯେ ସମସ୍ତେ କିଣି ଖାଇବା ଅବସ୍ଥାରେ ନାହାନ୍ତି । ସରକାରୀ ଦର ଅନୁସାରେ ବଜାରରେ ବର୍ତ୍ତମାନ ବୁଟ ଡାଲି କିଲୋଗ୍ରାମ ପ୍ରତି ଟ.୧୮ରୁ ଟ.୨୦, ହରଡ଼ ଡାଲି ଟ.୨୨ରୁ ଟ.୩୨, ମୁଗ ଡାଲି ଟ.୧୮ରୁ ଟ.୨୧ ଓ ମସୁର ଡାଲି ଟ.୨୧ରୁ ଟ.୨୪ଙ୍କା । ଉତ୍ପାଦନ ହ୍ରାସ ପାଉଥିବାରୁ ଡାଲିଦର କ୍ରମେ ବଢ଼ି ବଢ଼ି ଯାଉଛି । ୧୯୮୦ ମସିହାରେ ବିରିଡାଲି କିଲୋ ଥିଲା ଟ.୪ଙ୍କା, ବର୍ତ୍ତମାନ ଟ.୨୦ଙ୍କା । ହରଡ଼ ଡାଲି ପନ୍ଦର ବର୍ଷ ତଳେ କିଲୋପ୍ରତି ଥିଲା ଟ.୬ଙ୍କା, ବର୍ତ୍ତମାନ ଟ.୩୨ଙ୍କା ।

ଆମ ଓଡ଼ିଶାର ପ୍ରୌଢ଼ସାମ୍ୟ ଲୋକ ସଂଖ୍ୟା ୩୧୫୬୭୯୫୧ । ଜଣକୁ ଦୈନିକ ଆବଶ୍ୟକ ୮୫ ଗ୍ରାମ ଡାଲି । ଏଣୁ ମୋଟ ଡାଲି ଆବଶ୍ୟକ ପରିମାଣ ୨୬୮୩.୨୭୫୮୫ ଟନ । ଆମର ଆମଦାନୀ ଆବଶ୍ୟକ ତୁଳନାରେ ବହୁତ କମ୍ । ଗୋଟା ଡାଲି ୧୦୦ କି.ଗ୍ରା. ଭାଜି ଭାଙ୍ଗିଲେ ୧୫ କି.ଗ୍ରା ଚୋପାଯାଏ । ଏଣୁ ମୋଟ ଦରକାର ଡାଲି ଦାନା ପରିମାଣ ୩୧୫୬.୭୯୫ ଟନ । ଓଡ଼ିଶାରେ ୧୯୭୦ ମସିହାରୁ ଆଜି ପର୍ଯ୍ୟନ୍ତ ଉତ୍ପାଦକତା ମାତ୍ର ୪୯୬ କି.ଗ୍ରା.କୁ ବଢ଼ିଛି । ଓଡ଼ିଶାରେ ଏହି ସମୟରେ ଡାଲି ଜାତୀୟ ଫସଲ ୧୫୭୧.୬୧ ହଜାର ହେକ୍ଟରକୁ ବୃଦ୍ଧି ପାଇଛି । ଏଣୁ ଆମର ଉତ୍ପାଦକତା କେତେ ବଢ଼ାଇଲେ ଆମର ଚାହିଦା ମେଣ୍ଟି ପାରିବ ଅତି ଚିନ୍ତାର ବିଷୟ । ଭାରତରେ ମୋଟ ଡାଲି ଉତ୍ପାଦନ ୧୦.୬୭ ନିୟୁତ ଟନ । ଏହା ଭାରତର ପ୍ରୌଢ଼ ସଂଖ୍ୟା ଅନୁସାରେ (୮୯.୯୦ x ୧୦⁶) ଦୈନିକ ମାତ୍ର ୩୭.୫୨ ଗ୍ରାମ । ଏଣୁ ଭାରତ ବାହାର ଦେଶରୁ ଏବଂ ଓଡ଼ିଶା ବାହାର ରାଜ୍ୟରୁ ଡାଲି ଆମଦାନୀ କରିବାକୁ ବାଧ ।

ଓଡ଼ିଶାରେ ମୁଗ, ବିରି, କୋଳଥ, ହରଡ଼, ବରଗୁଡ଼ି, ବୁଟ, ଚଣା, ମଟର ଓ ମସୁର ଇତ୍ୟାଦି ମୁଖ୍ୟ ଡାଲି ଜାତୀୟ ଫସଲ । ବୁଟ, ଚଣା, ମଟର, ମସୁର ଶୀତ ଦିନିଆ, ରବି ଋତୁ ଫସଲ । ମୁଗ, ବିରି, ହରଡ଼ ଉଭୟ ଖରିଫ ଓ ରବି ଋତୁ ଫସଲ । ଖରିଫ ଋତୁରେ ୨୦୦୧-୦୨ରେ ମୋଟ ୫୫୨.୩୩ ହଜାର ହେକ୍ଟର ଜମିରେ ଡାଲି ଜାତୀୟ ଫସଲ ଚାଷ ହୋଇଥିଲା । ରବି ଋତୁରେ ମୋଟ ୧୧୯୧.୨୭ ହଜାର ହେକ୍ଟର ଜମିରେ ଡାଲି ଜାତୀୟ ଫସଲ ଚାଷ ହୋଇଥିଲା । ଖରିଫ ଋତୁରେ ଉତ୍ପାଦକତା ୪୪୪ କି.ଗ୍ରା. ଓ ରବି ଋତୁରେ ୩୮୦ କି.ଗ୍ରା. । ରବି ଋତୁର ଫସଲ ମୁଖ୍ୟତଃ ମାଟିରେ ବର୍ଷା ଋତୁପରେ ରହୁଥିବା ବତର ଉପରେ ନିର୍ଭର କରିଥାଏ । ଆଶ୍ୱିନ-କାର୍ତ୍ତିକ-ମାର୍ଗଶିର ମାସ ବର୍ଷା ଉପରେ ଏହା ନିର୍ଭରଶୀଳ । ଏଣୁ ଖରିଫ ଓ ରବି ଋତୁରେ ମିଶି ମୋଟ ୧୭୪୩ ହଜାର ହେକ୍ଟର ଜମିରେ ଡାଲି ଜାତୀୟ ଫସଲ ଚାଷ ହେଉଥିଲେ ହେଁ ଉତ୍ପାଦକତା ୩୮୦-୪୦୦ କି.ଗ୍ରା.ରୁ ବେଶୀ ହେଉନାହିଁ । ଏହା ଗଭୀର ଚିନ୍ତାର ବିଷୟ । ଏଣୁ ଅଧିକ ଜମିରେ ଡାଲି ଜାତୀୟ ଫସଲ ଚାଷ କରି, ଫସଲର ଉତ୍ପାଦକତା ଖୁବ୍‌କମ୍‌ରେ ପ୍ରାୟ ୧୦୦୦ କି.ଗ୍ରା.କୁ ବୃଦ୍ଧି କରିବାକୁ ପଡ଼ିବ । ଆମର ମୋଟ ଉତ୍ପାଦନ ୧୧୯୧୨୭୦ ଟନ ହୋଇପାରିବ । ଆମ ସମସ୍ୟା କିଛି ମାତ୍ରାରେ ଲାଘବ ହେବ ।

### ଜଳବାୟୁ

ଓଡ଼ିଶାର ଜଳବାୟୁ ଉଷ୍ମ ଓ ଆର୍ଦ୍ର । ଶୀତ ଋତୁ ବେଶୀ ଦିନିଆ ନୁହେଁ କି ତାପମାନ ବେଶୀ କମ୍ ନୁହେଁ । ଏଣୁ ବିଭିନ୍ନ ପ୍ରକାର ଡାଲି ଜାତୀୟ ଫସଲ ଚାଷ ପାଇଁ ଅନୁକୂଳ ଅଟେ । ଆମର ହାରାହାରି ବାର୍ଷିକ ବୃଷ୍ଟିପାତ ୧୪୨୨ ମିଲିମିଟର । ଏହାର ୭୦-୭୫ ଭାଗ ବର୍ଷା ୪ ମାସରେ (ଆଷାଢ଼-ଆଶ୍ୱିନ) ମିଳିଥାଏ । ଏବଂ ରବି ଋତୁ ଡାଲି ଚାଷ ମୃତ୍ତିକା ବତର ଉପରେ ନିର୍ଭର କରି କମ୍ ବହୁତ ହୋଇଥାଏ । ଅଧିକ ବର୍ଷା ହେତୁ ମୃତ୍ତିକାରୁ ଯବକ୍ଷାରଜାନ ଓ ଅନ୍ୟାନ୍ୟ ଦ୍ରବୀଭୂତ ଉପାଦନା ଧୋଇ ହୋଇଯାଏ । କାଲସିଅମ୍ ଓ ମ୍ୟାଗ୍ନେସିଅମ୍ ଭଳି କ୍ଷାରୀ ଉତ୍ପାଦନ ଧୋଇ ହୋଇଯାଉଥିବାରୁ ମୃତ୍ତିକା ଅମ୍ଳୀ ହୋଇଯାଏ ।

ଅଧିକ ତାପମାନ ହେତୁ ମୃତ୍ତିକା ଜୈବିକ ଅଙ୍ଗାର ଜାରିତ ହୋଇ ନିମ୍ନ ପରିମାଣକୁ ହ୍ରାସ ପାଏ । ଏଣୁ ମୃତ୍ତିକା ପରିଚାଳନା ଉତ୍ପାଦନ ବୃଦ୍ଧି ଏକ ବଡ଼ ସମସ୍ୟା, ଜଳବାୟୁ ଓ ମୃତ୍ତିକା ବୟନ (ବାଲି, ପଟୁ ଓ କର୍ଦ୍ଦମ ପରିମାଣ) ଆମେ ବଦଳାଇ ପାରିବା ନାହିଁ । କେବଳ ଏହାକୁ ଖାପଖୁଆଇ ଆମର ଉତ୍ପାଦନ ପଦ୍ଧତି ବଦଳାଇ ପାରିବା ।

**୧. ଡାଲି ଜାତୀୟ ଫସଲ ଚାଷ ଜମି ପରିମାଣ ବଢ଼ିବ କେମିତି ?**

ବର୍ଷା ଋତୁରେ ମୁଗ, ବିରି, ହରଡ଼, କାନ୍ଦୁଲ, ବରଗୁଡ଼ି ଇତ୍ୟାଦି ଚାଷ କରାଯାଏ । ଶ୍ରାବଣ ଶେଷ ଓ ଭାଦ୍ରବ ଆରମ୍ଭରେ ଢିପଜମିରେ କୋଳଥ ବୁଣାଯାଏ । ବର୍ତ୍ତମାନ ମୋଟ ଜମିର ୪୨-୪୩ ଭାଗ ଢିପଜମି । ଏହାର ପ୍ରାୟ ୩୦ ଭାଗ ଜମି ଅତି ଢିପ କିସମର । ଏଥିରେ କୋଳଥ, ହରଡ଼, କାନ୍ଦୁଲ ଚାଷ କରାଯାଇ ପାରେ । ବିଆଳିଧାନ କାଟିସାରି ସେ ଜମିରେ ବିରି, ମୁଗ ବୁଣାଯାଏ । ସାରଦ ଧାନ କାଟିସାରି ମଧ୍ୟମ କିସମ ଜମିଯାଏ ହଳକରି ମୁଗ, ବିରି ଓ ଖରାଦିନିଆ ହରଡ଼ ଓ ବରଗୁଡ଼ି, ଚଣା, ବୁଟ ଚାଷ କରାଯାଏ ।

ଚାଷ ପଦ୍ଧତି ଦୁଇ ପ୍ରକାର । ସାଦା ଭଉଁରିଆ ବୁଣା ଓ ଧାଡ଼ି ବୁଣା । ଧାଡ଼ି ବୁଣା ଭଉଁରିଆ ବୁଣାଠାରୁ ଭଲ । କେତେକ ମଧ୍ୟମ ଓ ଖାଲ ଜମିରେ କାଦୁଆ ବତରରେ ମୁଗ, ବିରି, ମଟର, ମସୁର ମଧ ଛଟା ଯାଏ । ଛଟା ବୁଣା ଫସଲର ଉତ୍ପାଦକତା ହଳକରି ବୁଣା ଯାଉଥିବା ଡାଲି ଫସଲର ଉତ୍ପାଦକତାଠାରୁ କମ୍ । ଛଟା ବୁଣା ଫସଲର ଉତ୍ପାଦକତା, ଏ ଫସଲ ପାଇଁ ଫସଫେଟ ପ୍ରୟୋଗକରି ଓ ଫୁଲବେଳେ ଯବକ୍ଷାରଜାନ ସ୍ପ୍ରେ କରି ବୃଦ୍ଧି କରାଯାଇଥାଏ । କେନ୍ଦୁଝର ଗବେଷଣା କେନ୍ଦ୍ରରେ ହୋଇଥିବା ଛଟା ମଟରରେ ପରୀକ୍ଷା କରି ଏହାର ଉତ୍ପାଦକତା ହେକ୍ଟର ପ୍ରତି ୧୫୦୦ କି.ଗ୍ରା. ହୋଇପାରିବ ବୋଲି ଜଣାପଡ଼ିଛି ।

ଧାନ ଚାଷ ପରେ ଧାନ କାଟି ମୃତ୍ତିକା ବତର ଅନୁସାରେ ଚାଷ କରି ମୁଗ, ବିରି ବୁଣାଯାଏ । ପାଗ ଠିରିକି ଗଲେ ବିଲ ପଡ଼ିଆ ପଡ଼େ । ଏସବୁ ଫସଲକୁ ବୃଷ୍ଟିପୁଷ୍ଟ ଫସଲ ରୂପେ ଗ୍ରହଣ କରାଯାଉଥିବାରୁ ଏହାର ଉତ୍ପାଦକତା ସାଧାରଣତଃ କମ୍ ।

ଆମର ଜଳସେଚନ ଧାନଚାଷ ମୁଖୀ । ଯେଉଁ ସବୁ ଅଞ୍ଚଳରେ ଜଳସେଚନର ସୁବିଧା ଅଛି ସେଠି କେବଳ ଧାନ ଚାଷ ହେତୁ ଡାଲି ଜାତୀୟ ଫସଲଚାଷ ବୁଡ଼ି ଗଲାଣି । ହୀରାକୁଦ ଜଳସେଚିତ ଅଞ୍ଚଳ, କଟକ ଓ ପୁରୀ ଜିଲ୍ଲାର ତ୍ରିକୋଣ ଭୂମି ଅଞ୍ଚଳ ଏହାର ଉଦାହରଣ । ଏ ଅଞ୍ଚଳରେ ଆଗରୁ ଭଲ ମୁଗ, ବିରି, ଚଣା ହେଉଥିଲା । ଏବେ ଏସବୁ ବୁଡ଼ି ଗଲାଣି । ହୀରାକୁଦ ଜଳସେଚିତ ଅଞ୍ଚଳର ଆଟ ଜମିରେ ମଧ ହରଡ଼, କୋଳଥ, ମୁଗ, ବିରି ଚାଷ ନାହିଁ । ଏଣୁ ଉଭୟ କୃଷି ଓ ଜଳସେଚନ ବିଭାଗ ଅଧିକାରୀଙ୍କ ସମନ୍ୱୟରେ ଦୁଇଟି ଧାନ ଫସଲ ମଝିରେ ମିଳୁଥିବା ଅଢ଼େଇ ମାସରୁ ତିନି ମାସ ସମୟ ମଧ୍ୟରେ ଗୋଟିଏ ବିରି ବା ମୁଗ ଫସଲ ନେବା ପାଇଁ ବ୍ୟବସ୍ଥା ହେବା ଆବଶ୍ୟକ ।

ଢିପ ଜମିରେ ଧାନ ଚାଷ ନକରି ସେଠି, ହରଡ଼, କୋଳଥ, ବିରି, ମୁଗ ଚାଷ କରିବା ଆବଶ୍ୟକ । ପରୀକ୍ଷା କରି ଦେଖାଯାଇଛି ଯେ, ୯୦-୯୫ ଦିନିଆ ଧାନ କାଟି ସେ ବିଲରେ କୋଳଥ ଚାଷ କଲେ ଏବଂ ଉପଯୁକ୍ତ ଯତ୍ନ ନେଲେ ହେକ୍ଟର ପିଛା ୧୨୦୦-୧୮୦୦ କି.ଗ୍ରା. କୋଳଥ ଅମଳ ହୋଇପାରିବ ।

ଓଡ଼ିଶାର ଢିପଜମି ଓ ମଝିଆଳି ଜମି ପରିମାଣ ପ୍ରାୟ ୪୨୩୦ ହଜାର ହେକ୍ଟର । ଢିପଜମିର ଶତକଡ଼ା ୩୦ ଭାଗ ଓ ମଝିଆଳି ଜମିର ଶତକଡ଼ା ୬୦ ଭାଗ ଜମିରେ ବିଭିନ୍ନ ଡାଲି ଜାତୀୟ ଫସଲ ଚାଷ କଲେ ମୋଟ ଡାଲି ଜାତୀୟ ଫସଲର ଜମି ପରିମାଣ ବୃଦ୍ଧି ପାଇପାରିବ । ଏହି ଜମି ପରିମାଣ ୨୮ ଲକ୍ଷ ହେକ୍ଟର ହେଲେ ଏବଂ ହେକ୍ଟରକୁ ୧ ଟନ ଅମଳ ହେଲେ ଆମକୁ ୨୮ ଲକ୍ଷ ଟନ ଡାଲି ମିଳିପାରିବ । ଏଥିରୁ ଫାଳ ଡାଲି ପ୍ରାୟ ୨୩ ଲକ୍ଷ ଟନ ହେବ ।

**୨. ଉତ୍ପାଦକତା ବୃଦ୍ଧି କରିବା କେମିତି ?**

ଏହା ଉପଯୁକ୍ତ ପରିମାଣ ବିହନ ଓ ଫସଲ ପରିଚାଳନା ଦ୍ୱାରା ହୋଇପାରିବ ।

(କ) ଉନ୍ନତ ମାନର ବିହନ ବ୍ୟବହାର

ସ୍ୱାଧୀନତା ପରେ ଓଡ଼ିଶାରେ ଡାଲି ଜାତୀୟ ଫସଲର ଉନ୍ନତ କିସମ ଉଦ୍‌ଭାବନ ପାଇଁ ଧ୍ୟାନ ଦିଆଯାଇ ନାହିଁ । ଏଣୁ ଖରିଫ ଓ ରବି ଋତୁ ପାଇଁ ଅଧିକ ଅମଳକ୍ଷମ କିସମ ନାହିଁ । ବର୍ତ୍ତମାନ ବର୍ଷା ଦିନ ପାଇଁ ଅନୁମୋଦିତ କିସମ ବର୍ଷାଦିନରେ ଅଧିକ ବୃଷ୍ଟି ରହଣୀ ଓ ଶୀତ ଦିନିଆ କିସମ ଶୀତ ରହଣୀ ନୁହେଁ । ଉପଯୁକ୍ତ ପରିମାଣର ବିହନ ବ୍ୟବହାର କଲେ ମୁଗ, ବିରି, କୋଳଥ ଫସଲରୁ ୧ ଟନ ଓ ହରଡ଼, କାନ୍ଦୁଲ, ଚଣା, ମଟର, ବୁଟ ଫସଲର ଉତ୍ପାଦକତା ହେକ୍ଟର ପିଛା ୧.୫ ଟନ କରାଯାଇପାରିବ । କିନ୍ତୁ ବର୍ତ୍ତମାନ ଉତ୍ପାଦକତା ମାତ୍ର ୩୮୦-୪୦୦ କି.ଗ୍ରା. । ପ୍ରତ୍ୟେକ ଫସଲ ପାଇଁ ଲଗାଇବା/ବୁଣିବା ଦୂରତା ଅଙ୍କୁରୋଦ୍‌ଗମ ହାର, ଗଛ ପ୍ରତି ଛୁଇଁ ସଂଖ୍ୟା ଓ ଛୁଇଁରେ ଦାନା ସଂଖ୍ୟା ଓ ଦାନାର ଓଜନ ଅନୁସାରେ ବିହନ ପରିମାଣ ବ୍ୟବହାର କରାଗଲେ ଅଥବା ଅନୁମୋଦିତ ପରିମାଣ ବିହନ ବ୍ୟବହାର କଲେ ଅମଳ ବୃଦ୍ଧି ପାଇବ । ପ୍ରତି କୃଷି ଜଳବାୟୁ ଅଞ୍ଚଳ ପାଇଁ ଏହି ପରିମାଣ ଫସଲ ଅନୁସାରେ ଭିନ୍ନ ଭିନ୍ନ ହୋଇଥାଏ ।

(ଖ) ମୃତ୍ତିକାର ଉର୍ବରତା ବୃଦ୍ଧି

ଜୈବିକ ଅଙ୍ଗାର ଅଂଶ ବୃଦ୍ଧି - ଆମ ମୃତ୍ତିକାର ଜୈବିକ ଅଙ୍ଗାର ମାତ୍ରା ଖୁବ୍ କମ୍ । ମାତ୍ର ୦.୨୮-୦.୩୧% । ଏହାକୁ ଆମେ ଆମର ଜଳବାୟୁ

ଦୃଷ୍ଟିରୁ ବେଶୀ ବଢ଼ାଇ ନପାରିଲେ ମଧ୍ୟ ଦ୍ୱିଗୁଣ କରି ପାରିବା । ଏହା ଦେହର ମାଂସ ଭଳି । ଆବଶ୍ୟକ ସ୍ଥଳେ ସବୁଜ ସାର ଚାଷ କରି ମାଟିରେ ମିଶାଇ ମାଟିର ଜୈବିକ ଅଙ୍ଗାର ବୃଦ୍ଧି କରାଯାଇପାରିବ । ଢିପଜମିରେ ଛଣ ପଟ, ବରଗୁଡ଼ି ବୁଣି ସବୁଜ ସାର କରି ସେ ଜମିରେ କୋଳଥ ହରଡ଼, ବିରି, ମୁଗ ବୁଣା ଯାଇ ଉତ୍ପାଦକତା ବୃଦ୍ଧି କରାଯାଇପାରିବ ।

### ୩. ଉପଯୁକ୍ତ ପରିମାଣ ସାର ପ୍ରୟୋଗ ଓ ଜଳସେଚନ

ଆମେ ବିଭିନ୍ନ ଡାଲି ଜାତୀୟ ଫସଲକୁ ନିପାଣିଆ ଫସଲ ରୂପେ ଗ୍ରହଣ କରିଥାଉଁ ଏବଂ ଅତି ଢିପ ଓ ଅନୁର୍ବର ଜମିରେ ବୁଣିଥାଉ । ଏଥିରେ ପ୍ରାୟ କେହି ସାର ଦିଅନ୍ତି ନାହିଁ । ଧାରଣା - ଡାଲି ଜାତୀୟ ଫସଲ ଚେରରେ ଭାତୁଡ଼ି ଅଛି, ଭାତୁଡ଼ି ଭିତରେ ରାଇଜୋବିଅମ ବାକ୍‌ଟେରିଆ ଅଛି । ସେମାନେ ସହଜୀବିତା ହେତୁ ବାୟୁମଣ୍ଡଳରୁ ଯବକ୍ଷାରଜାନ ନିବନ୍ଧିତ କରି ମାଟିର ଉର୍ବରତା ବଢ଼ାଇବେ । ଏଣୁ ସାର ଦେବା ଅନାବଶ୍ୟକ । ଡାଲି ଜାତୀୟ ଫସଲରେ ଭାତୁଡ଼ି ରହୁଥିବା ହେତୁ ହେକ୍ଟର ପିଛା ୩୦-୫୦ କି.ଗ୍ରା. ଯବକ୍ଷାରଜାନ ନିବନ୍ଧିତ ହେଉଥିଲେ ହେଁ ବିଭକ୍ତ ଡାଲି ଜାତୀୟ ଫସଲ ମୃତ୍ତିକାରୁ ଏହାର ଅନେକ ଗୁଣ ବେଶୀ ଯବକ୍ଷାରଜାନ ଫସଫରସ୍, ପୋଟାସ, କାଲସିଅମ୍, ମଲିବିଡିନମ ଆଦି ଶୋଷି ମାଟିକୁ କ୍ରମେ ଅନୁର୍ବର କରନ୍ତି ।

ମାଟିରେ ଏଥିପାଇଁ ଆବଶ୍ୟକ ସଂଖ୍ୟକ ସହଜୀବି ରାଇରୋଜିଅମ ରହିବା ଆବଶ୍ୟକ । ସହଜୀବିତା ସ୍ଥାପନ କରିବା ପର୍ଯ୍ୟନ୍ତ ସେମାନଙ୍କୁ ମଧ୍ୟ କିଛି ପରିମାଣ ଯବକ୍ଷାରଜାନ ଆବଶ୍ୟକ । ଗଛ ପ୍ରତି ଭାତୁଡ଼ି ସଂଖ୍ୟା ଓ ତା'ର ଗୁଣ ବୃଦ୍ଧି ଲାଗି ଆବଶ୍ୟକ ଫସଫେଟ୍ ସାର । ଫସ୍‌ଫେଟ୍ ସାର ନଦେଲେ ଚେରରେ ଭାତୁଡ଼ି ହେବନି, ହେଲେବି ସେମାନେ କାର୍ଯ୍ୟକ୍ଷମ ହେବେନି ଇତ୍ୟାଦି ସମସ୍ୟା ରହିବ । ଏଣୁ ଉତ୍ପାଦକତା ହ୍ରାସ ପାଇବ । ଏଣୁ ଡାଲି ଜାତୀୟ ଫସଲ ପାଇଁ ଉପଯୁକ୍ତ ବ୍ୟାକ୍ଟେରିଆ ଟୀକା ଦେଇ ଏବଂ ଯଥେଷ୍ଟ ଫସ୍‌ଫେଟ୍ ସାର ଦେଇ ବୁଣିବା ଆବଶ୍ୟକ । ଗଛର ଯବକ୍ଷାରଜାନ, ଫସ୍‌ଫରସ୍ ଓ ପୋଟାସର ଚାହିଦା ବେଶୀ ଫୁଲ ଧରିବା ବେଳେ । ଏଣୁ ଅନେକ ସ୍ଥଳେ ଡାଲି ଜାତୀୟ ଫସଲ ଫୁଲ ଧରିବା ସମୟରେ ୟୁରିଆ ଦ୍ରବଣ ସ୍ପ୍ରେ କରାଯାଏ । ଗଛ ଆବଶ୍ୟକ କରୁଥିବା ଫସ୍‌ଫେଟ୍ ଉପାଦାନ ଗଛ ଉଠିବାର ମାସକ ଭିତରେ ସଂଗ୍ରହ କରିଥାଏ । ଏଣୁ ବୁଣିବାବେଳେ ସବୁ ଫସ୍‌ଫେଟ୍ ସାର ପ୍ରୟୋଗ ଆବଶ୍ୟକ । ଆମ ମୃତ୍ତିକା ପାଇଁ ଅନୁମୋଦିତ ପରିମାଣ ହେକ୍ଟର ପିଛା ୨୦ କି.ଗ୍ରା. ଯବକ୍ଷାରଜାନ, ୪୦ କି.ଗ୍ରା. ଫସ୍‌ଫେଟ୍ ଓ ୪୦ କି.ଗ୍ରା. ପୋଟାସ ଓ ୧୦ କି.ଗ୍ରା. ମଲିବ୍‌ଡିନମ୍ । କିନ୍ତୁ କେହି କିଛି ସାର୍ ପ୍ରୟୋଗ କରନ୍ତି ନାହିଁ ।

ବୁଣାଧାନ କାଟି ମୁଗ ଫସଲ କରି ଦେଖାଯାଇଛି ଯେ ଏକ କ୍ୱିଣ୍ଟାଲ ମୁଗ ପାଇଁ ଫସଲ ୭ କି.ଗ୍ରା ଯବକ୍ଷାରଜାନ, ୧.୨ କି.ଗ୍ରା ଫସଫରସ୍ ଓ ୩.୨ କି.ଗ୍ରା. ପୋଟାସିଅମ୍ ଓ ୨୫ କି.ଗ୍ରା. କାଲିସିଅମ୍ ଶୋଷିଥାଏ । ଏରୁ ଉତ୍ପାଦନର ଉପଯୋଗ ଦକ୍ଷତା ଅନୁସାରେ ଏସବୁ ସାର ପ୍ରୟୋଗ ଆବଶ୍ୟକ ।

(ଖ) ଚୂନ ପ୍ରୟୋଗ

ଆମ ମାଟି ଅମ୍ଳୀ ମାଟି । ଅମ୍ଳୀ ମାଟିରେ ରାଇଜୋବିଅମ୍ ବେଶି ବଢ଼େ ନାହିଁ କି କାର୍ଯ୍ୟକ୍ଷମ ହୁଏ ନାହିଁ । ଏଣୁ ଆମର ମାଟିର ଅମ୍ଳତା ହ୍ରାସ ପାଇଁ ପ୍ରତି ଦୁଇ ବର୍ଷରେ ଥରେ ହେକ୍ଟର ପ୍ରତି କାଗଜକଳ ମଣ୍ଡ ପ୍ରୟାଗକଲେ ଆବଶ୍ୟକ ପରିମାଣ କାଲସିଅମ୍ ଓ ମାଗ୍ନେସିଅମ୍ ମିଳିପାରିବ ।

(ଗ) ଆମ ମୃତ୍ତିକା ଅମ୍ଳୀ ହୋଇଥିବାରୁ ଏହାର ଫସଫରସ୍ ବାନ୍ଧି ରଖିବାଗୁର ଅଧିକା । ଏଣୁ ଫସ୍‌ଫରସ୍ ଦ୍ରବୀଭୂତକାରୀ ବ୍ୟାକ୍ଟେରିଆ ସାହାଯ୍ୟରେ ପ୍ରୟୋଗ କରାଯାଉଥିବା ଫସଫେଟ୍ ପରିମାଣର ସୁଲଭତା ବୃଦ୍ଧି କରାଯାଇପାରିବା । ସହଜୀବିତା ସୃଷ୍ଟି କରି ବଢୁ ଥିବା କବକ ସାହାଯ୍ୟରେ ମଧ୍ୟ ଉତ୍ପାଦକତା ବୃଦ୍ଧି କରାଯାଇପାରିବ । ପୁରୀ ଜିଲ୍ଲାର ବାଘମାରୀ ଓ ଫୁଲବାଣୀର ଅମ୍ଳୀ ମୃତ୍ତିକାରେ ଫସଫରସ୍ ଦ୍ରବୀଭୂତକାରୀ ବ୍ୟାକ୍ଟେରିଆ ଓ ସହିଜୀବିତା ସୃଷ୍ଟି କରି କବକ ପ୍ରୟୋଗ କରି ମୁଗ ଫସଲର ଅମଳ ୧ ଟନରୁ ବେଶି ହୋଇ ପାରିବ ବୋଲି ପରୀକ୍ଷାରୁ ଜଣାପଡ଼ିଛି । ଏହାଦ୍ୱାରା ଫସଲର ଯବକ୍ଷାରଜାନ ନିବନ୍ଧନ ଶକ୍ତି ମଧ୍ୟ ବୃଦ୍ଧି ପାଉଥିବାର ଜଣାପଡ଼ିଛି ।

### ୪. ଜଳସେଚନ

ବର୍ଷାଋତୁରେ ଚାଷ କରାଯାଉଥିବା ଫସଲ ପାଇଁ ଜଳସେଚନ ଆବଶ୍ୟକ ନାହିଁ । ଦରକାର ନିଗିଡ଼ା ଉର୍ବର ଜମି । ଶୀତ ଓ ଗ୍ରୀଷ୍ମ ଦିନ ଫସଲ ପାଇଁ ଜଳସେଚନ ଆବଶ୍ୟକ । ଚିପିଲିମା ଗବେଷଣା କେନ୍ଦ୍ରରେ ହୋଇଥିବା ପରୀକ୍ଷାରୁ ଜଣାପଡ଼େ ଯେ, ଧାନ ପରେ ମୁଗ, ବିରି, ବୁଟ, ଚଣା, ହରଡ଼ ଇତ୍ୟାଦି ରବି ଫସଲରେ ବୁଟ ଓ ହରଡ଼ ସବୁଠାରୁ ବେଶୀ ଅମଳ ଦାୟି । ଶୀତଦିନିଆ ଫସଲ ପାଇଁ ୧ ଏବଂ ଖରାଦିନିଆ ଫସଲ ପାଇଁ ୩-୪ ଜଳସେଚନ ଆବଶ୍ୟକ । ଖରାଦିନେ ଫୁଲ କାଖେଇବା ଓ ଫୁଲଧରିବା ବେଳେ ଏବଂ ଛୁଇଁ ପାକଳ ହେବା ବେଳେ ପାଣିର ଆବଶ୍ୟକତା ବେଶୀ । ଏହି ସମୟରେ ଜଳୀୟ ଅଂଶ ଅଭାବ ହେଲେ ଅନେକ ଫୁଲ ଝଡ଼ିଯାଏ, ଛୁଇଁରେ ଦାନା ବଢ଼େ ନାହିଁ ଏବଂ ଦାନାର ଓଜନ କମିଯାଏ । ଏଣୁ ଉତ୍ପାଦକତା ହ୍ରାସ ପାଏ । ଝାଇଁ ମୁଗ ମଧ୍ୟ ଜଳସେଚନ ହେତୁ ଅଧିକ ଅମଳ ଦିଏ ।

### ୫. ରୋଗ ଓ ପୋକ ନିୟନ୍ତ୍ରଣ

ଡାଲି ଜାତୀୟ ଫସଲରେ ସାହେବି ରୋଗ ଏକ ଭୂତାଣୁ ଜନିତ ରୋଗ । ସାହେବୀ ରୋଗ ବିହନ ବିଶୋଧନ ଓ ସାହେବି ଉପାଡ଼ି ପୋଡ଼ି ଦେବାଦ୍ୱାରା ହ୍ରାସ ପାଇଥାଏ । ଏହାଛଡ଼ା ପ୍ରପୋଡ଼ା ରୋଗ

ମଧ୍ୟ ଏକ ଅନିଷ୍ଟକାରୀ ରୋଗ । ଏହା ଉପଯୁକ୍ତ ରୋଗମାରୀ ବ୍ୟବହାର କରି ଦମନ କରାଯାଇଥାଏ ।

ଜଉପୋକ - ଏହା ମୁଗ, ବିରି, ହରଡ଼, ଶିମ୍ବ, ମଟର ବରଗୁଡ଼ି ଓ ଅନ୍ୟାନ୍ୟ ଛୁଇଁ ଜାତୀୟ ଫସଲରେ ଦେଖାଯାଏ ।

ହରଡ଼ରେ - ହରଡ଼ ଛୁଇଁ ବିନ୍ଧାଣଶଲଭ, ସ୍ଫୋଟନ ଭୃଙ୍ଗ, ଛୁଇଁ ଶୋଷକ କୀଟ, ଛୁଇଁ ବିନ୍ଧା ମାଛି ।

ମୁଗରେ - ମୁଗ ଛୁଇଁ ବିନ୍ଧା କୀଟ ।

ଶିମ୍ବରେ - ଶିମ୍ବଫଳ ବିନ୍ଧାକୀଟ, ଶିମ୍ବଶୋଷକ କୀଟ

ବୁଟରେ - ବୁଟ ଛୁଇଁ ବିନ୍ଧାପୋକ ।

ମଟରରେ - ମଟର ପତ୍ର ସୁଡ଼ଙ୍ଗକାରୀ, ମଟର ଛୁଇଁ ବିନ୍ଧା ପୋକ, ମଟର ଘୋଡ଼ା ପୋକ ।

ବରଗୁଡ଼ିରେ - ବରଗୁଡ଼ି କାଣ୍ଡ ମାଛି, କର୍ତ୍ତକ କୀଟ ।

ଇତ୍ୟାଦି ଅନିଷ୍ଟକାରୀ କୀଟ । ଏମାନଙ୍କୁ ଆବଶ୍ୟକ କୀଟ ମାରି ସ୍ପ୍ରେ କରି ଏବଂ ଫସଲ କିଆରି ସଫାରଖି ଦମନ କରାଯାଇପାରେ । ସମନ୍ୱିତ କୀଟ ନିୟନ୍ତ୍ରଣ ପ୍ରଣାଳୀ ଅବଲମ୍ବନ ସବୁଠୁ ଭଲ । ସ୍ଫୋଟକ ଭୃଙ୍ଗ (Blister Beetle) ଅନେକ ପ୍ରକାର ଫସଲକୁ ଆକ୍ରମଣ କରି ଗଛର ଫୁଲଗୁଡ଼ିକୁ ନଷ୍ଟ କରି ଦିଏ । ଏ ଭୃଙ୍ଗ ସବୁ ପ୍ରକାର ଛୁଇଁ ଜାତୀୟ ଫସଲର କ୍ଷତି କରେ । ସକାଳ ବେଳା ଟିଣେ ପାଣିରେ ଅଳ୍ପ କିରୋସିନି ପକାଇ ଏ ଭୃଙ୍ଗଗୁଡ଼ିକୁ ଧରି ସେ ପାଣିରେ ପକାଇ ଦେଲେ ଶୀଘ୍ର ମରିଯାନ୍ତି ।

୧୫୩, ନୂଆସାହି
ଶିରିପୁର, ଭୁବନେଶ୍ୱର

# ଜଳକର ଆଦାୟ ଉପରେ ଅର୍ଥମନ୍ତ୍ରୀଙ୍କ ଗୁରୁତ୍ୱ ଆରୋପ

ଚଳିତ ଖରିଫ୍ ଓ ରବିଋତୁରେ ୪୦ କୋଟି ଟଙ୍କା ଜଳକର ଆଦାୟ କରିବା ଉପରେ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ ଗୁରୁତ୍ୱ ଆରୋପ କରିଛନ୍ତି ।

ଗତ ଅଗଷ୍ଟ ୧୦ ତାରିଖ ଦିନ ଅପରାହ୍ନରେ ସଚିବାଳୟଠାରେ ଅନୁଷ୍ଠିତ ଏକ ସମୀକ୍ଷା ବୈଠକରେ ମନ୍ତ୍ରୀ ଶ୍ରୀ ଘଡାଇ ଅଧ୍ୟକ୍ଷତା କରି ଚାଷୀମାନଙ୍କଠାରୁ ଜଳକର ଯେପରି ସୁବିଧାରେ ଆଦାୟ କରାଯାଇପାରିବ, ସେଥିପାଇଁ ସମସ୍ତ ଅଫିସରଙ୍କର ଦୃଷ୍ଟି ଆକର୍ଷଣ କରିଥିଲେ । ଜଳକର ଆଦାୟ କ୍ଷେତ୍ରରେ ବିଭିନ୍ନ ସମସ୍ୟାକୁ ଆଖି ଆଗରେ ରଖି ଏହାକୁ ସରଳୀକରଣ କରିବା ପାଇଁ ସେ ମତ ଦେଇଥିଲେ ।

ଏହି ବୈଠକରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ ଯୋଗ ଦେଇ ରାଜସ୍ୱ, କୃଷି ଓ ଜଳ ସଂପଦ ବିଭାଗର ସମ୍ମିଳିତ ଉଦ୍ୟମରେ ତଦାରଖ କରାଯାଇ ଜଳସେଚିତ ହେଉଥିବା ଜମିଗୁଡ଼ିକ ଆକଳନ କରିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ଗ୍ରାମଓ୍ୱାରୀ ଜଳସେଚିତ ହେଉଥିବା ଜମିର ପରିମାଣ, ନକ୍ସା ଓ କେଉଁ ଜଳ ପ୍ରକଳ୍ପ ମାଧ୍ୟମରେ ଜମିଗୁଡ଼ିକ ଜଳସେଚିତ ହେଉଛି, ତାହାର ସମସ୍ତ ତଥ୍ୟ ଜଳ ସଂପଦ ବିଭାଗ ରାଜସ୍ୱ ବିଭାଗକୁ ତୁରନ୍ତ ଦେବା ପାଇଁ ବୈଠକରେ ସ୍ଥିର କରାଯାଇଥିଲା । ଜିଲ୍ଲାପାଳମାନେ ଜିଲ୍ଲାସ୍ତରୀୟ ଜଳ ସଂପଦ ଅଧିକାରୀମାନଙ୍କୁ ନେଇ ଏ ସଂକ୍ରାନ୍ତରେ ସବିଶେଷ ଆଲୋଚନା କରି ତୁରନ୍ତ ଜଳସେଚିତ ଜମି ଆକଳନ କରିବା ପାଇଁ ତହସିଲଦାର, ଜଳସେଚନ ବିଭାଗର ସହକାରୀ ଯନ୍ତ୍ରୀଙ୍କୁ ନିୟୋଜିତ କରିବା ଉପରେ ବୈଠକରେ ମତ ପ୍ରକାଶ ପାଇଥିଲା ।

ଜଳ ସଂପଦ ମନ୍ତ୍ରୀ ଶ୍ରୀ ରବି ନାରାୟଣ ନନ୍ଦ ଜଳକର ଆଦାୟକୁ ତ୍ୱରାନ୍ୱିତ କରିବା ସହିତ କେନାଲ ମରାମତି କାର୍ଯ୍ୟ ଖୁବ୍‌ଶୀଘ୍ର କରାଯିବ ବୋଲି କହିଥିଲେ ।

ଏହି ବୈଠକରେ ଅନ୍ୟମାନଙ୍କ ମଧ୍ୟରେ ଅର୍ଥ ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ୟୁ.ଶରତଚନ୍ଦ୍ରନ୍, କୃଷି ବିଭାଗ ପ୍ରମୁଖ ଶାସନ ସଚିବ ଶ୍ରୀ ଅର୍ଦ୍ଧେନ୍ଦୁ ଶେଖର ଷଡଙ୍ଗୀ, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ରଂଗଲାଲ ଜାମୁଦା, ଅର୍ଥ ବିଭାଗ ଅତିରିକ୍ତ ଶାସନ ସଚିବ ଶ୍ରୀ କେ.ସି. ବଡୁ, ଜଳ ସଂପଦ ବିଭାଗ ଅତିରିକ୍ତ ଶାସନ ସଚିବ, ଜଳ ସଂପଦ ମୁଖ୍ୟଯନ୍ତ୍ରୀ ପ୍ରମୁଖ ଯୋଗ ଦେଇ ସେମାନଙ୍କର ସୁଚିନ୍ତିତ ମତାମତ ପ୍ରଦାନ କରିଥିଲେ ।

# ଆଦିବାସୀ କନ୍ଧ ସମ୍ପ୍ରଦାୟର ସାଂସ୍କୃତିକ ପରମ୍ପରା ଓ ଝାଗିଡ଼ି ଯାତ୍ରା

ବିଦ୍ୟାଧର ବାରିକ

**ଉ**ତ୍ତର ଓ ପଶ୍ଚିମ ଓଡ଼ିଶାରେ ବସବାସ କରୁଥିବା ଆଦିବାସୀମାନଙ୍କ ମଧ୍ୟରେ କନ୍ଧ ସମ୍ପ୍ରଦାୟ ଅନ୍ୟତମ । ଓଡ଼ିଶାର କୋରାପୁଟ, କଳାହାଣ୍ଡି, ଫୁଲବାଣୀ, କନ୍ଧମାଳ, କେଉଁଝର, ସୁନ୍ଦରଗଡ଼ ଓ ମୟୂରଭଞ୍ଜ ଆଦି ଜିଲ୍ଲାମାନଙ୍କରେ ବସବାସ କରୁଥିବା କନ୍ଧମାନଙ୍କ ମଧ୍ୟରୁ ଫୁଲବାଣୀ ଜିଲ୍ଲାର କନ୍ଧ ସଂସ୍କୃତି ଅତି ପ୍ରାଚୀନ । ସେମାନଙ୍କର ସଂସ୍କୃତି ଓ ଭାଷାଗତ ବୈଶିଷ୍ଟ୍ୟ ସମାନ ନଥିଲେ ମଧ୍ୟ ବାରଟି ଜାତିର କନ୍ଧ ଏହି ଜିଲ୍ଲାରେ ଦେଖାଯାଆନ୍ତି । ପଙ୍ଗଲ କନ୍ଧ, ଗଣ୍ଡ କନ୍ଧ, ବଖଡ଼ କନ୍ଧ, ଶବର କନ୍ଧ, ସୌରା କନ୍ଧ, ଜିମ୍ଦାରୀ କନ୍ଧ, ବେନିଆ କନ୍ଧ, ବର୍ମା କନ୍ଧ, ହରିଆ କନ୍ଧ, କୁଟିଆ କନ୍ଧ ଓ ଲେଙ୍ଗୁଟିଆ କନ୍ଧ ଇତ୍ୟାଦି । ସେମାନଙ୍କର ସଂସ୍କୃତି ଆଦିବାସୀ ସଂସ୍କୃତି ଓ ମାତୃଭାଷା 'କୁଇ' । କୁଇ ଶବ୍ଦର ଅର୍ଥ କନ୍ଧ, ଅର୍ଥାତ୍ କୁଇ ଭାଷା କନ୍ଧ ଭାଷା ଭାବେ ପ୍ରଚଳିତ ।

ଏତଦ୍‌ବ୍ୟତୀତ ଫୁଲବାଣୀରୁ ଲାଇପଡ଼ା ମଧ୍ୟରେ ବସବାସ କରୁଥିବା କନ୍ଧଙ୍କୁ ବର୍ମା କନ୍ଧ, ଖଜୁରୀପଡ଼ା ଓ ଲାଇନପଡ଼ା ମଧ୍ୟରେ ଥିବା କନ୍ଧଙ୍କୁ ହରିଆ କନ୍ଧ, ବେଲ ଘର ଓ କୋଟଗଡ଼ରେ ଥିବା କନ୍ଧଙ୍କୁ ପାଙ୍ଗଲ କନ୍ଧ ଏବଂ ବୌଦ୍ଧ ଅଞ୍ଚଳରେ ବସବାସ କରୁଥିବା କନ୍ଧଙ୍କୁ ପାଙ୍ଗଲ କନ୍ଧ ମଧ୍ୟ କୁହାଯାଏ । କନ୍ଧମାନେ ମୁଖ୍ୟତଃ ହିନ୍ଦୁ ଧର୍ମାବଲମ୍ବୀ କିନ୍ତୁ ପର୍ବପର୍ବାଣିରେ ତାରତମ୍ୟ ଥାଏ । ସେମାନେ ବୈଶାଖ ମାସରେ 'ଝାଗୁଡ଼ି ଜାଲା', ବା ଜୁଆର ଡଙ୍ଗି କୁହାଯାଏ । ଜ୍ୟେଷ୍ଠ ମାସରେ ଜ୍ୟେଷ୍ଠ ପୂଜା, ସୁଧୁଗୁଷ୍ଟି ଓ ମାଟୁ ପର୍ବ, ଆଷାଢ଼ରେ ବର୍ଷା ଦେବତା, ଧାନତଳି ପୂଜା, ଶ୍ରାବଣରେ ଗାଈ ଗୋରୁ ପୂଜା 'ପୁନି', ଭାଦ୍ରବରେ ରୂଜୀ, ନୂଆଖାଇ, ଆଶ୍ୱିନରେ ଖଣ୍ଡା, ଧନୁଶର, ଟାଙ୍ଗି ଓ ଡ୍ରମୁରୀ ପୂଜା, ଫୁଡୁରା ପୂଜା ଆଦି । କାର୍ତ୍ତିକରେ ବାଡ଼ି ପୂଜା, ମାର୍ଗଶିରରେ କ୍ଷେତପୂଜା, ଲକ୍ଷ୍ମୀ ଚୁଡ଼ି ପୂଜା ଓ ଡାଲଖାଇ, ପୌଷରେ ବଡ଼ରାବାଲ ପୂଜା, ପୁଷ୍ ପୁନେଇଁ, ମାଘରେ ପର୍ବତ ପୂଜା ପିତାବଳୀ ଗୁଡ଼ି ପୂଜା, ଛାଡ଼ଖାଇ, ଫାଲଗୁନ୍‌ରେ ମଣ୍ଡଳୀ ପୂଜା, ସବୁଠାରୁ ତାତ୍ପର୍ଯ୍ୟପୂର୍ଣ୍ଣ ଚୈତ୍ର ପରବ । ଧର୍ମୀୟ ରୀତିନୀତିରେ ଚୈତ୍ରମାସରେ ଦଣ୍ଡନାଚ, ଛଉ, କାଳିକାପୂଜା, ଗୁହାଳ ପୂଜା, ଲାଙ୍ଗାରାଣୀ ପୂଜା ଆଦି ଅନେକ ପର୍ବପର୍ବାଣି କନ୍ଧ ସଂସ୍କୃତିରେ ପ୍ରଚଳିତ ଅଛି । ଏମାନଙ୍କ ମଧ୍ୟରେ ଉଡ଼ା ଯାତ୍ରା, କେଡୁ ପର୍ବ ଆଦି ସ୍ୱତନ୍ତ୍ରତା ମଧ୍ୟ ଅଛି ।

## ଉଡ଼ା ଯାତ୍ରା ବା ଉଡ଼ା ପର୍ବ

ଆଦିବାସୀ ପରମ୍ପରାରେ ପ୍ରଚଳିତ ଥିବା ଧର୍ମୀୟ ପରମ୍ପରାରେ ଡାଲଖାଇ, ରସରକେଲୀ, ଓ ଢଣକୁଇଲା ପରି ଉଡ଼ା ଯାତ୍ରା ବା ଉଡ଼ା ପର୍ବ ଅନ୍ୟତମ । ବସନ୍ତ ଋତୁ ଆଗମନ ଫଗୁଣ ମାସ ଜହ୍ନ ପକ୍ଷରେ ଏହି ବ୍ରତ ଆରମ୍ଭ ହୁଏ ଓ ମହାବିଷୁବ ସଂକ୍ରାନ୍ତିରେ ବ୍ରତ ଉଦ୍‌ଯାପିତ ହୋଇଥାଏ । ଉଡ଼ା ପର୍ବକୁ ତିରୋଟି ପାଟମରା ଯାତ୍ରା କୁହାଯାଏ । ପର୍ବର ଆରାଧ୍ୟା ଦେବୀ ହେଉଛନ୍ତି ମା' ମଙ୍ଗଳା । ସମସ୍ତ କନ୍ଧ ସମ୍ପ୍ରଦାୟ ଏକତ୍ରିତ ହୋଇ ଜଣକୁ ପାଟ ଉପାସକ ବାଛନ୍ତି ଓ ସେହି ଲୋକ ଅନେକ ନୀତିନିୟମ ମାନି ହବିଷାର୍ଣ୍ଣ ଖାଇ ମା' ମଙ୍ଗଳାଙ୍କୁ ପୂଜା କରିଥାଏ । ଉତ୍ସବ ପାଇଁ ଦୁଇ ଗୋଟି ଉପକରଣର ପ୍ରୟୋଜନ ଥାଏ । ପ୍ରଥମଟି ହେଉଛି 'ପାଟ' ଅନ୍ୟଟି 'ତିରୋଟୀ' । ଏଥିପାଇଁ ଉଡ଼ାପର୍ବକୁ ପାଟ ମରା ତିରୋଟୀ ପର୍ବ କୁହାଯାଏ । ପାଟ କହିଲେ ଦୁଇ ଗୋଟି ଲୁହାଆଙ୍କୁସୀ, ଯାହା ଉପାସକ ପିଠିରେ ଫୋଡ଼ାଯାଏ । ତିରୋଟୀ ହେଉଛି ଦୁଇଗୋଟି ଶକ୍ତ ଲମ୍ବ ଖୁଣ୍ଟ ଉପରେ ବାହଲ ଲାଗି ଥାଏ । ପାଟ ଉପାସକ ଈଶ୍ୱରୀୟ ବେଶରେ ସଜ୍ଜିତ ହୋଇ ମୁଣ୍ଡରେ ପଗଡ଼ି, ଅଣ୍ଟାରେ ଘାଗୁଡ଼ି ଓ ପାଦରେ ଘୁଙ୍ଗୁର ବାନ୍ଧି, କଳା ଲୁଗା ପିନ୍ଧି, ସିନ୍ଦୂର, ଚନ୍ଦନ ଓ ବେକରେ ଫୁଲମାଳ ପିନ୍ଧି, ମାଦଳ, ଶଙ୍ଖ, ହୁଳହୁଳି ଶବ୍ଦ ସହିତ ପିଠିରେ ପାଟ ଫୁଟାଇ ଏକ ଶକ୍ତ ରସିରେ ତିରୋଟୀରେ ଝୁଲାଇ ଦିଆଯାଏ । ଏହା ସାଧାରଣ ମଣିଷର ଅତି ମାନବୀୟ ଗୁଣକୁ ପରିପ୍ରକାଶ କରି ତିରୋଟୀରେ ଉପାସକଟି ଠିକ୍ ପକ୍ଷୀ ପରିଦୋହଲୁ ଥିବାରୁ ଏହାକୁ ଉଡ଼ା ପର୍ବ କୁହାଯାଏ ।

## କେଡୁ ପର୍ବ

କେଡୁ ପର୍ବର ଅର୍ଥ କନ୍ଧ ଦେବତା ପର୍ବ, ଏରାପେନୁ, ସତରାପେନୁ, ଗିମାପେନୁ ଓ ଧରନୀପେନୁ ଆଦିକୁ କନ୍ଧମାନଙ୍କର ଦେବତା ବୋଲି କୁହାଯାଏ । କେଡୁ ପର୍ବ ମୁଖ୍ୟତଃ ଧରନୀପେନୁ ଅର୍ଥାତ୍ ମାଟି ଦେବତାଙ୍କ ପୂଜା ଉଦ୍ଦେଶ୍ୟରେ ପାଳନ କରାଯାଇଥାଏ । ଏହି ପର୍ବ ଦୀର୍ଘ ପନ୍ଦର ଦିନ ଧରି ଖୁବ୍ ଧୁମ୍‌ଧାମରେ ପାଳିତ ହୋଇଥାଏ । ଖାସି ଓ ଶଂଶାମାଂସ ସହିତ ସଲପ ଗଛର ପାଣି ଓ ହାଣ୍ଡିଆ ଖାଇ

ନାରୀ ପୁରୁଷମାନେ ନାଚ ଗୀତରେ ମାତି ଯାଆନ୍ତି । ସନ୍ଧ୍ୟା ନଇଁ ଆସିଲେ ଗାଁ ଦାଣ୍ଡରେ ଢୋଲ, ମହୁରୀ, ଚାଙ୍ଗୁ ବାଦ୍ୟ ତାଳେ ତାଳେ ନାଚର ଆସର ଯମେ । ନାଚ ଗୀତର ସୁଅ ଛୁଟେ । ପ୍ରଥମେ ଦେବୀଙ୍କର ବନ୍ଦନା ହୁଏ -

'ଜୟ ମହାମାୟୀ ଭଣ୍ଡାର ଘରୁଣି, ତୋର ପାଦେ ମୋର ସେବା ।
ତୋର ନାମ ଧରି ଗୀତ ମୁଁ ଗାଇବି ପଦ ମୋତେ କହି ଦେବା ॥
ଦେବୀ ଜୁଆରିନି ରଣକା ସେନି କରକି ମକିଆ ପିବା ସିନି ।
ବଳଦ ପିଠିରେ ଗନି, ଛିଞ୍ଚିଲେ ଲଳାଗେ ପାନି ॥
ଆକାଶେ ବନ୍ଦିଲି ତାରା ତାରେଣି, ପାତାଳେ ବନ୍ଦିଲି ନାଗ ନାଗୁଣୀ,
ମଞ୍ଚ ପୁରେ ଠାକୁରାଣୀ ।
ତାଙ୍କ ନାମ ଧରି ଗୀତ ମୁଁ ଗାଇବି, ମତେ ଦିଶା ଦିଅବାରବାନୀ ॥

କେତେକ ସ୍ତ୍ରୀଲୋକ ଏହି ପର୍ବରେ ଭାତ ଝୁଡ଼ି ମୁଣ୍ଡରେ ମୁଣ୍ଡାଇ ଗାଁ ଦାଣ୍ଡ ପରିକ୍ରମା କରି ଭାତ ବାଣ୍ଟି ଚାଲନ୍ତି । ଭାତ ବଣ୍ଟା ପରେ ବଳି ପଡ଼ିଥିବା ଭାତକୁ ମାଟିରେ ବୁଣି ଦେଇ ସ୍ତ୍ରୀ, ପୁରୁଷେ ମିଳିତ ହୋଇ ମନଖୁସିରେ ନାଚଗୀତ କରିଥାନ୍ତି ।

ପୁରୁଷ ଗୀତରେ କହେ -

'ଉଠରେ ସୁନ୍ଦରୀ ନୃପତି କୁମାରୀ, କେତେ କରୁଥିବୁ ନିଦ
ଗୀତ ଗାଉ ଗାଉ ପ୍ରହରେ ହେଲାଣି, ବଥେଇଲା ପଦ୍ମପାଦ ।
ତୁ ଗୀତ ଗାଇଲେ ଛଳକ ଥିବି, ନାଇଲେ ପରାଇବି ॥'

ସ୍ତ୍ରୀ, ଉତ୍ତର ଦିଏ -

'କୋବାଟେ ଡାକିଲା କୋବାଟେ ଶୁଭିଲା,
ମାୟା ମୁରୁଗୀକି କାଣ୍ଡ ବାଜିଲା,
ମୋ ବନ୍ଧୁ ପରା ଲାଗିଲା ।
ଏବେ ମୁଁ ଶୁଣିଲି ବନ୍ଧୁର ଡାକ,
ଛାଡ଼ିଗଲା ଦୁଃଖସୁଖ ॥'

### ଝାଗିଡ଼ି ଯାତ୍ରା

ଝାଗିଡ଼ି ଯାତ୍ରା ମୁଖ୍ୟତଃ ମାଟି ଦେବତା 'ଧରନୀପେନୁ'ଙ୍କ ଉପାସନା ପାଇଁ ପାଳିତ ହୋଇଥାଏ । ଏହି ପୂଜା ସାମ୍ବତ୍ସରୀକ ବା ପ୍ରତିବର୍ଷ ପାଳିତ ହୋଇନଥାଏ । ଏପରିକି କେତେକ କ୍ଷେତ୍ରରେ ୫୦/୬୦ ବର୍ଷ ପରେ ଥରେ ପାଳିତ ହୋଇଥାଏ । ଏହାକୁ ମଧ କେଡୁ ଯାତ୍ରା ଓ ପୋଢ଼ ଯାତ୍ରା କୁହାଯାଏ । କନ୍ଧ ଧର୍ମ ଧାରଣାରେ ଝାଗିଡ଼ି ଯାତ୍ରାର ଗୁରୁତ୍ୱ ସର୍ବାପେକ୍ଷା ଅଧିକ ଥାଏ ।

ମାଟି ଅଶାନ୍ତ ହୋଇ କ୍ଷେତରେ ଶସ୍ୟ ନ ଫଳିଲେ, ଗାଁରେ ନିଆଁ ଲାଗିଲେ, ଏହାକୁ ଦେବ କୂଟ ମାୟା ବୋଲି କୁହାଯାଏ । ଏଥିପାଇଁ ପ୍ରାକୃତିକ ବିପର୍ଯ୍ୟୟ, ବାଘରଡ଼ି ଓ ବାଘ, ଗାଈ, ଗୋରୁଙ୍କୁ ଝାମ୍ପି ନେଲେ, ଗାଁରେ ହଇଜା, ମହାମାରୀ, ମେଲେରୀଆ ବ୍ୟାପୀ ଲୋକେ ମରିଗଲେ କନ୍ଧମାନେ ଯାଣନ୍ତି ମାଟି ମା' ଅଶାନ୍ତ ହେଲେଣି, ଏଣୁ ଜଣେ ଜଣାଶୁଣା ଗୁରୁକୁ ଡାକି ଲକ୍ଷଣ ବୁଝି ଭାବନ୍ତି 'ମାଟି ମା' ନାଚିବାକୁ ଚାହୁଁଛି' ବୋଲି ତାହାର ସତ୍ୟତା ଜାଣିବା ପାଇଁ ଦିନ ସ୍ଥିର କରାଯାଇ ଧରନୀପେନୁଙ୍କୁ ପୂଜାର୍ଚ୍ଚନା କରାଯାଏ । ନିୟମିତ ପୂଜା ବିଧି ପରେ ଗୋଟିଏ ଘୁଷୁରୀର ଲାଞ୍ଜ ଓ କାନକୁ କାଟି ଛାଡ଼ି ଦିଆଯାଏ । ଏହାପରେ ଯଦି ଗ୍ରାମରେ ବିଦ୍ ପାଡ଼ ପଡ଼େ ଓ କ୍ଷେତରେ ଶସ୍ୟ ଭଲ ନଫଳେ ତେବେ ଝାଗିଡ଼ି ପୂଜାର ବିଧିବିଧାନ ହୁଏ ।

ଯଦି ଦୀର୍ଘ ୩/୪ ବର୍ଷ ପରେ ଝାଗିଡ଼ି ପୂଜା ପାଇଁ ଗ୍ରାମବାସୀ ଅସମର୍ଥ ହୁଅନ୍ତି ତେବେ ପୂର୍ବରୁ ଛଡ଼ା ଯାଇଥିବା ଘୁଷୁରୀକୁ ପିଟିପିଟି ମରାଯାଏ, ଏହାକୁ 'ଚେପଣା' କୁହାଯାଏ । ଘୁଷୁରୀ ମଲାପରେ ତା'ର କାନ ବାକି ଅଂଶ ଓ ଜିଭକୁ କାଟି ନେଇ ଗାଁର ତଳମୁଣ୍ଡରେ ଥିବା 'ତୁର୍କିପେନୁ' ଗ୍ରାମଦେବୀଙ୍କଠାରେ ପୋତି ଦେଇ ଝାଗିଡ଼ି ପୂଜା ଆଉ ବର୍ଷେ ବା ଦୁଇବର୍ଷ ପରେ କରିବା ପାଇଁ ପ୍ରାର୍ଥନା କରାଯାଏ । ଝାଗିଡ଼ି ପୂଜା ବ୍ୟୟବହୁଳ ଥିବାରୁ ଗାଁରୁ ଟଙ୍କା, ଚାଉଳ ଆଦି ଚାନ୍ଦା ଭେଦା ଆଦାୟ ହୁଏ ।

ଝାଗିଡ଼ି ପୂଜା କେବଳ ବୈଶାଖ ମାସରେ ଅନୁଷ୍ଠିତ ହୋଇଥାଏ । ବୈଶାଖ ମାସରେ ପଡୁଥିବା ଅମାବାସ୍ୟା ବା ପୂର୍ଣ୍ଣମୀ ସାତଦିନ ପୂର୍ବରୁ ଦିନ ସ୍ଥିର ହୁଏ । ଏହା ପରେ ପୋଢ଼ (ମଇଁଷି) କିଣାଯାଏ । ପୋଢ଼ କିଣିବାକୁ ଯାଇଥିବା ଲୋକେ ପୋଢ଼ଧରି ଫେରିଲାବେଳକୁ ଗାଁ ମୁଣ୍ଡରୁ ଗ୍ରାମବାସୀମାନେ 'ଝାଙ୍କର' (ପୂଜକ)ଙ୍କୁ ଡାକି ବାଜବାଜଣା ସହିତ ପୋଢ଼କୁ ବନ୍ଦାପନା କରି ହରିବୋଲ ହୁଳହୁଳି ଦେଇ ଗାଁଆକୁ ପାଛୋଟି ନେଇଥାନ୍ତି । ଗାଁର ସ୍ତ୍ରୀଲୋକେ ପୋଢ଼କୁ ତେଲ, ହଳଦୀ ଦେଇ ତା' ଉପରକୁ ଅରୁଆ ଚାଉଳ ଦୁବ, ଫୁଲ ପକାଇ ଘିଅ ଦୀପରେ ବନ୍ଦାପନା କରିଥାନ୍ତି । ଝାଙ୍କର ଓ ଜାନୀଙ୍କ ଦାଣ୍ଡରେ ବନ୍ଦାପନା ସରିଲା ପରେ ସମସ୍ତେ ମଦ ପିଇ ନାଚ ତାମସା କରି ପୋଢ଼କୁ ନେଇ ଗାଁଆର ଗଉଡ଼ ଉପରେ ଦେଖାଶୁଣା ପାଇଁ ସମର୍ପି ଦେଇଥାନ୍ତି ।

ଝାଗିଡ଼ି ପୂଜାସ୍ଥଳୀରେ ଗୋଟିଏ ଲମ୍ବାକାର କୋଡ଼ିଏ ଫୁଟ ବିଶିଷ୍ଟ ଗର୍ତ୍ତଖୋଳା ଯାଇ ତାହାକୁ ବର୍ଗାକାର କରାଯାଏ । ନିକଟରେ ପାଞ୍ଚଫୁଟ ବିଶିଷ୍ଟ ଏକ ଶକ୍ତଶାଳ କାଠ ପୋଡ଼ାଯାଏ । କାଠରେ ପ୍ରତି ଦେଢ଼ ଫୁଟ ବ୍ୟବଧାନରେ କଣାଥାଏ ଓ ତହିଁ ମଧ୍ୟରେ କାଠର ଖିଲ ଭରି ଦିଆଯାଇଥାଏ । ଏହାକୁ ବସଙ୍ଗି କୁହାଯାଏ । ଯାହା ଠିକ୍ ଅର୍ଗଳୀ ଭଳି ହୋଇଥାଏ । ଅର୍ଗଳୀ ନିକଟରେ ଝାଙ୍କର, ଜାନୀ ଓ ଗୁରୁ ଇତ୍ୟାଦି ରହି ପୂଜା ପାଠ କରିଥାନ୍ତି । ପୂଜା ପ୍ରସ୍ତୁତି ପୂର୍ବରୁ ଜଙ୍ଗଲରୁ ବସାଙ୍ଗି କାଠ ପାଇଁ ଝାଙ୍କର ଓ ଜାନୀ ଯାଇ ଗଛ ଖୋଜନ୍ତି । ଯେଉଁ ଗଛ ଅନ୍ୟ ଗଛକୁ ଲାଗି ନଥାଏ, କୁରାଢ଼ୀ ଚୋଟ ନଥାଏ, ଗଛରେ କୌଣସି

ଲତା ମାଡ଼ି ନଥାଏ କିମ୍ବା କୌଣସି ପକ୍ଷୀ ବସା ନଥାଏ ତାକୁ ପୂଜାର୍ଚ୍ଚନା କରି ଅଣାଯାଇଥାଏ । ଗଛକୁ ତଳେ ପକାଇ ଦିଆଯାଏ ନାହିଁ, ଗ୍ରାମବାସୀମାନେ ସାଙ୍ଗୀ ସାହାଯ୍ୟରେ ଗଛକୁ ଆଣି ବସାଙ୍ଗି ଖୁଣ୍ଟ କରିଥାନ୍ତି । ଗଛକୁ କାଟିବା ପାଇଁ ନୂତନ ବାରଶି ଓ ଟାଙ୍ଗିଆ ଆଦି ବ୍ୟବହାର ହୋଇଥାଏ ।

ଅର୍ଗଳୀ ବା ବସଙ୍ଗି ମଧ୍ୟରେ 'ଦାରନିପେନୁ'ଙ୍କ ଆସ୍ଥା ନଥାଏ, ଗୁରୁ, ଝାଙ୍କର, ଜାନୀ ନୂତନ ବସ୍ତ୍ର ପିନ୍ଧି ପୂଜାର୍ଚ୍ଚନା ପରେ ଏକ କାଞ୍ଜିଆ ଅଣ୍ଡା ରଖି ସମସ୍ତ ଦେବଦେବୀଙ୍କୁ ଆବାହନ କରି ପୂଜା ଦିଆଯାଏ । ଏହି କାର୍ଯ୍ୟ ସରିବା ପରେ ପ୍ରଥମେ ଗୋଟିଏ ଛେଳିକୁ ବଳି ଦିଆଯାଏ । ଅର୍ଗଳୀ ଦୁଇ ପାଖରେ ଦୁଇଗୋଟି ନୂଆ ମାଠିଆରେ ହଳଦୀ ପାଣି ଓ ମଦ ମିଶାଇ ରଖାଯାଏ । ଏହାପରେ ଗ୍ରାମରୁ ପୋଢ଼କୁ ଆଣି ସ୍ନାନ ମାର୍ଜନା କରି ପଶୁ ମନ୍ତ୍ର ଦିଆଯାଇ ଅର୍ଗଳୀରେ ଭର୍ତ୍ତି କରାଯାଏ । ବିଭିନ୍ନ ବାଦ୍ୟ ବାଜଣା, ଶଙ୍ଖ ହୁଳୁହୁଳି ଓ ହରିବୋଲ ଶବ୍ଦ ମଧ୍ୟରେ ପୋଢ଼କୁ ବଳି ଦିଆଯାଏ । ଏହି ପୋଢ଼ ବଳି ମାଂସକୁ ଭୋଜିଭାତ କରି ଗାଁଟାଯାକ ଲୋକେ ଖାଇ ସାରିବା ପରେ, ବାକିତକ ହାଡ଼, କଣ୍ଟା ଓ ମାଂସକୁ ଚାଷ ଜମିରେ ପୋତି ଦିଆଯାଏ । ରାତ୍ରି ତମାମ ନାଚତାମସା, ଭୋଜିଭାତ ଓ ମଦର ସୁଅ ଛୁଟିଥାଏ ।

ଏହି ପୋଢ଼ ବଳି ମାଂସ ପାଇଁ ସମୟ ସମୟରେ ଗାଁ ଗାଁ ମଧ୍ୟରେ ତୁମୁଳ ସଂଘର୍ଷ ଘଟି ଅନେକ ଧନ-ଜୀବନ ନଷ୍ଟ ହୋଇଥାଏ । ସେହି ଧର୍ମୀୟ ଝାଗଡ଼ି ପର୍ବ ଶେଷରେ ଭୟାନକ ରୂପ ଧାରଣ କରି ଗାଁଆକୁ ଧ୍ୱଂସ ମୁଖକୁ ଟାଣି ନେଇଥାଏ । କାରଣ ପୋଢ଼ ବଳି ମାଂସକୁ ଅନ୍ୟ ଗ୍ରାମବାସୀମାନେ ଚୋରାଇ ନେବା ପାଇଁ ତତ୍ପର ହୋଇଥାନ୍ତି । ସେମାନେ ମାଂସ ଚୋରୀ କରୁଥିବାବେଳେ ଯଦି ଧରାପଡ଼ି ଯାଆନ୍ତି, ତେବେ ଭୟାଭୟ ପରିସ୍ଥିତି ସୃଷ୍ଟି ହୋଇ ରକ୍ତାକ୍ତ ସଂଘର୍ଷରେ ପରିଣତ ହୁଏ, କାରଣ ଏଥିରେ ବିଶ୍ୱାସ ଥାଏ ଯେ, ପର୍ବ ପାଳିତ ହେଉଥିବା ଗ୍ରାମକୁ ମଙ୍ଗଳ ସବୁ ଅନ୍ୟ ଗ୍ରାମକୁ ଚାଲିଯିବ ବୋଲି ସେମାନଙ୍କର ଧାରଣା ଥାଏ । ଏହି ପର୍ବ ଏକ କୃଷିଭିତ୍ତିକ ପର୍ବ ଭାବେ ପାଳିତ ହୋଇଥାଏ ।

ଆଧୁନିକ ସଭ୍ୟତାରେ କନ୍ଧ ସମାଜରେ ନୂତନ ଆଲୋକ ପ୍ରକାଶିତ ହେଲାଣି । ଝାଗଡ଼ି ଯାତ୍ରାର ଭୟାବହତା ଲୋମହର୍ଷଣକାରୀ ଦୃଶ୍ୟ ଓ ଅନ୍ଧବିଶ୍ୱାସ ବୋଲି ଲୋକେ ଭାବିଲେଣି । ସେମାନଙ୍କ ମଧ୍ୟରେ ଅନେକ ଶିକ୍ଷା ଦୀକ୍ଷା ଲାଭକରି ଉଚ୍ଚପଦର ଅଧିକାରୀ ହେଲେଣି କିନ୍ତୁ ପୂର୍ବ ପରମ୍ପରା ଓ ସଂସ୍କୃତିରୁ ଦୂରେଇ ଯାଇ ନାହାନ୍ତି ।

କରିମାବାଦ
କପାସିଛକ, ଦେବୀଦ୍ୱାର
ଯାଜପୁର-୭୫୫୦୦୭

# ପଦ୍ମଶ୍ରୀ ସଚ୍ଚି ରାଉତରାୟଙ୍କ ମୃତ୍ୟୁରେ ମୁଖ୍ୟମନ୍ତ୍ରୀଙ୍କ ଶୋକ

ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ବିୟୋଗରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଗଭୀର ଶୋକ ପ୍ରକାଶ କରିଛନ୍ତି ।

ଶ୍ରୀ ପଟ୍ଟନାୟକ ତାଙ୍କ ଶୋକବାର୍ତ୍ତାରେ କହିଛନ୍ତି, ପଦ୍ମଶ୍ରୀ ସଚ୍ଚି ରାଉତରାୟ ଜଣେ ଯଶସ୍ୱୀ ସାରସ୍ୱତ ସାଧକ ଭାବରେ ସାରା ଭାରତରେ ଖ୍ୟାତି ଅର୍ଜନ କରିଥିଲେ । ତାଙ୍କର କାଳଜୟୀ ସାହିତ୍ୟ କୃତି ପାଇଁ ସେ ସମ୍ମାନଜନକ ଜ୍ଞାନପୀଠ ପୁରସ୍କାରରେ ସମ୍ମାନିତ ହୋଇଥିଲେ । ଜଣେ ଲୋକପ୍ରିୟ କବି ଭାବରେ ସେ ଓଡ଼ିଶାର ଘରେ ଘରେ ସୁପରିଚିତ ଥିଲେ । ତାଙ୍କର କବିତା ଜନମାନସରେ ଗଭୀର ରେଖାପାତ କରିଥିଲା । ତାଙ୍କ ବିୟୋଗରେ ଓଡ଼ିଆ କାବ୍ୟଜଗତରୁ ଏକ ଉଜ୍ଜ୍ୱଳ ଜ୍ୟୋତିଷ୍କ ଅନ୍ତର୍ହିତ ହୋଇଯାଇଛି । ତାଙ୍କର ବିୟୋଗ କେବଳ ଓଡ଼ିଶା ପାଇଁ ନୁହେଁ ଭାରତୀୟ ସାହିତ୍ୟ ଜଗତ ପାଇଁ ଏକ ଅପୂରଣୀୟ ଶୂନ୍ୟସ୍ଥାନ ସୃଷ୍ଟି କରିଛି ।

ମୁଖ୍ୟମନ୍ତ୍ରୀ କବି ସଚ୍ଚି ରାଉତରାୟଙ୍କ ଶୋକସନ୍ତପ୍ତ ପରିବାରବର୍ଗଙ୍କୁ ଗଭୀର ସମବେଦନା ଜଣାଇଛନ୍ତି ଓ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି କାମନା କରିଛନ୍ତି ।

# ନାରୀ ସ୍ୱାଧୀନତା

ପ୍ରାଧାପିକା ଡଃ ସରୋଜିନୀ ଭୂୟାଁ

ଈଶ୍ୱରଙ୍କ ସୃଷ୍ଟିରେ ଜୀବମାତ୍ରେ ସ୍ୱାଧୀନତା ଚାହେଁ । କେହି ପରାଧୀନ ଜୀବନ ଇଚ୍ଛା କରେ ନାହିଁ । ପଶୁଟିଏ ହେଲେ ମଧ ତାକୁ ବନ୍ଧା ହୋଇ ରହିବାକୁ କଷ୍ଟ ହୋଇଥାଏ । ପକ୍ଷୀଟିଏ ହେଲେ ମଧ ତାକୁ ପିଞ୍ଜରା ଭିତରେ ରହିବାକୁ ଭଲ ଲାଗେ ନାହିଁ । ନିଜ ଅଧୀନରେ ରହି ଜୀବନଯାପନ କରିବାକୁ ସମସ୍ତଙ୍କର ଇଚ୍ଛା । ମଣିଷ ତ ଶ୍ରେଷ୍ଠ ଜୀବ । ତା'ର ବୁଦ୍ଧି, ବିବେକ ଅଛି । ବିଚାରଶକ୍ତି ଅଛି । ମଣିଷର ଦୁଇଟି ରୂପ- ନାରୀ ଓ ପୁରୁଷ । ଶରୀରର ଗଠନ ପ୍ରଣାଳୀ ସିନା ଭିନ୍ନ, କିନ୍ତୁ ମନ, ବୁଦ୍ଧି ବିବେକ ସବୁ ଏକ ପ୍ରକାର । ଉଭୟଙ୍କ ମଧରେ ଆତ୍ମା ଏକ ପ୍ରକାର । ଲିଙ୍ଗଭେଦରେ ଆତ୍ମା ଭିନ୍ନ ପ୍ରକାର ନୁହଁ । ହେଲେ, ନାରୀର ପୁରୁଷ ପରି ସ୍ୱାଧୀନତା ନାହିଁ । ନାରୀ ପୁରୁଷର ସହଧର୍ମିଣୀ, ସହକର୍ମିଣୀ, ସହଚାରିଣୀ । ପୁରୁଷର ସୁଖଦୁଃଖରେ ସହଭାଗିନୀ । ନାରୀର ସହଯୋଗ ବିନା ପୁରୁଷର ଦ୍ରୁତ ଉନ୍ନତି କଷ୍ଟକର । କିନ୍ତୁ ସାମାଜିକ ରୀତିନୀତି ଏପରି ହୋଇ ଆସିଛି ଯେ ନାରୀ ପୁରୁଷ ସହିତ ସମାନ ଅଧିକାର ପାଏ ନାହିଁ । କେବଳ ସେବା, ସହିଷ୍ଣୁତା ତା'ର ଧର୍ମ । ଅଧିକାଂଶ ସ୍ତ୍ରୀଲୋକଙ୍କୁ ଘରର କୌଣସି କଥାରେ ଖୋଲା ମତାମତ ଦେବାର ଅଧିକାର ମଧ ମିଳେ ନାହିଁ । ପୁରାତନ କାଳରେ ତ ଅବସ୍ଥା ଅତି ଶୋଚନୀୟ ଥିଲା । ଜାତିର ପିତା ମହାତ୍ମା ଗାନ୍ଧୀ ନାରୀ ପୁରୁଷଙ୍କୁ ଗୋଟିଏ ପକ୍ଷୀର ଦୁଇଟି ଡେଣା ବୋଲି ଅନୁଭବ କରି ସେମାନଙ୍କର ସ୍ୱାଧୀନ ଜୀବନ ଚାହିଁଥିଲେ । ଓଡ଼ିଶାରେ ଉତ୍କଳଗୌରବ ମଧୁସୂଦନ ଦାସ ନାରୀ ଶିକ୍ଷାର ଜାଗରଣ ଆରମ୍ଭ କରିଥିଲେ । ତାଙ୍କରି ଆଶୀର୍ବାଦର ଫଳସ୍ୱରୂପ ଆଜି ଶୈଳବାଳା ମହିଳା ମହାବିଦ୍ୟାଳୟ ସହସ୍ରାଧିକ ଯୋଗ୍ୟା ଛାତ୍ରୀ ପ୍ରତିବର୍ଷ ପଢ଼ି ଚାଲିଛନ୍ତି ଓ ସେହିପରି ଅନେକ ମହିଳା ମହାବିଦ୍ୟାଳୟ ହୋଇ ସାରିଛି ।

ବେଦ ଉପନିଷଦ ଯୁଗରେ ଅନେକ ନାରୀ ଋଷି ଥିଲେ । ଅର୍ଥାତ୍ ସେମାନେ ମନ୍ତ୍ରଦ୍ରଷ୍ଟା ଥିଲେ । ନାରୀମାନେ ଗୃହସ୍ଥାଶ୍ରମ କରୁଥିଲେ ଏବଂ ବ୍ରହ୍ମ ପରାୟଣ ମଧ ଥିଲେ । ଯେଉଁମାନେ ଗୃହ ପରିଚାଳନା କରୁଥିଲେ, ସେମାନଙ୍କୁ 'ସଦ୍ୟୋବଧୂ' କୁହାଯାଉଥିଲା । ଯେଉଁମାନେ ବେଦାଧୟନ, ବ୍ରହ୍ମ ଉପାସନା ଆଦି ପରମାର୍ଥିକ କାର୍ଯ୍ୟ କରୁଥିଲେ ସେମାନଙ୍କୁ 'ବ୍ରହ୍ମବାଦିନୀ' କୁହାଯାଉଥିଲା । ଉଭୟଙ୍କର କାର୍ଯ୍ୟ ଭିନ୍ନ ହେଲେ ହେଁ ମୌଳିକ ଧର୍ମାଧିକାର ସମାନ ଥିଲା । ବ୍ରହ୍ମବାଦିନୀ ଯଜ୍ଞୋପବୀତ, ଅଗ୍ନିହୋତ୍ର, ବେଦାଧୟନ ଓ ସ୍ୱଗୃହଭିକ୍ଷା କରିଥାଏ । ସଦ୍ୟୋବଧୂ ପାଇଁ ମଧ ଯଜ୍ଞୋପବୀତ ଆବଶ୍ୟକ ହୋଇଥାଏ । ବିବାହ ସମୟ ଆସିଲେ ସେ ଏହା ଧାରଣ କରିଥାଏ । ସଦ୍ୟୋବଧୂମାନେ ମଧ ବ୍ରହ୍ମ ପରାୟଣ ହୋଇ ବ୍ରହ୍ମବାଦିନୀ ହୋଇପାରୁଥିଲେ । ଶତପଥ ବ୍ରାହ୍ମଣରେ ଯାଜ୍ଞବଲ୍କ୍ୟ ଋଷିଙ୍କ ଧର୍ମପତ୍ନୀ ମୈତ୍ରେୟୀଙ୍କୁ ବ୍ରହ୍ମବାଦିନୀ କୁହାଯାଇଛି । ପୁରୁଷମାନେ ବ୍ରହ୍ମଚାରୀ ହୋଇ ଯେପରି ତପ, ସ୍ୱାଧ୍ୟାୟ, ଯୋଗ ଆଦି କରୁଥିଲେ, ସ୍ତ୍ରୀମାନେ ବ୍ରହ୍ମଚାରିଣୀ ହୋଇ ସେହିପରି କରୁଥିଲେ । ଅନେକ ବ୍ରହ୍ମଚାରିଣୀ ସୁପ୍ରସିଦ୍ଧା ଥିଲେ । ମହାଭାରତର ଶାନ୍ତିପର୍ବରେ କୁହାଯାଇଛି ଯେ, 'ସୁଲଭା' ନାମ୍ନୀ ଜଣେ ବ୍ରହ୍ମବାଦିନୀ ସନ୍ନ୍ୟାସିନୀ ରାଜା ଜନକଙ୍କ ସହିତ ଶାସ୍ତ୍ରାର୍ଥ କରିଥିଲେ । ସୁପ୍ରସିଦ୍ଧ କ୍ଷତ୍ରିୟକୁଳରେ ଜନ୍ମ ହୋଇଥିବା ସୁଲଭା କହିଛନ୍ତି ଯେ - ମୁଁ ମୋର ଅନୁରୂପ ପତି ନ ମିଳିବାରୁ ଗୁରୁଙ୍କଠାରୁ ଶିକ୍ଷା ଲାଭ କରି ସନ୍ନ୍ୟାସ ଗ୍ରହଣ କରିଛି । ଆଚାର୍ଯ୍ୟ ଆନନ୍ଦତୀର୍ଥ (ମାଧବାଚାର୍ଯ୍ୟ) 'ମହାଭାରତ ନିର୍ଣ୍ଣୟ'ରେ ଲେଖିଛନ୍ତି -

'ବେଦାଶ୍ଚାପ୍ୟୁତ୍ତମସ୍ତ୍ରୀଭିଃ କୃଷ୍ଣାଦ୍ୟାଭିରିବାଖିଳାଃ ।'

ଅର୍ଥାତ୍, ଉତ୍ତମ ସ୍ତ୍ରୀ କୃଷ୍ଣା (ଦ୍ରୌପଦୀ)ଙ୍କ ଭଳି ବେଦ ଅଧୟନ କରିବା ଉଚିତ । ବିଷ୍ଣୁ ପୁରାଣ (୧/୧୦, ୧୮/୧୯), ମାର୍କଣ୍ଡେୟ ପୁରାଣ ୧୨ ଅଧ୍ୟାୟରେ ଏଭଳି ବ୍ରହ୍ମବାଦିନୀ ମହିଳାଙ୍କର ବର୍ଣ୍ଣନା କରାଯାଇଛି, ଯେଉଁମାନେ କି ବେଦ ଓ ବ୍ରହ୍ମ ସମ୍ବନ୍ଧରେ ଉପଦେଶ ପ୍ରଦାନ କରୁଥିଲେ । ଚାରିବେଦ କଣ୍ଠସ୍ଥ ଥିବାରୁ ମହିଳାଙ୍କୁ ବେଦବତୀ (ବ୍ରହ୍ମବୈ ପ୍ରକୃତିଖଣ୍ଡ ୨/୧୪/୬୪) କୁହାଯାଉଥିଲା । ଗୃହସ୍ଥାଶ୍ରମରେ ପ୍ରବେଶ କରୁଥିବା କନ୍ୟା ମଧ ବ୍ରହ୍ମଚାରିଣି ହୋଇ ୨୪ ବର୍ଷ ବୟସ ହେଲା ପରେ ଅନୁରୂପ ପତି ଗ୍ରହଣ କରି ଗୃହିଣୀ ହେଉଥିଲେ ।

ବିଦ୍ୟା ଅଧୟନ, ଶାସ୍ତ୍ରାର୍ଥ କରିବା, ପତି ମନୋନୀତ କରିବା ପ୍ରତ୍ୟେକ କ୍ଷେତ୍ରରେ ନାରୀର ସ୍ୱାଧୀନତା ଥିଲା । ବେଦ ପ୍ରବଚନ ଦେବା, ସଭା ସମିତି ଯିବା, ବ୍ରହ୍ମ ଉପଦେଶ ଦେବାରେ ମଧ ସ୍ୱାଧୀନତା ଥିଲା ।

ସେମାନେ ଉପାଧାୟୀ, ଉପାଧାୟା ଥିଲେ, ଆଚାର୍ଯ୍ୟା ଥିଲେ । ମୋଗଲ ଶାସନ ସମୟରେ ଓ ତା'ର ପରବର୍ତ୍ତୀ ସମୟରେ ନାରୀ ସ୍ୱାଧୀନତା ଧୀରେ ହ୍ରାସ ପାଇଲା । କିନ୍ତୁ ଏ ବିଷୟରେ ଚର୍ଚ୍ଚା, ଉପଲବ୍ଧି, କିଛି ସୁବିଧା ସୁଯୋଗ ଦେବା ସର୍ବଦା ଲାଗି ରହିଛି । ଏବେ ତ କାଗଜପତ୍ରରେ ନାରୀଙ୍କର ସୁବିଧା ପାଇଁ ଅନେକ ନିୟମ ଧାର୍ଯ୍ୟ କରାଯାଇଛି । କିନ୍ତୁ ବାସ୍ତବ କ୍ଷେତ୍ରରେ କାହିଁକି କେଜାଣି ନାରୀର ଆଗେଇବା ପାଦରେ ସବୁବେଳେ ବେଢ଼ି । ପ୍ରତି କ୍ଷେତ୍ରରେ ବାଧାବିଘ୍ନ । ମଧୁବାବୁଙ୍କର ନାରୀ ଶିକ୍ଷାର ଜାଗରଣ, ଗାନ୍ଧିଜୀଙ୍କର ନାରୀ ଜାଗରଣ ପରେ ପୁଣି ଏ ଅସୁବିଧା କାହିଁକି ? ଏହାର କାରଣ ହେଲା ନାରୀ ପ୍ରତି ପୁରୁଷର ଦୃଷ୍ଟିକୋଣ, ସମାଜର ଦୃଷ୍ଟିକୋଣ ଆହୁରି ଅନେକ ପରିବର୍ତ୍ତନ ହେବାକୁ ବାକି ଅଛି । ଅନେକ ସହୃଦୟ ବ୍ୟକ୍ତି ନାରୀମାନଙ୍କର ଏ ସମସ୍ୟାକୁ ଅନୁଭବ କରୁଛନ୍ତି । ସମାଧାନ କରିବାକୁ, ସାହାଯ୍ୟ କରିବାକୁ ଚେଷ୍ଟା କରୁଛନ୍ତି । କିନ୍ତୁ ସେପରି ବ୍ୟକ୍ତିଙ୍କ ସଂଖ୍ୟା କମ୍ । ନାରୀର ସ୍ୱାଧୀନତା ଗୃହ ପରିସରରୁ ଆରମ୍ଭ ହେଉ । ସେ ମନ ଖୋଲି ତା'ର ନିର୍ଭୀକ ମତାମତ ଦେଇପାରୁ । ଉତ୍ତମ ଆଚରଣଶାଳିନୀ ମା'ର ସନ୍ତାନ ଉତ୍ତମ ହୋଇଥାଏ । ସେ ଘରେ ସ୍ୱାଧୀନ ହେବାର ମର୍ଯ୍ୟାଦା ପାଉ । ତା'ପରେ ବାହାରେ ସ୍ୱାଧୀନ ହେବ । ପୁରୁଷ ସମାଜ ତାଙ୍କର ଦୃଷ୍ଟିକୋଣକୁ ବଦଳାଇ ଅନୁଭବ କରନ୍ତୁ, ନାରୀ ଆମ ସହିତ ସମାନ, ଆମରି ସେବା କରିବା ସଂଗେସଂଗେ ସେ ଆହୁରି ଅନେକ ବଡ଼ ବଡ଼ କାମ ଏ ଘର ପାଇଁ କରିପାରିବ । ନିଜ ପିତା, ମାତା, ଭାଇ, ଭଉଣୀଙ୍କର ଯେପରି ସମ୍ମାନ, ସ୍ତ୍ରୀର ମଧ୍ୟ ସେହିପରି ସମ୍ମାନ, ସେହିପରି ଅଧିକାର ।

ବେଳେ ବେଳେ ଦେଖାଯାଉଛି, ନାରୀ ତା'ର ସ୍ୱାଧୀନତାର ଅପବ୍ୟବହାର ମଧ୍ୟ କରୁଛି । ସ୍ୱାଧୀନତା ଅର୍ଥ ଉଚ୍ଛୃଙ୍ଖଳତା ନୁହେଁ । ନିଜେ ନିଜର ବିବେକ ଅନୁଯାୟୀ ଶୃଙ୍ଖଳିତ, ମାର୍ଜିତ, ରୁଚିସମ୍ପନ୍ନ ଜୀବନ ନିର୍ବାହ କରିବା ଉଚିତ । ନିର୍ଯ୍ୟାତନାରୁ ସମ୍ପୂର୍ଣ୍ଣ ମୁକ୍ତ ହେବାର ମାନେ ନୁହେଁ ଯେ ଆମେ ଇଚ୍ଛା ଅନୁସାରେ ଚଳିବା । ଆମେ ସ୍ୱାଧୀନ ମନୋବୃତ୍ତି ଦେଇ ମୁକ୍ତି ହୋଇ ଚଳିବା । କିନ୍ତୁ ଆମର ଚାଲିବା, ହସିବା, କଥା କହିବା, ଚାହିଁବା ସବୁଥିରେ ମାର୍ଜିତ ରୁଚି ରହିବ । ଯାହାକି ଆମକୁ ଦେବୀର ସମ୍ମାନ ଦେବ । ସେଇ ହେବ ସ୍ୱାଧୀନତାର ପ୍ରକୃତ ସମ୍ମାନ । କେତେକ କ୍ଷେତ୍ରରେ ଦେଖାଯାଏ, ପୁରୁଷର ମନ ଉଦାର । ନାରୀମାନେ ନାରୀଙ୍କର ଶତ୍ରୁ ହୁଅନ୍ତି । ବୋହୂଟିଏ କଷ୍ଟ ପାଏ, ଶାଶୁ-ନଣନ୍ଦଙ୍କ ଯୋଗୁଁ, ପ୍ରତିପତ୍ତି, ସମ୍ପତ୍ତିର ଲୋଭରେ ବିବାହିତ ପୁରୁଷକୁ ଜାଣୁ ଜାଣୁ ଅବିବାହିତା ନାରୀ ନିଜର କବଳିତ କରି ଅନ୍ୟ ଏକ ବିବାହିତା ନାରୀର ଓ ତା' ସନ୍ତାନଙ୍କର ଜୀବନକୁ ମଧ୍ୟ ନଷ୍ଟ କରିବାକୁ ପଛାଉ ନାହିଁ । ଏଇ କ'ଣ ନାରୀ ସ୍ୱାଧୀନତା ? ଘରେ କାହାରିକୁ ନ ମାନିବା - ଏଇ କ'ଣ ସ୍ୱାଧୀନତା ? ସ୍ୱାଧୀନତାର ଶାଳୀନତା ରହିବା ଉଚିତ । - ଯେପରିକି ଆମେ କଷ୍ଟ ପାଇବା ନାହିଁ କି କାହାରି କଷ୍ଟର କାରଣ ହେବା ନାହିଁ । ଋଗ୍‌ବେଦରେ ନାରୀକୁ ସମ୍ବୋଧନ କରି କୁହାଯାଇଛି - 'ତୁ ଉତ୍ତମ ଆଚରଣ ଦ୍ୱାରା ବ୍ରହ୍ମପଦ ଲାଭ କରିପାରୁ' ।

'ଅଧଃ ପଶ୍ୟସ୍ୱ ମୋପରି ସନ୍ତରାଂ ପାଦକୌ ହରଖ ।
ମୋ ତେ କଶପ୍ଲକୌ ଦୃଶନ୍ ସ୍ତ୍ରୀ ହି ବ୍ରହ୍ମା ବିଭୂବିଥ ॥
ଋଗ୍‌ବେଦ, ୮/୩୩/୧୯

ଅର୍ଥାତ୍, 'ହେ ନାରି ! ତୁ ନିମ୍ନ ଦୃଷ୍ଟି କରି ଚାଲ । ବ୍ୟର୍ଥ ବସ୍ତୁକୁ ବା ବ୍ୟକ୍ତିକୁ ଦେଖ ନାହିଁ । ସତର୍କତା ଓ ସାବଧାନତା ସହ ପାଦ ବଢ଼ା । ଏଭଳି ବସ୍ତ୍ର ପରିଧାନ କର ଯାହାକି ଲଜ୍ଜାଭରଣ ମାତ୍ର ହୋଇ ରହୁ । ଏଭଳି ଉଚିତ୍ ଆଚରଣ କଲେ ବ୍ରହ୍ମାପଦ ଲାଭ କରିପାରିବୁ ।'

ବର୍ତ୍ତମାନ ପରିପ୍ରେକ୍ଷୀରେ ନାରୀମାନେ ନିୟମତଃ ପ୍ରତି କ୍ଷେତ୍ରରେ ସ୍ୱାଧୀନତା ଲାଭ କରିଛନ୍ତି । ନିଜ ପାଇଁ ଓ ଦେଶ ପାଇଁ ଅନେକ କିଛି କରିପାରିବେ । ସମୟ ଥିଲା - ଯେତେବେଳେ ଝିଅ-ବୋହୂମାନେ ଘରୁ ବାହାରକୁ ଯାଇପାରୁ ନଥିଲେ ସେତେବେଳେ ଆମର ବରେଣ୍ୟା ଉତ୍କଳ କନ୍ୟା ମା' ରମାଦେବୀ, ମାଳତୀ ଚୌଧୁରୀ ଇତ୍ୟାଦି ଅନେକ ମଙ୍ଗଳକର କାର୍ଯ୍ୟ କରି ଯାଇଛନ୍ତି, ଭବିଷ୍ୟତକୁ ଆମ ପାଇଁ ମାର୍ଗ ଉନ୍ମୁକ୍ତ କରି ଦେଇଛନ୍ତି । ଶଙ୍କଟାପନ୍ନ କାଳରେ ସେମାନେ କଷ୍ଟ ସହି ଅନେକ କାର୍ଯ୍ୟ କରି ଯାଇଥିବାରୁ, ସେମାନେ ଆମର ନମସ୍ୟା । ସେମାନଙ୍କୁ ବତୀଖୁଣ୍ଟ କରି ଆଜିର ନାରୀ ଆଗେଇ ଚାଲୁ । ଘୋଷା, ଗୋଧା, ବିଶ୍ୱବାରା, ଅପାଲା, ଉପନିଷଦ୍, ନିଷଦ୍, ବ୍ରହ୍ମଜାୟା, ଜୁହୂ, ଅଦିତି, ଇନ୍ଦ୍ରାଣୀ, ସରମା, ରୋମଶା, ଉର୍ବଶୀ, ଲୋପାମୁଦ୍ରା, ଯମୀ, ଶାଶ୍ୱତୀ, ସୂର୍ଯ୍ୟା, ସାବିତ୍ରୀ ଆଦି ବ୍ରହ୍ମବାଦିନୀ ନାରୀଗଣ ଯେପରି ଅତି ସମ୍ମାନିତା ହୋଇ ସମାଜରେ ଶୀର୍ଷାସନ ଅଳଙ୍କୃତ କରିଥିଲେ, ଆଜିର ନାରୀ ସେହିପରି ସମ୍ମାନିତା ହେଉ ।

ଶଶିଭୂଷଣ ରଥ ସରକାରୀ ମହାବିଦ୍ୟାଳୟ
ବ୍ରହ୍ମପୁର, ଗଞ୍ଜାମ

■ ■ ■

# ଝାଡ଼ଖଣ୍ଡରେ ଓଡ଼ିଆଙ୍କ ସ୍ଥିତି

ଡକ୍ଟର ଗୁରୁପ୍ରସାଦ ମହାନ୍ତି

**ମା**ତ୍ର ଚାରିବର୍ଷର ନୂତନ ରାଜ୍ୟ ଝାଡ଼ଖଣ୍ଡ । ପୂର୍ବରୁ ଏହା ବିହାର ସହିତ ମିଶି ରହିଥିଲା । ପୂର୍ବତନ ବିହାର ରାଜ୍ୟରେ ଥିବା ୩୭ଟି ଜିଲ୍ଲା ମଧ୍ୟରୁ ଦକ୍ଷିଣାଞ୍ଚଳର ୧୮ଟି ଜିଲ୍ଲାକୁ ନେଇ ଝାଡ଼ଖଣ୍ଡ ରାଜ୍ୟ ଗଠିତ ହେଲା । ଏସବୁ ଜିଲ୍ଲାରେ ଉତ୍ତରବିହାର ପରି ବିକାଶାତ୍ମକ କାର୍ଯ୍ୟକ୍ରମ ହୋଇ ପାରିନଥିବାରୁ ସ୍ୱାଧୀନତାର ଅବ୍ୟବହିତ ପରେ ଏ ଅଞ୍ଚଳରେ ଝାଡ଼ଖଣ୍ଡ ଆନ୍ଦୋଳନ ତେଜି ଉଠିଲା । ରାଜ୍ୟର ଅଧିକାଂଶ ଅଞ୍ଚଳ ଜଙ୍ଗଲ ଅଧ୍ୟୁଷିତ ତଥା ଆଦିବାସୀ ସମ୍ପ୍ରଦାୟର ଜନସଂଖ୍ୟା ବହୁଳ ହୋଇଥିଲେ ହେଁ ଖଣିଜ ସଂପଦରେ ଭରି ରହିଥିବାରୁ ସ୍ୱାଧୀନତା ପରେ ଶିଳ୍ପାଞ୍ଚଳମାନ ଗଢ଼ି ଉଠି କର୍ମସଂସ୍ଥାନ ଉପଯୋଗୀ ହୋଇପାରିଛି । ମାତ୍ର ଏସବୁ କର୍ମସଂସ୍ଥାନରୁ ଝାଡ଼ଖଣ୍ଡର ମୂଳ ଅଧିବାସୀମାନେ ଉପକୃତ ହୋଇ ପାରିନାହାନ୍ତି । ସେଥିପାଇଁ ଝାଡ଼ଖଣ୍ଡ ଆନ୍ଦୋଳନ ଫଳବତୀ ହେଲା ।

ନୂତନ ରାଜ୍ୟ ସୃଷ୍ଟି ହେବାପରେ ଜିଲ୍ଲା ସଂଖ୍ୟା ୨୨କୁ ବୃଦ୍ଧି ପାଇଛି । ରାଜ୍ୟର ମୂଳ ଅଧିବାସୀମାନଙ୍କର ଛଅଟି ଭାଷାକୁ ସମ୍ମାନ ଦିଆଯାଏ । ସେସବୁ ହେଲା - ହିନ୍ଦୀ, ଉର୍ଦ୍ଦୁ, ବଙ୍ଗଳା, ଓଡ଼ିଆ ଏବଂ ସାନ୍ତାଳି ଭାଷା । ଏ ରାଜ୍ୟର ଅଧିକାଂଶ ଓଡ଼ିଆଭାଷୀ ଲୋକ ପୂର୍ବତନ ସିଂହଭୂମ ଜିଲ୍ଲାର ଅଧିବାସୀ । ସିଂହଭୂମି ଅଞ୍ଚଳକୁ ୩ଟି ଜିଲ୍ଲାରେ ବିଭକ୍ତ କରାଯାଇଛି । ଯଥା- ପୂର୍ବ ସିଂହଭୂମ, ପଶ୍ଚିମ ସିଂହଭୂମ ଓ ଷଢ଼େଇକଳା-ଖରସୁଆଁ । ଏହାଛଡ଼ା ଗୁମ୍ଲା ଓ ରାଞ୍ଚି ଜିଲ୍ଲାରେ ମଧ୍ୟ ବହୁ ଓଡ଼ିଆ ଗ୍ରାମ ଅଛି ।

ସ୍ୱାଧୀନତା ପୂର୍ବରୁ ଅବିଭକ୍ତ ଭାରତବର୍ଷର ଜନସଂଖ୍ୟା ଥିଲା ମାତ୍ର ୩୭ କୋଟି । ଅବିଭକ୍ତ ଭାରତ କହିଲେ, ଭାରତ, ପାକିସ୍ଥାନ, ନେପାଳ, ବଙ୍ଗଳାଦେଶ, ଭୁଟାନ ଓ ସିଂହଳକୁ ବୁଝାଯାଉଥିଲା । ସେତେବେଳେ ସିଂହଭୂମ ଜିଲ୍ଲାରେ ୯୨୧୯୫ ଓଡ଼ିଆ ଲୋକ, ବସବାସ କରୁଥିଲେ । ମାତ୍ର ବିଗତ ଅର୍ଦ୍ଧଶତାବ୍ଦୀ ମଧ୍ୟରେ ୩୭ କୋଟି ଜନସଂଖ୍ୟା ବଢ଼ି ବଢ଼ି ଦୁଇ ଶହ କୋଟି ପର୍ଯ୍ୟନ୍ତ ହେଲାବେଳକୁ ଓଡ଼ିଆମାନଙ୍କ ସଂଖ୍ୟା ୯୨୧୯୫ରୁ ବଢ଼ି ମାତ୍ର ସାଢ଼େ ଚାରିଲକ୍ଷ ବୋଲି ଦର୍ଶାଯାଉଛି । ତେବେ ୨୦୦୧ ଜନଗଣନା ରିପୋର୍ଟରୁ ଝାଡ଼ଖଣ୍ଡରେ ଓଡ଼ିଆଙ୍କ ସଂଖ୍ୟା ଠିକ୍ ଭାବେ ଜଣା ନଥିବା ସ୍ଥଳେ ୧୯୫୧ ଜନଗଣନା ଅନୁଯାୟୀ ସିଂହଭୂମି ଜିଲ୍ଲାର ଓଡ଼ିଆ ସଂଖ୍ୟା ଦେଖି ଅନ୍ୟ ଭାଷାଭାଷୀମାନଙ୍କ ସହିତ ତୁଳନା କରି ହୁଏ ।

**୧୯୫୧** ଜନଗଣନା ଅନୁଯାୟୀ ସିଂହଭୂମ ଅଞ୍ଚଳରେ ଓଡ଼ିଆ ସଂଖ୍ୟା -

| ସ୍ଥାନ | ସମୁଦାୟ ଜନସଂଖ୍ୟା | ଓଡ଼ିଆ | ହିନ୍ଦୀଭାଷୀ | ବଙ୍ଗାଳି | ହୋ | ସାନ୍ତାଳି |
|---|---|---|---|---|---|---|
| ଖରସୁଆଁ | ୫୦୯୦୦ | ୧୪୩୭୨ | ୭୦୩୩ | ୨୫୭୬ | ୧୨୪୩୨ | ୨୨୧୦ |
| ଷଢ଼େଇକଳା | ୯୦୯୩୨ | ୨୧୦୨୮ | ୫୮୦୭ | ୩୦୪୧୨ | ୧୭୦୩୧ | ୧୬୫୦୪ |
| ଚକ୍ରଧରପୁର | ୧୬୨୯୮୨ | ୨୮୮୮୦ | ୨୨୫୫୪ | ୫୨୩୮ | ୫୨୨୪୯ | ୩୬୧୪ |
| ଗୋବିନ୍ଦପୁର | ୫୦୦୯୦ | ୮୫୧୦ | ୨୬୨୨ | ୧୭୦୬୯ | ୨୫୨୬ | ୧୬୨୬୭ |
| ଘାଟଶିଳା | | | | | | |
| ଜାମସେଦପୁର | ୨୧୮୧୬୨ | ୧୯୪୦୫ | ୮୧୯୧୮ | ୫୧୫୯୨ | ୪୨୫୨ | ୧୫୬୧ |
| **ମୋଟ** | **୫୭୩୦୬୬** | **୯୨୧୯୫** | **୧୧୯୯୩୪** | **୧୦୬୮୮୭** | **୮୮୪୯୦** | **୪୦୧୯୨** |
| (ଶତାଂଶ) | ୧୦୦ | ୧୬.୦୬ | ୨୦.୯୨ | ୧୮.୬୫ | ୧୫.୪୪ | ୭.୦୧ |

ସେ ସମୟରେ ଷଢ଼େଇକଳାରେ ଓଡ଼ିଆଙ୍କ ସଂଖ୍ୟା ଶତକଡ଼ା ୨୩ ଥିବା ସ୍ଥଳେ ଖରସୁଆଁରେ ଶତକଡ଼ା ୩୦ ଭାଗ ଓ ଚକ୍ରଧରପୁରରେ ଶତକଡ଼ା ୧୮ ଭାଗ ଓଡ଼ିଆ ଲୋକ ବସବାସ କରୁଥିଲେ । ଜାମସେଦପୁର ଭଳି ନଗରାଞ୍ଚଳମାନଙ୍କରେ ହିନ୍ଦୀ ଓ ବଙ୍ଗଳାଭାଷୀ ଲୋକଙ୍କ ସଂଖ୍ୟା ଯଥେଷ୍ଟ ବେଶୀ ଥିଲା ।

୧୯୪୮ ମସିହା ଜାନୁଆରୀ ମାସରେ ଭାରତବର୍ଷର ଦେଶୀୟ ରାଜ୍ୟଗୁଡ଼ିକ ବିଭିନ୍ନ ପ୍ରଦେଶ ସହିତ ମିଶିଗଲା ବେଳେ ଷଢ଼େଇକଳା ଓ ଖରସୁଆଁର ରାଜାମାନେ ସେମାନଙ୍କ ରାଜ୍ୟକୁ ଓଡ଼ିଶା ସହିତ ମିଶାଇବାକୁ ରାଜିନାମା କରିଥିଲେ । ମାତ୍ର ବିହାରୀ ନେତାମାନେ ଏହା ବିରୁଦ୍ଧରେ ସମସ୍ତ ପ୍ରକାର ଷଡ଼ଯନ୍ତ୍ର କରି ତତ୍କାଳୀନ ରାଷ୍ଟ୍ରପତି ରାଜେନ୍ଦ୍ର ପ୍ରସାଦଙ୍କ ସହାୟତାରେ ଏ ଦୁଇ ଦେଶୀୟ ରାଜ୍ୟକୁ ଓଡ଼ିଶାଠାରୁ ବଳପୂର୍ବକ ଛଡ଼ାଇ ରଖିଲେ । ଏହାର ମୁଖ୍ୟ କାରଣ ଥିଲା ଜାମସେଦପୁର ଇସ୍ପାତ କାରଖାନା । ଷଢ଼େଇକଳା ରାଜ୍ୟର ସୀମାକୁ ଲଗାଇ ଜାମସେଦପୁର ମହାନଗରୀ ଅବସ୍ଥିତ । ଏହି ମହାନଗରୀର

ଅର୍ଦ୍ଧେକ ଅଞ୍ଚଳ ଷଢ଼େଇକଳାର ସୀମା ଭିତରେ ଅଛି । ତେଣୁ ସେସବୁ ଅଞ୍ଚଳକୁ ବିହାର ରାଜ୍ୟର ଅନ୍ତର୍ଭୁକ୍ତ କରି ସେଠାରୁ ଓଡ଼ିଆଭାଷା ଉଠାଇ ଦେବାକୁ ସରକାରୀ କୌଶଳ ଅବ୍ୟାହତ ରହିଲା । ତେଣୁ ସମଗ୍ର ସିଂହଭୂମ, ମାନଭୂମ, ଗୁମ୍‌ଲା ଓ ରାଞ୍ଚି ଜିଲ୍ଲାରେ ଥିବା ଓଡ଼ିଆ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଶିକ୍ଷକ ବଦଳରେ ହିନ୍ଦୀ ଶିକ୍ଷକ ଦେଇ ଓଡ଼ିଆ ପିଲାଙ୍କୁ ଜବରଦସ୍ତ ହିନ୍ଦୀ ପଢ଼ାଇବାର ବ୍ୟବସ୍ଥା ହେଲା ।

୧୯୫୫ ମସିହା ସୁଦ୍ଧା ଝାଡ଼ଖଣ୍ଡ ଅଞ୍ଚଳରେ ୩୬୫ଟି ଓଡ଼ିଆ ବିଦ୍ୟାଳୟ ଥିଲା । ବିହାର ମୁଖ୍ୟମନ୍ତ୍ରୀ ଶ୍ରୀକୃଷ୍ଣ ସିହ୍ନାଙ୍କଠାରୁ ଆରମ୍ଭ କରି ଲାଲୁ ଯାଦବଙ୍କ ପର୍ଯ୍ୟନ୍ତ ସମସ୍ତଙ୍କର ନୀତି ଥିଲା - ଓଡ଼ିଆ ପିଲାଙ୍କ ମୁହଁରୁ ସେମାନଙ୍କର ମାତୃଭାଷା ଓଡ଼ିଆକୁ ଛଡ଼ାଇ ନେଇ ତା'ପରିବର୍ତ୍ତେ ରାଷ୍ଟ୍ରଭାଷା ହିନ୍ଦୀକୁ ଲଦି ଦେବା । ଓଡ଼ିଆ ବିଦ୍ୟାଳୟରେ ହିନ୍ଦୀ ଶିକ୍ଷକମାନେ ଓଡ଼ିଆ ଜାଣି ନଥିବା କାରଣ ଦର୍ଶାଇ ହିନ୍ଦୀ ପାଠ୍ୟପୁସ୍ତକମାନ ପଢ଼ାଇଲେ । ସେମାନଙ୍କର ଅଭିଭାବକମାନେ ଭୟରେ ତୁଣ୍ଡ ଖୋଲି ପାରିଲେ ନାହିଁ । ଯିଏ ବା ବିରୋଧ କଲା ତା'ବିରୁଦ୍ଧରେ କାର୍ଯ୍ୟାନୁଷ୍ଠାନ କରିବାର ଷଡ଼ଯନ୍ତ୍ର ଚାଲିଲା । ଓଡ଼ିଶାର ନେତୃବର୍ଗ ଏସବୁ ଜାଣିଶୁଣି ଚୁପ୍ ରହିଲେ । କାରଣ ବିହାର ଏବଂ ଓଡ଼ିଶାରେ ସମଦଳୀୟ ସରକାର ରାଜତ୍ୱ କରୁଥିଲେ ଓ କେନ୍ଦ୍ର ନେତୃତ୍ୱ ପୂରାପୂରି ବିହାର ସପକ୍ଷରେ ଥିଲା । ବିଗତ ଅର୍ଦ୍ଧ ଶତାବ୍ଦୀ ମଧ୍ୟରେ ଝାଡ଼ଖଣ୍ଡ ଅଞ୍ଚଳର ପ୍ରାୟ ସବୁତକ ସରକାରୀ ଓଡ଼ିଆ ବିଦ୍ୟାଳୟ ହିନ୍ଦୀ ବିଦ୍ୟାଳୟରେ ପରିଣତ ହେଲା ।

କେବଳ ଯେଉଁସବୁ ଓଡ଼ିଆ ବିଦ୍ୟାଳୟ ସରକାରୀ ଅନୁଦାନ ପାଉ ନଥିଲେ ସେହିମାନେ ହିଁ ବଞ୍ଚି ରହିଲେ । ହେଲେ, ସେଠାକାର ଦରିଦ୍ର ଓଡ଼ିଆମାନେ ସେସବୁ ବିଦ୍ୟାଳୟର ବ୍ୟୟଭାର ସମ୍ଭାଳିବାକୁ ଅସମର୍ଥ ହେଲେ । ସେଥିଯୋଗୁଁ ବହୁ ବେସରକାରୀ ଓଡ଼ିଆ ବିଦ୍ୟାଳୟ ଧୀରେ ଧୀରେ ବନ୍ଦ ହୋଇଗଲା । ଜାମସେଦପୁର ମହାନଗରୀରେ ଏପରି ବିଦ୍ୟାଳୟ ସଂଖ୍ୟା ସର୍ବାଧିକ । କାରଣ, ଟାଟା କମ୍ପାନୀରେ କାମ କରୁଥିବା ଓଡ଼ିଆମାନଙ୍କ ପିଲାମାନେ ଯେଉଁସବୁ ଓଡ଼ିଆ ବିଦ୍ୟାଳୟରେ ପଢୁଥିଲେ, ସେସବୁ ବିଦ୍ୟାଳୟକୁ କମ୍ପାନୀ ତରଫରୁ ଆର୍ଥିକ ଅନୁଦାନ ଦିଆଯାଉଥିଲା । ମାତ୍ର ବିଗତ ପନ୍ଦର ବର୍ଷ ଭିତରେ ଅଧିକାଂଶ କର୍ମଚାରୀ ଅବସର ନେଇଥିବାସ୍ଥଳେ କମ୍ପାନୀ ପକ୍ଷରୁ ଅନୁଦାନ ବନ୍ଦ ହୋଇଯାଇଛି । କେବଳ ସ୍ଥାନୀୟ ଲୋକଙ୍କର ଚାନ୍ଦା ଓ ଛାତ୍ରଛାତ୍ରୀଙ୍କ ଦରମା ଉପରେ ଏସବୁ ବିଦ୍ୟାଳୟ ତିଷ୍ଠି ରହିବା ଅସମ୍ଭବ ହୋଇପଡ଼ିଛି । ତା'ଛଡ଼ା ଯେତିକି ଓଡ଼ିଆ ଲୋକ ସେଠାରେ ରହୁଛନ୍ତି ତନ୍ମଧ୍ୟରୁ ଅଧିକାଂଶ ଲୋକଙ୍କ ପିଲାମାନେ ଇଂରାଜୀ କିମ୍ବା ହିନ୍ଦୀ ବିଦ୍ୟାଳୟରେ ପଢ଼ିବାକୁ ପସନ୍ଦ କରୁଛନ୍ତି । କେବଳ ଦରିଦ୍ର ଓଡ଼ିଆ ପରିବାର ଓ ଆଦିବାସୀ ସମ୍ପ୍ରଦାୟର ପିଲାମାନେ ଓଡ଼ିଆ ମାଧ୍ୟମରେ ଶିକ୍ଷା ପାଇବାକୁ ବାଧ୍ୟ ହେଉଛନ୍ତି । ଏବେ ଝାଡ଼ଖଣ୍ଡର ସର୍ବବୃହତ୍ ଓଡ଼ିଆ ବିଦ୍ୟାଳୟ ହେଉଛି, ଜାମସେଦପୁରସ୍ଥ ପର୍ଶୁଡିହିରେ ଥିବା ସିଦୋକାହ୍ନୁ ଓଡ଼ିଆ ଉଚ୍ଚବିଦ୍ୟାଳୟ । ଏହି ବିଦ୍ୟାଳୟ ପରିସର ମଧ୍ୟରେ ପ୍ରାଥମିକ, ମାଧ୍ୟମିକ ଓ ଉଚ୍ଚ ଓଡ଼ିଆ ବିଦ୍ୟାଳୟ ଶ୍ରେଣୀମାନଙ୍କରେ ସାତଶହ ଆଦିବାସୀ ଛାତ୍ରଛାତ୍ରୀ ଓଡ଼ିଆ ଭାଷା ମାଧ୍ୟମରେ ଶିକ୍ଷା ପାଉଛନ୍ତି । ତେଣୁ ଉତ୍କଳ ସମ୍ମିଳନୀ ଜରିଆରେ ଏହି ବିଦ୍ୟାଳୟକୁ ଯଥାସମ୍ଭବ ସାହାଯ୍ୟ କରାଯାଉଛି ।

ଯେତେବେଳେ ଝାଡ଼ଖଣ୍ଡ ପ୍ରଦେଶ ସୃଷ୍ଟି ହେଲା, ସେତେବେଳକୁ ଓଡ଼ିଆ ବିଦ୍ୟାଳୟ ସଂଖ୍ୟା ମାତ୍ର ୬୫ଟି ଥିଲା । ନୂତନ ଝାଡ଼ଖଣ୍ଡ ସରକାରଙ୍କ ଶିକ୍ଷାନୀତି ଅନୁଯାୟୀ ରାଜ୍ୟର ଛାତ୍ରଛାତ୍ରୀମାନେ ସେମାନଙ୍କ ମାତୃଭାଷା ମାଧ୍ୟମରେ ପ୍ରାଥମିକ ଶିକ୍ଷା ପାଇବେ । ତଦନୁଯାୟୀ ଓଡ଼ିଆଭାଷୀ ଅଞ୍ଚଳମାନଙ୍କରେ ଥିବା ପ୍ରାଥମିକ ବିଦ୍ୟାଳୟମାନଙ୍କରେ ଓଡ଼ିଆ ଭାଷାରେ ଶିକ୍ଷା ଦିଆଯିବା କଥା । ମାତ୍ର ଥରେ ସେସବୁ ବିଦ୍ୟାଳୟ ହିନ୍ଦୀ ବିଦ୍ୟାଳୟରେ ପରିଣତ ହେବାପରେ ସେଠାକାର ସ୍ଥାନୀୟ ଲୋକେ ହିନ୍ଦୀ ମାଧ୍ୟମରେ ଶିକ୍ଷା ଦେବାରେ ଅଭ୍ୟସ୍ତ ହୋଇ ଗଲେଣି । ଏବେ ସେସବୁର ପରିବର୍ତ୍ତନ ଆଶା କରିବା ଦୁରୂହ ବ୍ୟାପାର ।

ତେବେ ଏକମାତ୍ର ଆଶ୍ୱସ୍ତିର ବିଷୟ ହେଉଛି, ବିଗତ ୪/୫ ବର୍ଷ ଧରି ଉତ୍କଳ ସମ୍ମିଳନୀ ପକ୍ଷରୁ ଝାଡ଼ଖଣ୍ଡରେ ଓଡ଼ିଆ ଶିକ୍ଷାର ଉନ୍ନତି ଦିଗରେ ଚେଷ୍ଟା ଚାଲିଛି । ୧୯୯୮ ମସିହାରୁ ୨୦୦୨ ମସିହା ମଧ୍ୟରେ ଯୁକ୍ତରାଷ୍ଟ୍ର ଆମେରିକାର ଓଡ଼ିଆମାନଙ୍କଠାରୁ କିଛି ଦାନ ସଂଗୃହୀତ ହୋଇ ୩/୪ଟି ନୂତନ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ଖୋଲା ଯାଇଥିଲା । ୨୦୦୨ ମସିହାରେ ଓଡ଼ିଶାର ତତ୍କାଳୀନ ଗଣଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ସୁରେନ୍ଦ୍ର ନାଥ ନାୟକ ଉତ୍କଳ ସମ୍ମିଳନୀ ଅନୁରୋଧରେ ଝାଡ଼ଖଣ୍ଡ ଗସ୍ତରେ ଯାଇ ଓଡ଼ିଆ ଲୋକଙ୍କର ନିଜ ମାତୃଭାଷା ପ୍ରତି ଯେଉଁଳି ମମତା ଦେଖିଲେ, ତହିଁରେ ସେ ପ୍ରୀତ ହୋଇ ସେ ରାଜ୍ୟର ଅଣସାହାଯ୍ୟପ୍ରାପ୍ତ ଓଡ଼ିଆ ବିଦ୍ୟାଳୟଗୁଡ଼ିକର ସୁରକ୍ଷା ଦିଗରେ ଚିନ୍ତା ପ୍ରକଟ କଲେ । ଫଳରେ ସେଠାରେ ରାଜ୍ୟ ସରକାରଙ୍କ ଅନୁଦାନ ପାଉ ନଥିବା ସମସ୍ତ ସରକାରୀ ସ୍ୱୀକୃତିପ୍ରାପ୍ତ ଓଡ଼ିଆ ବିଦ୍ୟାଳୟମାନଙ୍କୁ ୨୦୦୨-୦୩ ଆର୍ଥିକ ବର୍ଷରେ ଓଡ଼ିଶା ସରକାରଙ୍କ ପକ୍ଷରୁ ଅନୁଦାନ ଯୋଗାଇ ଦିଆଗଲା । ଛଅଗୋଟି ଓଡ଼ିଆ ଉଚ୍ଚବିଦ୍ୟାଳୟ ଓ ପାଞ୍ଚଗୋଟି ମଧ୍ୟ ବିଦ୍ୟାଳୟ ଏହି ସାହାଯ୍ୟ ପାଇ ଶିକ୍ଷକମାନଙ୍କୁ ବାକିଆ ଦରମା ପଇଠ କରିପାରିଲେ । ଅଣସ୍ୱୀକୃତ ଓଡ଼ିଆ ବିଦ୍ୟାଳୟଗୁଡ଼ିକୁ ଉତ୍କଳ ସମ୍ମିଳନୀ ଜରିଆରେ ସାହାଯ୍ୟ ଦେବାପାଇଁ ନିଷ୍ପତ୍ତି ନିଆଗଲା ।

୨୦୦୩ ମସିହା ଜୁଲାଇ ମାସରେ ଜାମସେଦପୁରଠାରେ ଉତ୍କଳ ସମ୍ମିଳନୀର ଶତବାର୍ଷିକ ଉତ୍ସବ ପାଳିତ ହେଲା । ଏହି ଉତ୍ସବରେ ଯୋଗଦେବା ପାଇଁ ଓଡ଼ିଶା ବିଧାନସଭାର ବାଚସ୍ପତି, ରାଜସ୍ୱ ମନ୍ତ୍ରୀ ଶ୍ରୀଯୁକ୍ତ ବିଶ୍ୱଭୂଷଣ ହରିଚନ୍ଦନ, ଗଣଶିକ୍ଷା ମନ୍ତ୍ରୀ ଶ୍ରୀଯୁକ୍ତ ସୁରେନ୍ଦ୍ରନାଥ ନାୟକ ଜାମସେଦପୁର ଯାଇ ସେଠାକାର ଶିକ୍ଷାମନ୍ତ୍ରୀ

ଶ୍ରୀଯୁକ୍ତ ପଶୁପତିନାଥ ସିଂହ ଓ ସ୍ୱାସ୍ଥ୍ୟମନ୍ତ୍ରୀ ଶ୍ରୀଯୁକ୍ତ ଦୀନେଶ କୁମାର ଷଡଙ୍ଗୀଙ୍କ ସହିତ ଆଲୋଚନା କରି ଓଡ଼ିଆ ଛାତ୍ରଛାତ୍ରୀମାନେ ଓଡ଼ିଆ ମାଧ୍ୟମରେ ଶିକ୍ଷା ପାଇବା ସମ୍ପର୍କରେ କେତେକ ନିଷ୍ପତ୍ତି ନେଲେ । ତଦନୁଯାୟୀ, ଓଡ଼ିଆ ବିଦ୍ୟାଳୟମାନଙ୍କରେ ହିନ୍ଦୀ ଶିକ୍ଷକ ବଦଳରେ ଓଡ଼ିଆ ଶିକ୍ଷକ ନିଯୁକ୍ତ କରିବା ଓ ଝାଡ଼ଖଣ୍ଡରେ ପ୍ରଚଳିତ ହିନ୍ଦୀ ପାଠ୍ୟପୁସ୍ତକ ସବୁକୁ ଓଡ଼ିଆ ଭାଷାରେ ଅନୁବାଦ କରି ଓଡ଼ିଶା ସରକାର ଛପାଇବା ପରେ ଝାଡ଼ଖଣ୍ଡ ରାଜ୍ୟର ଓଡ଼ିଆ ବିଦ୍ୟାଳୟମାନଙ୍କୁ ପଠାଇବା ବିଷୟରେ ରାଜିନାମା ହେଲା । ତଦନୁଯାୟୀ ପ୍ରାୟ ଏକବର୍ଷ ହେଲା ଝାଡ଼ଖଣ୍ଡରେ ପ୍ରଚଳିତ ପାଠ୍ୟପୁସ୍ତକ ସବୁ ଅଣାଯାଇ ଓଡ଼ିଶା ରାଜ୍ୟ ଶିକ୍ଷା ପ୍ରଶିକ୍ଷଣ ଗବେଷଣା ପ୍ରତିଷ୍ଠାନକୁ କାର୍ଯ୍ୟାନୁଷ୍ଠାନ ଲାଗି ଦିଆଯାଇଛି । ମାତ୍ର ଏ ପର୍ଯ୍ୟନ୍ତ ସବୁତକ ବହିର ଓଡ଼ିଆ ଅନୁବାଦ ହୋଇପାରିନାହିଁ ।

ତେବେ ଓଡ଼ିଶା ସରକାରଙ୍କ ସାହାଯ୍ୟ ପାଇ ଉତ୍କଳ ସମ୍ମିଳନୀ ପକ୍ଷରୁ ସେ ରାଜ୍ୟର ଗ୍ରାମାଞ୍ଚଳରେ ଓଡ଼ିଆ ପ୍ରାଥମିକ ବିଦ୍ୟାଳୟମାନ ଖୋଲିବା କାର୍ଯ୍ୟ ଆରମ୍ଭ ହୋଇଯାଇଛି । ଏ ଯାବତ୍ ନିମ୍ନ ପ୍ରଦତ୍ତ ଜିଲ୍ଲାମାନଙ୍କରେ ଖୋଲା ଯାଇଥିବା ପ୍ରାଥମିକ ଓଡ଼ିଆ ବିଦ୍ୟାଳୟଗୁଡ଼ିକର ସଂଖ୍ୟା ଦିଆଗଲା ।

| ଜିଲ୍ଲାର ନାମ | ଓଡ଼ିଆ ପ୍ରାଥମିକ ବିଦ୍ୟାଳୟ ସଂଖ୍ୟା | ଛାତ୍ରଛାତ୍ରୀ ସଂଖ୍ୟା | ଶିକ୍ଷକ/ଶିକ୍ଷୟିତ୍ରୀ ସଂଖ୍ୟା |
|---|---|---|---|
| ପୂର୍ବୀ ସିଂହଭୂମ | ୧୨ | ୫୧୮ | ୧୪ |
| ପଶ୍ଚିମୀ ସିଂହଭୂମ | ୧୬ | ୬୨୮ | ୧୬ |
| ଷଢ଼େଇକଳା-ଖରସୁଆଁ | ୧୦ | ୩୪୪ | ୧୦ |

ଏତଦ୍‌ବ୍ୟତୀତ ଉତ୍କଳ ସମ୍ମିଳନୀ ଜରିଆରେ ତିନିଗୋଟି ଓଡ଼ିଆ ଉଚ୍ଚବିଦ୍ୟାଳୟ ଓ ଗୋଟିଏ ମଧ-ବିଦ୍ୟାଳୟର ଗୃହ ନିର୍ମାଣ ଓ ମରାମତି କାର୍ଯ୍ୟ ସହିତ ଛାତ୍ରଛାତ୍ରୀଙ୍କ ପାଇଁ ଡେସ୍କ, ବେଞ୍ଚ ଯୋଗାଣ, ପୁସ୍ତକ ଯୋଗାଣ ଓ ଶିକ୍ଷକ ଦରମା ଦିଆଯାଉଛି । ଝାଡ଼ଖଣ୍ଡରେ ଉତ୍କଳ ସମ୍ମିଳନୀ ଜରିଆରେ ପାଞ୍ଚଗୋଟି ଓଡ଼ିଆ ପାଠାଗାର ପ୍ରତିଷ୍ଠା କରାଯାଇଛି । ପାଠାଗାରମାନଙ୍କୁ ଓଡ଼ିଆ ସମ୍ବାଦପତ୍ର ମଧ ଯୋଗାଇ ଦିଆଯାଉଛି । ଫଳରେ ସ୍ଥାନୀୟ ଲୋକେ ବହି ପଢ଼ିବାକୁ ପାଇବା ସଂଗେସଂଗେ ଦୈନିକ ଓଡ଼ିଆ ଖବର କାଗଜ ପଢ଼ିବାକୁ ପାଉଛନ୍ତି ।

ଯାହା ଦେଖାଯାଉଛି, ଛତିଶଗଡ଼, ଆନ୍ଧ୍ର ବା ପଶ୍ଚିମବଙ୍ଗର ଓଡ଼ିଆମାନଙ୍କ ତୁଳନାରେ ଝାଡ଼ଖଣ୍ଡର ଓଡ଼ିଆମାନେ ନିଜ ମାତୃଭାଷାର ସୁରକ୍ଷା ଲାଗି ଅଧିକ ସଚେତନ । ଏ ପର୍ଯ୍ୟନ୍ତ ଝାଡ଼ଖଣ୍ଡରେ ଓଡ଼ିଆଭାଷା ଅକ୍ଷୁଣ୍ଣ ଅଛି । ଲୋକେ ବାଧ୍ୟତାମୂଳକ ଭାବେ ହିନ୍ଦୀ ପଢ଼ିଲେ ମଧ ନିଜ ମାତୃଭାଷାର ପୂର୍ଣ୍ଣ ବ୍ୟବହାର କରୁଛନ୍ତି । ତେଣୁ ସେହି ରାଜ୍ୟରେ ଓଡ଼ିଆ ଜାତିର ସୁରକ୍ଷା ପାଇଁ କାର୍ଯ୍ୟ କରାଯିବା ସର୍ବାଦୌ ପ୍ରୟୋଜନ ।

କେନ୍ଦ୍ର ଉପସଭାପତି
ଉତ୍କଳ ସମ୍ମିଳନୀ, ଭୁବନେଶ୍ୱର

# ପଦ୍ମଶ୍ରୀ ସଚ୍ଚି ରାଉତରାୟଙ୍କ ମୃତ୍ୟୁରେ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀଙ୍କ ଶୋକ

ପଦ୍ମଶ୍ରୀ ସଚ୍ଚିଦାନନ୍ଦ ରାଉତରାୟଙ୍କ ବିୟୋଗରେ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଗଭୀର ଶୋକ ପ୍ରକାଶ କରିଛନ୍ତି ।

ମନ୍ତ୍ରୀ ଶ୍ରୀ ନାୟକ ତାଙ୍କ ଶୋକବାର୍ତ୍ତାରେ କହିଛନ୍ତି ଯେ କବି ସଚ୍ଚି ରାଉତରାୟଙ୍କ ମୃତ୍ୟୁ ଖବର ପାଇ ସେ ମର୍ମାହତ । ଆଧୁନିକ ଓଡ଼ିଆ କବିତା କ୍ଷେତ୍ରରେ ନବଯୁଗର ଉନ୍ମେଷ, ନୂଆ ଆଂଗିକ ଓ ଭାବର ପ୍ରବର୍ତ୍ତକ, ସ୍ୱାଧୀନତା ସଂଗ୍ରାମୀ କବି ସଚ୍ଚି ରାଉତରାୟ ସାମଗ୍ରିକ ଓଡ଼ିଆ ସାହିତ୍ୟର ଏକ ସମ୍ଭ୍ରମଶୀଳ ପରିଚୟ ଥିଲେ । ବିଗତ ୭୦ ବର୍ଷରୁ ଊର୍ଦ୍ଧ୍ୱ ଧରି ନିରବଚ୍ଛିନ୍ନ ଭାବେ କଲମ ଚଳାଇ ସେ ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଛନ୍ତି । ତାଙ୍କ ପରି ଜଣେ ବିପ୍ଳବୀ ଓ ଦୂରଦୃଷ୍ଟି ସଂପନ୍ନ କବିଙ୍କ ସାରସ୍ୱତ ସ୍ୱାକ୍ଷର ଚିର ଅମଳିନ, ଶାସ୍ୱତ ଓ ଶ୍ରଦ୍ଧେୟ ହୋଇ ରହିବ । ତାଙ୍କର ମୃତ୍ୟୁରେ ଓଡ଼ିଆ ସାହିତ୍ୟ ଜଗତରୁ ଏକ ଉଜ୍ଜ୍ୱଳତମ ତାରକା ଅପସରି ଗଲା ବୋଲି ମନ୍ତ୍ରୀ ଶ୍ରୀ ନାୟକ କହିଛନ୍ତି ।

ମନ୍ତ୍ରୀ ଶ୍ରୀ ନାୟକ ତାଙ୍କର ଶୋକ ସନ୍ତପ୍ତ ପରିବାରବର୍ଗଙ୍କ ପ୍ରତି ଗଭୀର ସମବେଦନା ଜଣାଇବା ସହିତ ସ୍ୱର୍ଗତଃ ଆତ୍ମାର ସଦ୍‌ଗତି କାମନା କରିଛନ୍ତି ।

# ସ୍ୱାଧୀନ ଓଡ଼ିଶାର ପ୍ରଥମ ଲୋକସଭା ନିର୍ବାଚନ ମଣ୍ଡଳୀର ପ୍ରଥମ ସଭ୍ୟ

ଗନ୍ଧର୍ବ ସେନ ରଣା

ସର୍ବସାଧାରଣଙ୍କ ପ୍ରତିନିଧିତ୍ୱ ଆଇନ, ୧୯୫୧ ଅନୁସାରେ ଲୋକସଭାକୁ ପ୍ରତ୍ୟକ୍ଷ ନିର୍ବାଚନରେ ନିର୍ବାଚିତ ହୋଇ ସଭ୍ୟମାନେ ସଂପୃକ୍ତ ନିର୍ବାଚନ ମଣ୍ଡଳୀର ପ୍ରତିନିଧିତ୍ୱ କରିବା ଦୃଷ୍ଟେ ନିର୍ବାଚନ ମଣ୍ଡଳୀର ସୀମା ନିର୍ଦ୍ଧାରଣର ଆବଶ୍ୟକତାକୁ ନେଇ ପ୍ରଥମ ସୀମା ନିର୍ଦ୍ଧାରଣ ହୋଇଥିଲା, ଭାରତର ରାଷ୍ଟ୍ରପତିଙ୍କ ଅନୁମୋଦନକ୍ରମେ ୧୯୫୧ ମସିହାରେ । ପ୍ରଥମ ସାଧାରଣ ନିର୍ବାଚନ, ୧୯୫୨ ପାଇଁ ଭାରତର ୪୦୧ ଗୋଟି ଆସନ ମଧ୍ୟରୁ ଓଡ଼ିଶା ପାଇଁ ସାଧାରଣ-୧୩, ହରିଜନ-୩, ଆଦିବାସୀ-୪ ରୂପେ ମୋଟ ୨୦ ଗୋଟି ଆସନ ନିମନ୍ତେ ୧୬ ଗୋଟି ନିର୍ବାଚନ ମଣ୍ଡଳୀ ଆବଣ୍ଟିତ ହୋଇଥିଲା । ସେଥିମଧ୍ୟରୁ ଦୁଇ ସଭ୍ୟ ବିଶିଷ୍ଟ ନିର୍ବାଚନ ମଣ୍ଡଳୀ ଥିଲା ଚାରିଗୋଟି ଏବଂ ଏକ ଆସନ ବିଶିଷ୍ଟ ନିର୍ବାଚନ ମଣ୍ଡଳୀ ୧୨ ଗୋଟି, ଯଥା-

**ଦୁଇ ସଭ୍ୟ ବିଶିଷ୍ଟ ନିର୍ବାଚନ ମଣ୍ଡଳୀ**

୧. କଳାହାଣ୍ଡି-ବଲାଙ୍ଗୀର (ସାଧାରଣ ଓ ଆଦିବାସୀ)

୨. ଯାଜପୁର-କେନ୍ଦୁଝର (ସାଧାରଣ ଓ ହରିଜନ)

୩. ଢେଙ୍କାନାଳ-ପଶ୍ଚିମ କଟକ (ସାଧାରଣ ଓ ହରିଜନ)

୪. ବାଲେଶ୍ୱର (ସାଧାରଣ ଓ ହରିଜନ) ଏବଂ

ଏକ ଆସନ ବିଶିଷ୍ଟ ନିର୍ବାଚନ ମଣ୍ଡଳୀଗୁଡ଼ିକର ନାମ ହେଲା-

୫. ଗଞ୍ଜାମ ଦକ୍ଷିଣ, ୬. କେନ୍ଦ୍ରାପଡ଼ା, ୭. ସୁନ୍ଦରଗଡ଼ (ଆଦିବାସୀ), ୮. ମୟୂରଭଞ୍ଜ (ଆଦିବାସୀ), ୯. ପୁରୀ, ୧୦. ଖୋର୍ଦ୍ଧା, ୧୧. ସମ୍ବଲପୁର, ୧୨. ଘୁମୁସର, ୧୩. ନବରଙ୍ଗପୁର, ୧୪. କଟକ, ୧୫. ବରଗଡ଼, ୧୬. ରାୟଗଡ଼ା-ଫୁଲବାଣୀ (ଆଦିବାସୀ) ।

ଏହି ନିର୍ବାଚନ ମଣ୍ଡଳୀଗୁଡ଼ିକରୁ ନିର୍ବାଚିତ ହୋଇଥିବା ସଭ୍ୟମାନେ ସ୍ୱାଧୀନ ଓଡ଼ିଶାର ପ୍ରଥମ ଲୋକସଭା ସଦସ୍ୟ ହେବାର ଗୌରବ ଅର୍ଜନ କରିଥିଲେ, ଯଥା- ସର୍ବଶ୍ରୀ ମହାରାଜା ଆର.ଏନ. ସିଂହଦେଓ, ଗିରିଧାରୀ ଭୋଇ (ଉଭୟେ ଗଣତନ୍ତ୍ର ପରିଷଦ), ଭୁବନାନନ୍ଦ ଦାସ (କଂଗ୍ରେସ), ଲକ୍ଷ୍ମୀଧର ଜେନା (ଗଣତନ୍ତ୍ର ପରିଷଦ), ସାରଙ୍ଗଧର ଦାସ (ସୋସାଲିଷ୍ଟ), ନିରଞ୍ଜନ ଜେନା, ଭାଗବତ ସାହୁ, କାହ୍ନୁଚରଣ ଜେନା (ସମସ୍ତେ କଂଗ୍ରେସ), ବିଜୟ ଚନ୍ଦ୍ର ଦାସ (କମ୍ୟୁନିଷ୍ଟ), ନିତ୍ୟାନନ୍ଦ କାନୁନ୍‌ଗୋ, ଶିବନାରାୟଣ ସିଂହ, ରାମଚନ୍ଦ୍ର ମାଝୀ, ଲୋକନାଥ ମିଶ୍ର, ଲିଙ୍ଗରାଜ ମିଶ୍ର (ସମସ୍ତେ କଂଗ୍ରେସ), ନଟବର ପାଣ୍ଡେ (ଗଣତନ୍ତ୍ର ପରିଷଦ), ଉମାଚରଣ ପଟ୍ଟନାୟକ (ସ୍ୱାଧୀନ ପାର୍ଟି), ପୁନାଦା ଶୁବାରାଓ (ଗଣତନ୍ତ୍ର ପରିଷଦ), ହରେକୃଷ୍ଣ ମହତାବ (କଂଗ୍ରେସ), ଘନଶ୍ୟାମ ଦାସଥିରାନୀ (ସ୍ୱାଧୀନ ପାର୍ଟି), ତୋୟାକା ସାଙ୍ଗମା (କଂଗ୍ରେସ) ।

ଉପରୋକ୍ତ କୋଡ଼ିଏ ଜଣ ସଭ୍ୟଙ୍କ ମଧ୍ୟରୁ ତୋୟାକା ସାଙ୍ଗମା (ଆଦିବାସୀ) ପ୍ରଥମଥର ପାଇଁ ରାୟଗଡ଼ା-ଫୁଲବାଣୀ ନିର୍ବାଚନ ମଣ୍ଡଳୀରୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇଥିଲେ ।

ପ୍ରଥମ ସୀମା ନିର୍ଦ୍ଧାରଣ କମିଶନଙ୍କ ୧୯୫୭ ଆଦେଶ ଅନୁସାରେ ଭାରତର ନିର୍ବାଚନ ମଣ୍ଡଳୀର ସଂଖ୍ୟା ୪୦୩କୁ ବୃଦ୍ଧି ପାଇବା ସହ ଓଡ଼ିଶା ପାଇଁ ସାଧାରଣ-୧୩ ବଦଳରେ ୧୨, ହରିଜନ-୩ ବଦଳରେ ୪ ଏବଂ ଆଦିବାସୀ ଆସନ ୪ ଗୋଟି ରୂପେ ମୋଟ ୨୦ ଜଣ ସଭ୍ୟଙ୍କ ପାଇଁ ୧୪ ଗୋଟି ନିର୍ବାଚନ ମଣ୍ଡଳୀ ଆବଣ୍ଟିତ ହୋଇଥିଲା । ପ୍ରଥମ ସାଧାରଣ ନିର୍ବାଚନ ବେଳେ ଦୁଇଟି ସ୍ଥାନର ନାମକରଣ ଥିବା ନିର୍ବାଚନ ମଣ୍ଡଳୀଗୁଡ଼ିକୁ ପରିବର୍ତ୍ତିତ କରି ଏକ ସ୍ଥାନର ନାମ ନେଇ ପାଞ୍ଚଗୋଟି ଦୁଇ ସଭ୍ୟ ବିଶିଷ୍ଟ ନିର୍ବାଚନ ମଣ୍ଡଳୀ ସୃଷ୍ଟି ହେବା ସହ ଆଉ ପାଞ୍ଚଗୋଟି ଏକ ଆସନ ବିଶିଷ୍ଟ ନିର୍ବାଚନ ମଣ୍ଡଳୀର ନୂତନ ନାମକରଣ କରାଯାଇଥିଲା, ଯଥା-

**ଦୁଇ ସଭ୍ୟ ବିଶିଷ୍ଟ ନୂତନ ନିର୍ବାଚନ ମଣ୍ଡଳୀ**

୧୭. କଳାହାଣ୍ଡି (କଳାହାଣ୍ଡି-ବଲାଙ୍ଗୀର ନାମ ପରିବର୍ତ୍ତେ) ସାଧାରଣ ଓ ହରିଜନ

୧୮. ସମ୍ବଲପୁର (କଳାହାଣ୍ଡି-ବଲାଙ୍ଗୀର ନାମ ପରିବର୍ତ୍ତେ) ସାଧାରଣ ଓ ହରିଜନ (ସମ୍ବଲପୁର ହରିଜନ ନୂତନ ଭାବେ ସୃଷ୍ଟି)

୧୯. କେନ୍ଦ୍ରାପଡ଼ା (କେନ୍ଦ୍ରାପଡ଼ା-ହରିଜନ ନୂତନ ଭାବେ ସୃଷ୍ଟି) ସାଧାରଣ ଓ ହରିଜନ

୨୦. ଗଞ୍ଜାମ (ଗଞ୍ଜାମ ଦକ୍ଷିଣ ଓ ଘୁମୁସରର ମିଶ୍ରଣଜନିତ ନୂତନ ନାମ) ସାଧାରଣ ଓ ହରିଜନ

୨୧. କୋରାପୁଟ (ନୂତନ ଭାବେ ସୃଷ୍ଟି) ସାଧାରଣ ଓ ଆଦିବାସୀ

ନୂତନ ନାମକରଣ ହୋଇଥିବା ଏକ ଆସନ ବିଶିଷ୍ଟ ନିର୍ବାଚନ ମଣ୍ଡଳୀଗୁଡ଼ିକର ନାମ, ଯଥା- ୨୨. ଅନୁଗୋଳ (ବରଗଡ଼ ନିର୍ବାଚନ ମଣ୍ଡଳୀ ପରିବର୍ତ୍ତେ), ୨୩. କେନ୍ଦୁଝର (ଯାଜପୁର-କେନ୍ଦୁଝର ନିର୍ବାଚନ ମଣ୍ଡଳୀ ପରିବର୍ତ୍ତେ), ୨୪. ଭୁବନେଶ୍ୱର (ନୂତନ ଭାବେ ସୃଷ୍ଟି), ୨୫. ଢେଙ୍କାନାଳ (ଢେଙ୍କାନାଳ-ପଶ୍ଚିମ କଟକ ପରିବର୍ତ୍ତେ) ।

ପ୍ରଥମ ସାଧାରଣ ନିର୍ବାଚନ ବେଳେ ଥିବା ବାଲେଶ୍ୱର (ଦ୍ୱୈତ ଆସନ ବିଶିଷ୍ଟ) ସମେତ ଅନ୍ୟ ଚାରିଗୋଟି ଏକ ଆସନ ବିଶିଷ୍ଟ ନିର୍ବାଚନ ମଣ୍ଡଳୀର ନାମ ଅପରିବର୍ତ୍ତିତ ରହିଥିଲା ।

ଉପରୋକ୍ତ ନଅଗୋଟି ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ସେହି ନିର୍ବାଚନ ମଣ୍ଡଳୀର ପ୍ରଥମ ସଭ୍ୟ ଭାବେ ଲୋକସଭାରେ ଓଡ଼ିଶାର ପ୍ରତିନିଧିତ୍ୱ କରିଥିବା ସଭ୍ୟମାନେ ହେଲେ- ସର୍ବଶ୍ରୀ ପ୍ରତାପକେଶରୀ ଦେବ, ବିଜୟ ଚନ୍ଦ୍ର ପ୍ରଧାନ (ଉଭୟେ ଗଣତନ୍ତ୍ର ପରିଷଦ), ବନମାଳୀ କୁମ୍ଭାର (କଂଗ୍ରେସ), ବୈଷ୍ଣବ ଚରଣ ମଳିକ (ପ୍ରଜା ସୋସାଲିଷ୍ଟ ପାର୍ଟି), ମୋହନ ନାୟକ (କଂଗ୍ରେସ), ଉମାଚରଣ ପଟ୍ଟନାୟକ (ସ୍ୱାଧୀନ ପାର୍ଟି), ରଚାକୋଣ୍ଡା ଜଗନ୍ନାଥ ରାଓ, ତୋୟାକା ସାଙ୍ଗମା (ଉଭୟେ କଂଗ୍ରେସ), ପ୍ରତାପ ଗଙ୍ଗଦେବ ବଡ଼କୁମାର (ଗଣତନ୍ତ୍ର ପରିଷଦ), ଲକ୍ଷ୍ମୀନାରାୟଣ ଭଞ୍ଜଦେଓ, ନୃସିଂହ ଚରଣ ସାମନ୍ତ ସିଂହାର (ଉଭୟେ କଂଗ୍ରେସ) । ପ୍ରକାଶ ଥାଉକି, ତୋୟାକା ସାଙ୍ଗମା ପ୍ରଥମ ସାଧାରଣ ନିର୍ବାଚନରେ ରାୟଗଡ଼ା-ଫୁଲବାଣୀ ନିର୍ବାଚନ ମଣ୍ଡଳୀରୁ ନିର୍ଦ୍ୱନ୍ଦରେ ନିର୍ବାଚିତ ହୋଇଥିଲେ ।

ଦୁଇସଭ୍ୟ ବିଶିଷ୍ଟ ନିର୍ବାଚନ ମଣ୍ଡଳୀ ପ୍ରତ୍ୟାହାର ଆଇନ, ୧୯୬୧ ବଳରେ ଭାରତର ଲୋକସଭା ନିର୍ବାଚନ ମଣ୍ଡଳୀର ସଂଖ୍ୟା ୪୯୪କୁ ବୃଦ୍ଧି ପାଇବା ଅବକାଶରେ ଓଡ଼ିଶାର ଥିବା ଛଅଗୋଟି ଦ୍ୱୈତ ନିର୍ବାଚନ ମଣ୍ଡଳୀ ବିଲୋପ ହୋଇଯାଇଥିଲା ଏବଂ ସେସବୁର ନାମ ସହିତ ଆଉ ଛଅଗୋଟି ନୂତନ ନିର୍ବାଚନ ମଣ୍ଡଳୀର ନାମକରଣ ହୋଇଥିଲା, ଯଥା-

୨୬. ଭଦ୍ରକ ହରିଜନ (ବାଲେଶ୍ୱର ଏସ୍.ସି. ବଦଳରେ), ୨୭. ଫୁଲବାଣୀ (କଳାହାଣ୍ଡି ଭାଗ ଭାଗ ହେବା ପରେ), ୨୮. ଭଞ୍ଜନଗର ହରିଜନ, ୨୯. ଛତ୍ରପୁର (ଗଞ୍ଜାମ ଭାଗ ଭାଗ ହୋଇ ଦୁଇଟି ନିର୍ବାଚନ ମଣ୍ଡଳୀ ଗଠିତ ହୋଇଥିଲା), ୩୦. ଯାଜପୁର ହରିଜନ ( କେନ୍ଦ୍ରାପଡ଼ା ଏସ୍.ସି. ବଦଳରେ), ୩୧. ନବରଙ୍ଗପୁର (କୋରାପୁଟ ଭାଗ ଭାଗ ହେବା ପରେ) ।

ଉପରୋକ୍ତ ନିର୍ବାଚନ ମଣ୍ଡଳୀଗୁଡ଼ିକର ପ୍ରଥମ ନିର୍ବାଚିତ ଲୋକସଭା ସଦସ୍ୟଭାବେ ଗୌରବ ଅର୍ଜ୍ଜନ କରିଥିବା ସଭ୍ୟମାନେ ହେଲେ - ସର୍ବଶ୍ରୀ କାହ୍ନୁଚରଣ ଜେନା (କଂଗ୍ରେସ), ରାଜେନ୍ଦ୍ର କୋହର (ଗଣତନ୍ତ୍ର ପରିଷଦ), ମୋହନ ନାୟକ (କଂଗ୍ରେସ), ଅନନ୍ତ ତ୍ରିପାଠୀ ଶର୍ମା (କଂଗ୍ରେସ), ରାମଚନ୍ଦ୍ର ମଳିକ (କଂଗ୍ରେସ), ହୃଷିକେଶ ମହାନନ୍ଦ (ଗଣତନ୍ତ୍ର ପରିଷଦ) । ପ୍ରକାଶ ଥାଉକି, ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା ପ୍ରଥମ ସାଧାରଣ ନିର୍ବାଚନ ପରେ ଗଞ୍ଜାମ ନିର୍ବାଚନ ମଣ୍ଡଳୀରୁ ଉପନିର୍ବାଚନରେ ନିର୍ବାଚିତ ହୋଇ ପ୍ରଥମ ସଭ୍ୟ ହୋଇପାରିଥିଲେ ।

ଚତୁର୍ଥ ସାଧାରଣ ନିର୍ବାଚନ ୧୯୬୭ ସମୟରେ ତିନୋଟି ନିର୍ବାଚନ ମଣ୍ଡଳୀର ମର୍ଯ୍ୟାଦାରେ ପରିବର୍ତ୍ତନ କରାଯାଇ ନୂତନ ନାମକରଣ କରାଯାଇଥିଲା, ଯଥା-

୩୩. ବଲାଙ୍ଗୀର (ବଲାଙ୍ଗୀର ଏସ୍.ସି. ବଦଳରେ), ୩୪. କେନ୍ଦୁଝର ଏସ୍.ଟି. (କେନ୍ଦୁଝର ସାଧାରଣ ବଦଳରେ), ୩୫. ଫୁଲବାଣୀ ଏସ୍.ସି. (ଫୁଲବାଣୀ ସାଧାରଣ ବଦଳରେ)

ଉପରୋକ୍ତ ନିର୍ବାଚନ ମଣ୍ଡଳୀଗୁଡ଼ିକର ପ୍ରଥମ ନିର୍ବାଚିତ ସଭ୍ୟଭାବେ ଗୌରବ ଅର୍ଜ୍ଜନ କରିଥିବା ବ୍ୟକ୍ତି ବିଶେଷ ହେଲେ ସର୍ବଶ୍ରୀ ରାଜରାଜ ସିଂହଦେଓ, ଗୁରୁଚରଣ ନାୟକ, ଅନିରୁଦ୍ଧ ଦୀପା (ସମସ୍ତେ ସ୍ୱତନ୍ତ୍ର) ।

ତୃତୀୟ ସୀମା ନିର୍ଦ୍ଧାରଣ କମିଶନ ୧୯୭୪ଙ୍କ ଆଦେଶ ମତେ ଭାରତର ନିର୍ବାଚନ ମଣ୍ଡଳୀର ସଂଖ୍ୟା ୫୪୨କୁ ବୃଦ୍ଧି ପାଇ ଓଡ଼ିଶାକୁ ମୋଟ ୨୧ ଗୋଟି ନିର୍ବାଚନ ମଣ୍ଡଳୀ ଆବଣ୍ଟିତ ହୋଇଥିଲା । ସେହି ଅନୁସାରେ ୩୬. ଜଗତସିଂହପୁର ନାମରେ ଏକ ନୂଆ ନିର୍ବାଚନ ମଣ୍ଡଳୀ ସୃଷ୍ଟି ହେବା ସହିତ ଭଞ୍ଜନଗରକୁ ୩୭. ଆସ୍କା, ଛତ୍ରପୁରକୁ ୩୮. ବ୍ରହ୍ମପୁର, ଅନୁଗୋଳକୁ ୩୯. ଦେବଗଡ଼ ନିର୍ବାଚନ ମଣ୍ଡଳୀ ନାମରେ ନାମିତ କରାଯାଇ ୧୯୭୭ ମସିହାରେ ସାଧାରଣ ନିର୍ବାଚନ ମଣ୍ଡଳୀ ଅନୁଷ୍ଠିତ ହୋଇଥିଲା ।

ଉପରୋକ୍ତ ଚାରିଗୋଟି ନିର୍ବାଚନ ମଣ୍ଡଳୀରୁ ଯଥାକ୍ରମେ ସର୍ବଶ୍ରୀ ପ୍ରଦ୍ୟୁମ୍ନ କିଶୋର ବଳ (ଜନତା), ରାମଚନ୍ଦ୍ର ରଥ, ରଚାକୋଣ୍ଡା ଜଗନ୍ନାଥ ରାଓ (ଉଭୟେ କଂଗ୍ରେସ), ପବିତ୍ର ମୋହନ ପ୍ରଧାନ (ଜନତା) ନିର୍ବାଚିତ ହୋଇ ସଂପୃକ୍ତ ନିର୍ବାଚନ ମଣ୍ଡଳୀର ପ୍ରଥମ ଲୋକସଭା ସଭ୍ୟ ଭାବେ ଗୌରବ ଅର୍ଜ୍ଜନ କରିଥିଲେ ।

ଭିନ୍ନ ଭିନ୍ନ ସମୟରେ ଭିନ୍ନ ଭିନ୍ନ ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ସଂପୃକ୍ତ ଲୋକସଭା ନିର୍ବାଚନ ମଣ୍ଡଳୀର ପ୍ରଥମ ନିର୍ବାଚିତ ସଭ୍ୟ ହେବାର ଗୌରବ ଅର୍ଜ୍ଜନ କରିଥିବା ସଦସ୍ୟମାନେ ହେଲେ- ଶ୍ରୀ କାହ୍ନୁଚରଣ ଜେନା - ବାଲେଶ୍ୱର (ଏସ୍.ସି.) (ପ୍ରଥମ ସାଧାରଣ ନିର୍ବାଚନ) ଏବଂ ଭଦ୍ରକ (ଏସ୍.ସି.) (ତୃତୀୟ ସାଧାରଣ ନିର୍ବାଚନ),

ଶ୍ରୀ ଉମାଚରଣ ପଟ୍ଟନାୟକ - ଘୁମୁସର (ପ୍ରଥମ ସାଧାରଣ ନିର୍ବାଚନ) ଏବଂ ଗଞ୍ଜାମ ସାଧାରଣ (ଦ୍ୱିତୀୟ ସାଧାରଣ ନିର୍ବାଚନ), ଶ୍ରୀ ଟୋୟାକା ସାଙ୍ଗମା - ରାୟଗଡ଼ା-ଫୁଲବାଣୀ (ପ୍ରଥମ ସାଧାରଣ ନିର୍ବାଚନ) ଏବଂ କୋରାପୁଟ (ଏସ୍.ଟି) (ତୃତୀୟ ସାଧାରଣ ନିର୍ବାଚନ), ଶ୍ରୀ ମୋହନ ନାୟକ - ଗଞ୍ଜାମ ଏସ୍.ସି. (ଦ୍ୱିତୀୟ ସାଧାରଣ ନିର୍ବାଚନ) ଏବଂ ଭଞ୍ଜନଗର (ତୃତୀୟ ସାଧାରଣ ନିର୍ବାଚନ), ଶ୍ରୀ ଆର୍ ଜଗନ୍ନାଥ ରାଓ - କୋରାପୁଟ ସାଧାରଣ (ଦ୍ୱିତୀୟ ସାଧାରଣ ନିର୍ବାଚନ) ଏବଂ ବ୍ରହ୍ମପୁର (ଷଷ୍ଠ ସାଧାରଣ ନିର୍ବାଚନ) ।

ଶ୍ରୀ ଅନନ୍ତ ତ୍ରିପାଠୀ ଶର୍ମା ତୃତୀୟ ସାଧାରଣ ନିର୍ବାଚନରେ ଛତ୍ରପୁର ନିର୍ବାଚନ ମଣ୍ଡଳୀରୁ ନିର୍ବାଚିତ ହୋଇ ପ୍ରଥମ ସଭ୍ୟ ହୋଇପାରିଥିଲେ ମଧ୍ୟ ସେ ଦ୍ୱିତୀୟ ସାଧାରଣ ନିର୍ବାଚନ ଅବଧିରେ ଗଞ୍ଜାମ (ସାଧାରଣ) ନିର୍ବାଚନ ମଣ୍ଡଳୀରୁ ଉପନିର୍ବାଚନରେ ଜୟଲାଭ କରି ପ୍ରଥମ ଥର ପାଇଁ ସଭ୍ୟ ହୋଇପାରିଥିଲେ । ସେହିଭଳି ପ୍ରଥମ ଲୋକସଭା ନିର୍ବାଚନ ଅବଧିରେ କଟକ ନିର୍ବାଚନ ମଣ୍ଡଳୀରୁ ଉପନିର୍ବାଚନରେ ନିର୍ବାଚିତ ହୋଇ ଶ୍ରୀ ବୀରକିଶୋର ଦାସ ସଂପୃକ୍ତ ନିର୍ବାଚନ ମଣ୍ଡଳୀର ପ୍ରଥମ ସଭ୍ୟ ହୋଇପାରିଥିଲେ ।

ସ୍ୱାଧୀନ ଓଡ଼ିଶାର ପ୍ରଥମ ଲୋକସଭା ନିର୍ବାଚନ ମଣ୍ଡଳୀର ପ୍ରଥମ ସଭ୍ୟଭାବେ କଂଗ୍ରେସ ଦଳରୁ ସର୍ବାଧିକ ୪୧ ଜଣ ନିର୍ବାଚନ ଲଢ଼ି ୧୯ ଜଣ, ଗଣତନ୍ତ୍ର ପରିଷଦ ଦଳରୁ ୨୭ ଜଣ ନିର୍ବାଚିତ ଲଢ଼ି ୧୨ ଜଣ, ପ୍ରଜା ସୋସାଲିଷ୍ଟ ଦଳରୁ ୧୬ ଜଣ ନିର୍ବାଚନ ଲଢ଼ି ୨ ଜଣ, ସ୍ୱାଧୀନ ପାର୍ଟିରୁ ୨୫ ଜଣ ନିର୍ବାଚନ ଲଢ଼ି ୩ ଜଣ, ସ୍ୱତନ୍ତ୍ର ପାର୍ଟିରୁ ୪ ଜଣ ନିର୍ବାଚନ ଲଢ଼ି ୩ ଜଣ, ଜନତାରୁ ୫ ଜଣ ନିର୍ବାଚନ ଲଢ଼ି ୨ ଜଣ ତଥା କମ୍ୟୁନିଷ୍ଟ ପାର୍ଟିରୁ ୧୦ ଜଣ ନିର୍ବାଚନ ଲଢ଼ି ଜଣେ ଲେଖାଏଁ ନିର୍ବାଚିତ ହୋଇଥିଲେ । ଏତଦ୍‌ବ୍ୟତୀତ କିଷାନ ମଜଦୁର ମଣ୍ଡଳ ପାର୍ଟିରୁ ଦୁଇ ଜଣ ଓ ଭାରତୀୟ ଜନସଂଘ ଦଳରୁ ଜଣେ ନିର୍ବାଚନ ଲଢ଼ି ହାରି ଯାଇଥିଲେ ।

ଉପରୋକ୍ତ ସଭ୍ୟମାନଙ୍କ ମଧ୍ୟରୁ ଶ୍ରୀ ମୋହନ ନାୟକ ଭଞ୍ଜନଗର ନିର୍ବାଚନ ମଣ୍ଡଳୀରୁ ସର୍ବାଧିକ ୮୬ ଶତକଡ଼ା ଭୋଟ ପାଇ ତଥା ଶ୍ରୀ ଲକ୍ଷ୍ମୀଧର ଜେନା ଯାଜପୁର-କେନ୍ଦୁଝର ନିର୍ବାଚନ ମଣ୍ଡଳୀରୁ ସର୍ବନିମ୍ନ ଶତକଡ଼ା ୧୮.୩ ଭାଗ ଭୋଟ ପାଇ ନିର୍ବାଚିତ ହୋଇଥିଲେ ।

ସମୟର ସ୍ରୋତରେ ପ୍ରଥମ ସାଧାରଣ ନିର୍ବାଚନଠାରୁ ଅଦ୍ୟାବଧି ସୃଷ୍ଟି ହୋଇଥିବା ୩୯ ଗୋଟି ନିର୍ବାଚନ ମଣ୍ଡଳୀ (ଉଭୟ ଦୁଇ ଆସନ ତଥା ଏକ ଆସନ ବିଶିଷ୍ଟ) ନିର୍ବାଚନ ମଣ୍ଡଳୀରୁ ୪ ଜଣ ସଭ୍ୟ ନିର୍ବାଚିତ ହୋଇ ଲୋକ ସଭାରେ ଓଡ଼ିଶା ନିର୍ବାଚନ ମଣ୍ଡଳୀଗୁଡ଼ିକର ପ୍ରଥମ ସଭ୍ୟଭାବେ ପ୍ରତିନିଧିତ୍ୱ କରିପାରିଛନ୍ତି । ମାତ୍ର ସେଇ ନିର୍ବାଚନ ମଣ୍ଡଳୀଗୁଡ଼ିକର ନାମ ପରିବର୍ତ୍ତନ ହେବା ସହ ନୂତନ ଭାବେ କିଛି ନିର୍ବାଚନ ମଣ୍ଡଳୀ ସୃଷ୍ଟି ହୋଇ ନିମ୍ନ ପ୍ରକାରରେ ନାମକରଣ ହୋଇ ରହିଛି, ଯେଉଁଗୁଡ଼ିକରେ ଏବେ ନିର୍ବାଚନ ଅନୁଷ୍ଠିତ ହେଉଛି । ସେଗୁଡ଼ିକ ହେଲା-

୧. ମୟୂରଭଞ୍ଜ (ଏସ୍.ଟି.)
୨. ବାଲେଶ୍ୱର
୩. ଭଦ୍ରକ (ଏସ୍.ସି.)
୪. ଯାଜପୁର (ଏସ୍.ସି.)
୫. କେନ୍ଦ୍ରାପଡ଼ା
୬. କଟକ
୭. ଜଗତସିଂହପୁର
୮. ପୁରୀ
୯. ଭୁବନେଶ୍ୱର
୧୦. ଆସ୍କା
୧୧. ବ୍ରହ୍ମପୁର
୧୨. କୋରାପୁଟ (ଏସ୍.ଟି.)
୧୩. ନବରଙ୍ଗପୁର (ଏସ୍.ଟି.)
୧୪. କଳାହାଣ୍ଡି
୧୫. ଫୁଲବାଣୀ (ଏସ୍.ସି.)
୧୬. ବଲାଙ୍ଗୀର
୧୭. ସମ୍ବଲପୁର
୧୮. ଦେବଗଡ଼
୧୯. ଢେଙ୍କାନାଳ
୨୦. ସୁନ୍ଦରଗଡ଼ (ଏସ୍.ଟି.)
୨୧. କେନ୍ଦୁଝର (ଏସ୍.ଟି.)

**ତଥ୍ୟ :**

1. India Decides - Elections, 52-91.
2. India Votes, Popular Prakashan, Bombay.
3. Delimitation Commission Reports.
4. Parliament Bulletins.
5. Loksabha Bulletins.

କ୍ୱା.ନଂ.- ଇ- ୧୪୯
ୟୁନିଟ୍-୮, ଭୁବନେଶ୍ୱର-୧୨

# ପାରମ୍ପରିକ - ଆଧୁନିକ ଯୁଗର ମିଥୁନ ପର୍ବ

କୈଳାସ ତ୍ରିପାଠୀ

**ଲୁ**ଇପାଙ୍କ କାୟାତରୁ ଶଯ୍ୟାରୁ ଆରମ୍ଭ ଓଡ଼ିଆ ସାହିତ୍ୟର ଉତ୍ପତ୍ତି ପର୍ବ । ତା'ପରେ ଶବରୀପାଙ୍କ ମତ୍ତ ମାନସ ମୃତ୍ୟୁଚର୍ଯ୍ୟା, କାହ୍ନୁପାଙ୍କ ଡୋମ୍ବହେରୁକ ଚର୍ଯ୍ୟା, ସରହପାଙ୍କ ନୌକା ଚର୍ଯ୍ୟା ସହିତ ଗୋରେଖନାଥଙ୍କ ଶିଶୁବେଦ, ଅମରକୋଷ, ସପ୍ତାଙ୍ଗ ଯୋଗ ଧାରଣ, ଅଷ୍ଟାଙ୍ଗ ଯୋଗ ଧାରଣ ପ୍ରଭୃତି ରଚନାବଳୀର ସମ୍ଭାରକୁ ନେଇ ଆଦି ଯୁଗର ଇତିବୃତ୍ତ । ଚର୍ଯ୍ୟା ପଦଗୁଡ଼ିକ ଯେହେତୁ ତତ୍କାଳୀନ ବୌଦ୍ଧାଚାର୍ଯ୍ୟମାନେ ରଚନା କରିଥିଲେ ସେଗୁଡ଼ିକ ବର୍ଣ୍ଣିତ ହୋଇଥିଲା ସାନ୍ଧ୍ୟ ଭାଷାରେ । ଦ୍ୱିଅର୍ଥ ବୋଧକ ସାଙ୍କେତିକ ଅବଧାରଣାରେ ଏଇ ପଦାବଳୀ ବା ଦୋହାଗୁଡ଼ିକ ବୁଦ୍ଧଙ୍କ ଶୂନ୍ୟବାଦର ସମ୍ବଳରେ ରଚନା କରିଥିଲେ ଆଚାର୍ଯ୍ୟମାନେ ।

ଏହି ଚର୍ଯ୍ୟାପଦାବଳୀ ଓଡ଼ିଆ ସାହିତ୍ୟର ଆଦିପର୍ବ । ଏହା ସହିତ ନାଥଧର୍ମୀ ରଚନାଗୁଡ଼ିକ ମଧ୍ୟ ଆଦିପର୍ବ ସହିତ ସଂଯୋଜିତ । ଆଦି ପୂର୍ବରୁ ସାରଳା, ପଞ୍ଚସଖା, ଆଳଙ୍କାରିକ ପର୍ବମାନଙ୍କର ଅବସାନ ପରେ ଆରମ୍ଭ ହୋଇଯାଇଛି ଆଧୁନିକ ପର୍ବର ଧାରା, ଯାହା ଆପାତତଃ ଊନବିଂଶ ଶତାବ୍ଦୀର ଶେଷ ଭାଗରୁ ବିଭିନ୍ନ ଘାତପ୍ରତିଘାତ ପ୍ରତିରୋଧ ଓ ଅବରୋଧରୁ ବାଧକତା ସତ୍ତ୍ୱେ ଏ ପର୍ଯ୍ୟନ୍ତ ପ୍ରବହମାନ ।

ଆମ ସାହିତ୍ୟର ଏ ପଞ୍ଚପର୍ବକୁ ପଞ୍ଚଯୁଗ ମଧ୍ୟ କୁହାଯାଏ । ତେବେ ଚର୍ଯ୍ୟାପଦ ଯୁଗର ପରିସମାପ୍ତି ପରବର୍ତ୍ତୀ ସାରଳା ଯୁଗରୁ ହିଁ ପ୍ରକୃତ ଓଡ଼ିଆ ସାହିତ୍ୟର ଅଗ୍ରମାରମ୍ଭ ଓ ବିକାଶ ଘଟିଛି ବୋଲି କୁହାଯାଇପାରେ । ସାରଳା ଦାସ ହିଁ ତାଙ୍କ ମହାଭାରତ, ଚଣ୍ଡିପୁରାଣ, ବିଲଙ୍କା ରାମାୟଣ କାବ୍ୟ ଗ୍ରନ୍ଥରେ ସରଳ ସାବଲୀଳ ବିଶୁଦ୍ଧ ଓଡ଼ିଆ ଭାଷାର ବ୍ୟବହାର କରିଥିଲେ । ବତ୍ସା ଦାସଙ୍କ କଳସା ଚଉତିଶା, ମାର୍କଣ୍ଡ ଦାସଙ୍କ କେଶବ କୋଇଲି ମଧ୍ୟ ସମତୁଲ ବିଭାଗ ବିନ୍ୟସ୍ତ । ଚର୍ଯ୍ୟାପଦ ଯୁଗକୁ ଯଦି ଯୁଗାକଳନରୁ ବିସର୍ଜିତ କରାଯାଏ, ତା' ହେଲେ ସାରଳାଯୁଗ ହିଁ ଓଡ଼ିଆ ସାହିତ୍ୟର ପ୍ରଥମ ବା ଉନ୍ମେଷପର୍ବ କୁହାଯାଇପାରେ । କାରଣ ବୌଦ୍ଧଧର୍ମର ପ୍ରଚଳନ ସମୟରେ ଯେଉଁ ଚର୍ଯ୍ୟାପଦଗୁଡ଼ିକ ବିରଚିତ ହୋଇଥିଲା, ସେଗୁଡ଼ିକର ମୂଳମନ୍ତ୍ର ଥିଲା ତନ୍ତ୍ର ସାଧନାର ପରିଚର୍ଯ୍ୟା । ତନ୍ତ୍ର ସାଧନା ମଧ୍ୟ ଏଭଳି ଅଦ୍ଭୁତ ଭାବନାରେ ପର୍ଯ୍ୟବସିତ ଥିଲା, ଯାହାର ବାହ୍ୟାର୍ଥ ଥିଲା ଯୌନ ଚର୍ଯ୍ୟା ଓ ଗୁହ୍ୟାର୍ଥ ଥିଲା ଧର୍ମଭିତ୍ତିକ । ତେବେ ଓଡ଼ିଆ ଲିପିରେ ସେଗୁଡ଼ିକ ବର୍ଣ୍ଣିତ ହୋଇଥିବାରୁ ଆମ ସାହିତ୍ୟର ପ୍ରଥମ ପର୍ବରୂପେ ସେଇ ଦୋହାବଳୀଗୁଡ଼ିକୁ ନିର୍ଣ୍ଣିତ କରାଯାଇଛି । ତେବେ ସାରଳା ଯୁଗରୁ ହିଁ ପ୍ରକୃତ ହିନ୍ଦୁ ସଂସ୍କୃତିକୁ ଆମ ସାହିତ୍ୟର ଉପଜୀବ୍ୟ ରୂପେ ଗ୍ରହଣ କରିଥିଲେ ଆମର କବିମାନେ ।

ତତ୍‌ପରବର୍ତ୍ତୀ ପଞ୍ଚସଖା ଯୁଗରେ ମଧ୍ୟ ସନାତନ ସଂସ୍କୃତି ଓ ଧାର୍ମିକ ଭାବନା ହିଁ ଥିଲା ପ୍ରଧାନ ଅବଲମ୍ବନ । ଶୁଦ୍ରମୁନିଙ୍କ ଦାଣ୍ଡି ରାମାୟଣ, ଅତିବଡ଼ିଙ୍କ ଭାଗବତ, ଅଚ୍ୟୁତଙ୍କ ଶୂନ୍ୟ ସଂହିତା, ଯଶୋବନ୍ତଙ୍କ ବ୍ରହ୍ମଗୀତା, ଶିଶୁ ଅନନ୍ତଙ୍କ ଅଣାକାର ଶବ୍ଦ, ଠୁଳ ଶୂନ୍ୟରାସ ଆଦି ବିଭିନ୍ନ କାବ୍ୟମାଳା ଭିତରେ ରାମାୟଣ, କୃଷ୍ଣ ଚରିତ ଭଳି ଭଗବତ୍ ଚେତନା ସହିତ ଶୂନ୍ୟ ବ୍ରହ୍ମବାଦର ଯାବତୀୟ ଧର୍ମାନୁରକ୍ତିର ବୈଶିଷ୍ଟ୍ୟ ବିଦ୍ୟମାନ ।

ପଞ୍ଚସଖା ଯୁଗରେ ବଳରାମ, ଅତିବଡ଼ି ଜଗନ୍ନାଥ, ଅଚ୍ୟୁତ, ଯଶୋବନ୍ତ, ଶିଶୁ ଅନନ୍ତ, ଏ ପଞ୍ଚ କବିଙ୍କ କାବ୍ୟଗ୍ରନ୍ଥର ପ୍ରାଧାନ୍ୟ ହେତୁ ସେଇ ଯୁଗକୁ ପଞ୍ଚସଖା ଯୁଗ କୁହାଗଲେ ମଧ୍ୟ ଅର୍ଜୁନ, ବନମାଳୀ, ଦେବ ଦୁର୍ଲଭ, କାର୍ତ୍ତିକ, ବିଷ୍ଣୁ, ଶ୍ରୀହରି, ଦାମୋଦର ଆଦି ଦାସ କବି ଓ ମାଧବୀ ଦାସୀଙ୍କ ରଚନାବଳୀଗୁଡ଼ିକ ମଧ୍ୟ ଦେଇ ଯୁଗର ମହାନ କାବ୍ୟକୃତି ବୋଲି ସ୍ୱୀକାର କରାଯାଇଛି ।

ଆଳଙ୍କାରିକ ଯୁଗ (ରୀତିଯୁଗ)ରେ ଧନଞ୍ଜୟ ଭଞ୍ଜଙ୍କ ରଘୁନାଥ ବିଳାସଠାରୁ ଅଭିମନ୍ୟୁଙ୍କ ବିଦଗ୍ଧ ଚିନ୍ତାମଣି ପର୍ଯ୍ୟନ୍ତ ଓ ତତ୍‌ପଶ୍ଚାତ୍‌ବର୍ତ୍ତୀ ଯଦୁମଣିଙ୍କଠାରୁ ବିପ୍ର ପୀତାମ୍ବରଙ୍କ ସାମଗ୍ରିକ ରଚନାରେ ଧର୍ମ, ପୌରାଣିକ ଆଖ୍ୟାୟିକାମାନଙ୍କର ପରିଭାଷା ହିଁ ପରିବେଷିତ । ପ୍ରଚୁର ଶବ୍ଦ ପରିସ୍ଫୁଟନ, ଯମକ, ଯତିପାତ, ଛନ୍ଦ ଓ ରାଗରାଗିଣୀରେ ଅଳଙ୍କୃତ କାବ୍ୟ ଛଟା, ବିମ୍ବ ପ୍ରୟୋଗ ବ୍ୟଞ୍ଜନା, କଳ୍ପନା ବିଳାସରେ ସେଇ କାବ୍ୟ ସଂପଦଗୁଡ଼ିକ ସମୃଦ୍ଧ । କେବଳ ତା' ନୁହେଁ, ତାତ୍ତ୍ୱିକ ବୋଧରେ ମଧ୍ୟ ଆଳଙ୍କାରିକ ଯୁଗର କାବ୍ୟ ସ୍ଥାପତ୍ୟ ସମୃଦ୍ଧ । ଉପେନ୍ଦ୍ର ଭଞ୍ଜଙ୍କ ଅନୁପମ, ଅପ୍ରତିଦ୍ୱନ୍ଦୀ କାବ୍ୟକୃତି ପାଇଁ ଆଳଙ୍କାରିକ ଯୁଗକୁ ଭଞ୍ଜଯୁଗ

ବୋଲି ମଧ୍ୟ ଯଥାର୍ଥରେ କୁହାଯାଏ । ତେବେ ଅନ୍ୟାନ୍ୟ କରିତ୍‌କର୍ମା କାବ୍ୟ ପୁରୁଷ ଯଥା- ଭକ୍ତଚରଣ, ଦନାଇ, ବିଶ୍ୱନାଥ, ବଳଦେବ, ଗୋପାଳକୃଷ୍ଣ ପ୍ରଭୃତି ସରଳ ସାବଲୀଳ ଶୈଳୀ ଓ ଭାବବୋଧର ସମ୍ବଳ ଭିତରେ ମଧ୍ୟ ଅଳଙ୍କରଣକୁ ପ୍ରାଧାନ୍ୟ ଦେଇଛନ୍ତି ଏବଂ କାଳଜୟୀ କାବ୍ୟ ସମ୍ଭାର ଉପଢୌକନ ଦେଇଛନ୍ତି ।

ଆଲଙ୍କାରିକ ଯୁଗରେ ଭକ୍ତି ଧ୍ୱନି ସହିତ ପ୍ରେମ ଓ ଶୃଙ୍ଗାର ରସର ମିଳନାତ୍ମକ କାରୁକଳା ପ୍ରଗାଢ଼ । ରାଧା, କୃଷ୍ଣ, ଶ୍ରୀରାମ, ବୈଦେହୀ ତଥା ଅନ୍ୟାନ୍ୟ କାବ୍ୟ ନାୟକ-ନାୟିକାମାନଙ୍କର ସମ୍ଭୋଗ, ସୌନ୍ଦର୍ଯ୍ୟର ଆଧାର ହିଁ ତତ୍କାଳୀନ କାବ୍ୟସଜ୍ଜା । ହୁଏତ ସୌନ୍ଦର୍ଯ୍ୟ ଶୃଙ୍ଗାର ସମ୍ଭୋଗକୁ ବୈରାଗ୍ୟ, ବୈରାଗ୍ୟରୁ ଆଧ୍ୟାତ୍ମିକ ଅନୁରାଗ ସେତେବେଳର କାବ୍ୟକାରମାନଙ୍କର ସୈଦ୍ଧାନ୍ତିକ ବିବେଚନା ଥିଲା । ଯେମିତି ଥିଲା ଚର୍ଯ୍ୟା ଯୁଗରେ । ଇନ୍ଦ୍ରିୟ ବାସନା ଭିତରେ ହିଁ କାମନାର ଅବସାନ । ଭୋଗ-ବିଳାସ ଭିତରେ ତ୍ୟାଗର ସନ୍ଧାନ ଭଳି ଜାଗତିକ ଜୀବନଧାରା ଭିତରେ ଭକ୍ତିର ଦର୍ଶନ ଓ ନିଦର୍ଶନ ।

ବିବର୍ତ୍ତନ ଭିତରେ ଆଧୁନିକ ସାହିତ୍ୟର ଅଭ୍ୟୁଦୟ । ତା' ଭିତରେ ଆମ ସାହିତ୍ୟ ସ୍ରୋତରେ ଅନେକ ମିଶ୍ରଣର ପ୍ରଭାବ ଅନୁଭୂତ ହୁଏ । ଅନୁଭବ, କଳ୍ପନା, ସନ୍ଦେଶ, ସ୍ୱଦେଶ ପ୍ରେମ ସହିତ ଭକ୍ତି ଭାବନାର ଉତ୍ସ ପରିଲକ୍ଷିତ ହୁଏ କାବ୍ୟକାର ବା ସାହିତ୍ୟିକମାନଙ୍କ ସର୍ଜନାରେ । ପରେ ପରେ ପାଶ୍ଚାତ୍ୟ ସଭ୍ୟତାର ଅନୁପ୍ରବେଶ, ଛନ୍ଦର ଅବସାନ ଓ ବିଚ୍ଛନ୍ଦପଣର ଅଭ୍ୟୁଦୟ । ଗଦ୍ୟ, ପଦ୍ୟ ଉଭୟ ସାହିତ୍ୟରେ ପ୍ରାଚ୍ୟ ପାଶ୍ଚାତ୍ୟର ପାରମ୍ପରିକ ଆଧୁନିକତା, ପରୀକ୍ଷା ପଦ୍ଧତିର ଅନୁସରଣ ପ୍ରକ୍ରିୟା ।

ଆଲଙ୍କାରିକ ଯୁଗ ଓ ଆଧୁନିକ ଯୁଗର ସନ୍ଧିକ୍ଷଣରେ ଅବଶ୍ୟ ରହିଥିଲା ପୂର୍ବ ସାହିତ୍ୟ ସୁରୀଙ୍କ ସାହିତ୍ୟ ସ୍ପର୍ଶ । ଅଳଙ୍କରଣ ସମେତ ଅଧୁନାତନ ଆବୟାବିକ ସୃଜନୀ କଳ୍ପନା ମଧ୍ୟ ଥିଲା ଆଧାର । ରହିଥିଲା ସୁଶ୍ରାବ୍ୟପଣର ଲାଳିତ୍ୟ । ଜଟିଳତା ଭିତରେ ସୌନ୍ଦର୍ଯ୍ୟର ସନ୍ନିବସିତ ବର୍ଣ୍ଣବିଭା । ପରେ ପରେ ଅନ୍ତର୍ହିତ ହୋଇଗଲା ସେସବୁ । ଆଧୁନିକ ସାହିତ୍ୟ ପରମ୍ପରା ଓ ସଂସ୍କୃତିର ତାରବାଡ଼ ଡେଇଁ ଆତ୍ମିକ, ଆଙ୍ଗିକ ଉଭୟ ସ୍ତରରେ ପାଶ୍ଚାତ୍ୟ ଧର୍ମୀ ହେବା ଉଦ୍ୟମ କଲା । ନା ରହିପାରିଲା ପ୍ରାଚ୍ୟ ସଂସ୍କୃତି ପରମ୍ପରାର ନିଜସ୍ୱ ଭିତ୍ତିଭୂମିରେ, ନା ଡେଇଁ ପାରିଲା ପାଶ୍ଚାତ୍ୟ ଚୌହଦୀକୁ । ରହିଗଲା ତାରବାଡ଼ର ଜଟିଳ ବନ୍ଧନୀ ଭିତରେ । ଦୂରେଇ ଗଲା ପାଠକୀୟ ଅନୁରକ୍ତିରୁ, କ୍ରମଶଃ .. କ୍ରମଶଃ .. । କବି ଭିତରେ ପାଠକ ପାଇଲାନି, କେବଳ କବି ପାଇଲା । କବି ଭିତରେ ପାଠକ ପାଇଲା । ଗଦ୍ୟ ସାହିତ୍ୟ ପାଇଁ ଅବଶ୍ୟ ରହିଲେ କିଛି ଦୟାବାନ ପାଠକ । ତେବେ ଆମ ସାହିତ୍ୟ ସମାଜ ପାଇଁ ନହୋଇ ନିଜ ପାଇଁ ନିଜ ପରୀକ୍ଷା ନିରୀକ୍ଷା ଫଳ ପାଇଁ, ସ୍ୱକୀୟ ସନ୍ତୋଷ ପାଇଁ ମୋହରଯୁକ୍ତ ହୋଇଗଲା । ବିଡ଼ମ୍ବିତ ଆଧୁନିକତାର ଆମ ସାହିତ୍ୟ ଯାପନ କଲା ବନ୍ଦୀ ଜୀବନ ।

ତେବେ ଉପଲବ୍ଧ ଖେଦରୁ ସ୍ପଷ୍ଟ ପ୍ରତୀୟମାନ ଯେ, ଆମେ ଅନୁକୃତ ଆଧୁନିକତାରୁ ଅଧିକ କିଛି ପାଇନୁ । ଆଗେଇ ମଧ୍ୟ ଯାଇନୁ ଅନେକ ବାଟ । ରହିଛୁ ସେଇ ସନ୍ଦେହ ସଂଶୟ ମାୟାବର୍ତ୍ତ ଭିତରେ । ଯେତିକି ଯିବାକୁ ଚେଷ୍ଟା କରୁଛୁ, ଫେରି ଆସୁଛୁ ସେଇ ମୌଳିକ ପାଦ ମାଟିକୁ । ପରମ୍ପରାର ପରିଧି ଭିତରେ ହିଁ ଆମେ ନିଜକୁ ସୁରକ୍ଷିତ, ସଂରକ୍ଷିତ ମନେ କରୁଛୁ । ସେଥିପାଇଁ ଆମ ପ୍ରାଣରେ ଏ ପର୍ଯ୍ୟନ୍ତ ଚର୍ଯ୍ୟାପଦର କବିଙ୍କ ସମେତ, ସାରଳା, ଜଗନ୍ନାଥ, ବଳରାମ, ଅଚ୍ୟୁତ, ଦେବଦୁର୍ଲଭ, ଉପେନ୍ଦ୍ର, ଅଭିମନ୍ୟୁ, ଭକ୍ତଚରଣ ଗୋପାଳକୃଷ୍ଣ, ଭୀମ ଭୋଇ, ଗଙ୍ଗାଧର, ରାଧାନାଥ ପ୍ରଭୃତି କାବ୍ୟ ପୁରୁଷଗଣଙ୍କ କୃତି ଓ ସ୍ମୃତି ଜୀବନ୍ତ । ଦ୍ୱିମତ ପ୍ରକାଶ ପାଇଁ ବି ଦୁଃସାହସ ନାହିଁ ଆମର, ଯେ ଆଧୁନିକତାର ପ୍ରାରମ୍ଭିକ ପର୍ଯ୍ୟାୟରେ ଫକୀରମୋହନ, ଭଗବତୀ ଚରଣ, ଅନନ୍ତ ପଣ୍ଡା, ବୈକୁଣ୍ଠନାଥ, ମାୟାଧର, ରାଧାମୋହନ, ସଚ୍ଚି ରାଉତରାୟ, ସୁରେନ୍ଦ୍ର, ଗୋପୀନାଥ ଓ କାହ୍ନୁଚରଣଙ୍କ ପାଖରେ ହିଁ ଆମ ସାହିତ୍ୟ ଅଟକବନ୍ଦୀ ପାଲଟି ଯାଇଛି । ଅଟକ ରହିଯାଇଛି ଭଗବତୀ ଚରଣ, କାଳିନ୍ଦୀ ଚରଣଙ୍କ ପାଖରେ ।

ଆଧୁନିକତା ଅବଶ୍ୟ ଗତିଶୀଳତା ନେଇଛି ଆମ ସାହିତ୍ୟରେ । ବିଶ୍ରାନ୍ତି ନାହିଁ ଆମ ସାହିତ୍ୟର, ବିରାମ ନାହିଁ । ହେଲେ ପ୍ରଗତିରୁ ଆମ ସାହିତ୍ୟ ଖୁବ୍ ଦୂରରେ । ସାହିତ୍ୟିକ ଶତାବ୍ଦୀରେ ଆମେ ଗଢ଼ିଛୁ ଅସଂଖ୍ୟ କବି, କଥାକାର, ଔପନ୍ୟାସିକ ନାଟ୍ୟକାର । ଗଢ଼ିଛୁ ବି ଗୀତି କବି । ତେବେ ଯାହା ସୃଷ୍ଟି କରିଛୁ ସନ୍ତୁଷ୍ଟ ହୋଇନୁ । ଆଧୁନିକତାର ଅନାନ୍ତରିକ ଅନୁକରଣ ଭଳି ପ୍ରହେଳିକାରେ ଭାସି ଚାଲିଛୁ । ଅଥଚ ଆଧୁନିକ ସାହିତ୍ୟର ପ୍ରସୂତୀକକ୍ଷ କୁହାଯାଉଥିବା ପାଶ୍ଚାତ୍ୟ ଭୂମିରେ ଆଧୁନିକତାର ସମାପ୍ତ ହୋଇ ସାରିଛି ଅନେକ ଦିଗରୁ । ଆରମ୍ଭ ହୋଇ ସାରିଛି ଆଧୁନିକୋତ୍ତର ସମୟର ମହାପ୍ରବାହ ।

ଦାର୍ଶନିକ ଲ୍ୟୋତାର୍ଦଙ୍କ ମତରେ ଷାଠିଏ ଦଶକରୁ ହିଁ ଆଧୁନିକତାର ସାଙ୍ଗ ହୋଇଛି । ସେଇ କାଳରୁ ଆଧୁନିକ ସାହିତ୍ୟ ପାଲଟି ସାରିଛି ଆଧୁନିକୋତ୍ତର ।

ମିସେଲ୍ ଫୁକୋଙ୍କ ଭାଷାରେ .. କାଳସ୍ରୋତରୁ ଆଗେଇଯିବା, ପରମ୍ପରାରୁ ଉର୍ଦ୍ଧ୍ୱକୁ ମାଡ଼ିଯିବା, ଅଭିନବ ଅନୁଭବ ପ୍ରଭୃତି ଆଧୁନିକତାର ପ୍ରତୀକ । ଅର୍ଥାତ୍, ଏଇ ଉପାଦାନଗୁଡ଼ିକ ସବୁବେଳେ ଆଧୁନିକତାକୁ ଉତ୍ତରିତ କରେ ଆଧୁନିକୋତ୍ତର ପର୍ଯ୍ୟାୟରେ ।

ବଦଲେୟାରଙ୍କ ଯୁକ୍ତି ସମତୁଲ୍ୟଠୁ ଅଧିକ ନିଗୂଢ଼ ତତ୍ତ୍ୱନିଷ୍ଠ ଆଧୁନିକତାର ଆଧୁନିକୋତ୍ତର ମୂଲ୍ୟାୟନ ଅଧିକ ଯୌକ୍ତିକ । ଏ ସବୁ ପରିପ୍ରେକ୍ଷୀକୁ ବିଚାରକୁ ଆଣିଲେ ଆମେ କେଉଁ ଆଧୁନିକତାର ପ୍ରଲେପରେ ଆମେ ଆମର ସାହିତ୍ୟକୁ ବିକଶିତ କରୁଛୁ ? ହୁଏତ କେବଳ ଶୈଳୀରେ ମାତ୍ର । କେବଳ ଭିନ୍ନ ଭାଷାର ପ୍ରୟୋଗ ପ୍ରବଞ୍ଚନାରେ ମାତ୍ର । ବିଶ୍ୱ ସାହିତ୍ୟର ମଙ୍ଗ ଛୁଇଁବାକୁ ଆମେ ବର୍ଷ ବର୍ଷ ଧରି ପ୍ରୟାସ

କରୁଛୁ । ଆମ ଆଧୁନିକତା ଆତ୍ମ ପ୍ରତାରଣାର ପୀଡ଼ାରେ ପୀଡ଼ିତ । ଅନୁଭବଠୁ ଅନୁକରଣର ଅପଅନ୍ୱୟରେ ଆହତ । ସାହିତ୍ୟ ସହିତ ଜୀବନାନୁଭୂତି, ସନ୍ଦେଶର ସଂପୃକ୍ତି ନାହିଁ, କାଳାନ୍ତରରେ ପ୍ରବେଶ କରିବାର ସାଧନା, କି ଶ୍ରମ ସ୍ୱୀକାର, କି ସଂକଳ୍ପ ନାହିଁ ।

କବି ହରପ୍ରସାଦଙ୍କ ଭାଷାରେ .. ସାରା ବିଶ୍ୱର ସାହିତ୍ୟ ଯେତେବେଳେ ଆଧୁନିକତାକୁ ଶହେବର୍ଷର ଜୀର୍ଣ୍ଣବସ୍ତ୍ର ମନେକରି ତ୍ୟାଗ କରିବାକୁ ପ୍ରସ୍ତୁତ, ସେତେବେଳେ କେବଳ ଗୋଟିଏ ଲୌକିକ ଆଧୁନିକତାକୁ ନେଇ ସାହିତ୍ୟର ସୌଧ ନିର୍ମାଣ କରିବା ସୃଜନଶୀଳତାର ଅପଚୟ ନିଶ୍ଚୟ । (ଆଧୁନିକତାର ପରମ୍ପରା ସାହିତ୍ୟରେ ଆଧୁନିକତା)

ହରପ୍ରସାଦଙ୍କ ଭାଷା ଯଦି ରୂଢ଼ିଯୁକ୍ତ ଅନ୍ୱୟର ଅଂଶବିଶେଷ, ତା'ହେଲେ ଆମେ ଅଛୁ ସୃଜନଶୀଳତାର ଅପଚୟ ଅବସ୍ଥାରେ, ଯେଉଁଠୁ ପଦପାତ ଆରମ୍ଭ କରିଛୁ ଏକଦା, ସେଇଠି ଅଛୁ । ସଚଳ ପାଦ ସେଇଠି ହିଁ ପଡ଼ି ଚାଲିଛି ଏ ପର୍ଯ୍ୟନ୍ତ । ଧାଇଁବାର ପ୍ରକ୍ରିୟାରେ ଆମେ, ଅଥଚ ସେଇ ପାଦଭୂମି ହିଁ ଆମର ଗନ୍ତବ୍ୟ । କେବଳ କୌଶଳ ପରିପାଟୀର ପରୀକ୍ଷା, ଚେତନା, ଅବଚେତନାରେ, ଚୋରା କାରବାରରେ ଆମେ ଆଧୁନିକତାର ଦୁର୍ବଳ ପରିଚୟ ହିଁ ପରିବେଷଣ କରି ଚାଲିଛୁ ।

ସେଥିପାଇଁ ଆମେ ନିଜକୁ ନିଜେ ମନେ ରଖିପାରୁନୁ, ଗର୍ବିତ ହୋଇପାରୁନୁ । ଗର୍ବିତ ହୋଇପାରୁନୁ । ଜ୍ଞାନପୀଠ, ସରସ୍ୱତୀ, କବୀର ସମ୍ମାନମାନଙ୍କୁ ହାତମୁଠାରେ ଧରି ମଧ୍ୟ ଆତ୍ମସମୀକ୍ଷା କାଳରେ ସ୍ୱୟଂ ସନ୍ଦିଗ୍ଧ ହୋଇ ମନେ ପକାଉଛୁ ଆମ ପୂର୍ବ ସାହିତ୍ୟ ପୁରୁଷମାନଙ୍କୁ ।

ଆଧୁନିକତା ଯଦି ଆଧୁନିକୋତ୍ତର ହେବାକୁ ଅନ୍ୟୁନ ହଜାରେ ବର୍ଷ ନେବ ବା ଆଦୌ ନେବ ନାହିଁ, ଆମେ ପୁଣିଥରେ ପରମ୍ପରାକୁ ଉଜାଣି ସୁଅରେ ଫେରେଇ ଆମ ସାହିତ୍ୟର କୁପ୍ରଭାବିତ କୁତ୍ସିତ ରଙ୍ଗକୁ ପୋଛି ନେଇ କ୍ଷତି କ'ଣ ? ଆମ ସାହିତ୍ୟ ପାରମ୍ପରିକ ସାହିତ୍ୟର ସ୍ୱାତନ୍ତ୍ର୍ୟ ବଜାୟ ରଖିଲେ ବା ପ୍ରଚଳିତ ସମୟ ପ୍ରବାହକୁ ପରମ୍ପରାର ତନ୍ତ୍ରୀରେ ନିର୍ମାଣ କରି ତଥାକଥିତ ଆଧୁନିକ ସ୍ପର୍ଶକୁ ଅନୁଭବ କଲେ ବି କ୍ଷତି କ'ଣ ?

ଏଭଳି ଏକ ପାରମ୍ପରିକ ଉତ୍ତରଣ ଆମ ସାହିତ୍ୟକୁ ପାରମ୍ପରିକ ଆଧୁନିକ ଯୁଗର ମିଥୁନ ପର୍ବର ପ୍ରାରମ୍ଭିକ ବୋଲି ମଧ୍ୟ ଗ୍ରହଣ କରାଯାଇପାରେ ।

'କଳ୍ପନା ଲୋକ'
ଏଲ୍- ୯୧୫, ହାଉସିଂ ବୋର୍ଡ଼ କଲୋନୀ
ଡୁମଡୁମା, ଭୁବନେଶ୍ୱର

---

# ରାଜ୍ୟରେ କଂପ୍ୟୁଟର ପ୍ରଚଳନ ଓ କଂପ୍ୟୁଟର ଶିକ୍ଷାର ବହୁଳ ପ୍ରସାର ଘଟିଛି

ଗତ ଅଗଷ୍ଟ ୩ ତାରିଖ ଅପରାହ୍ନରେ ସଚିବାଳୟସ୍ଥିତ ସୂଚନା ଓ ପ୍ରଯୁକ୍ତି ବିଦ୍ୟା ବିଭାଗ ସମ୍ମିଳନୀ କକ୍ଷରେ ଅର୍ଥମନ୍ତ୍ରୀ ଶ୍ରୀ ପ୍ରଫୁଲ୍ଲ ଚନ୍ଦ୍ର ଘଡାଇ ୨୦୦୪-୦୫ ଆର୍ଥିକ ବର୍ଷର ଓଡ଼ିଶା ବଜେଟ୍ ଚିଠା ଉପସ୍ଥାପନ, ବିଭିନ୍ନ ବିଭାଗର ବଜେଟ୍ ଓ ତଦ୍ ସଂକ୍ରାନ୍ତୀୟ ସମସ୍ତ ଆଲୋଚନା ଉପରେ ଆଧାରିତ ଏକ ପୂର୍ଣ୍ଣାଙ୍ଗ ସି.ଡି.କୁ ଉଦ୍‌ଘାଟନ କରି କହିଲେ ଯେ ରାଜ୍ୟରେ କଂପ୍ୟୁଟରର ପ୍ରଚଳନ ଓ କଂପ୍ୟୁଟର ଶିକ୍ଷାର ବହୁଳ ପ୍ରସାର ଘଟିଛି । ପୂର୍ବରୁ ବଜେଟ୍ ସଂପର୍କିତ ତଥ୍ୟ ପୁସ୍ତିକା ଆକାରରେ ପ୍ରସ୍ତୁତ କରାଯାଉଥିଲା ବେଳେ ଚଳିତ ବର୍ଷଠାରୁ ପ୍ରଥମ କରି ଏହାର ସି.ଡି. ପ୍ରସ୍ତୁତ କରାଯାଇଛି । ଏହି ସି.ଡି.ଗୁଡ଼ିକୁ କେନ୍ଦ୍ର ସରକାର, ଓଡ଼ିଶା ବିଧାନସଭାର ସମସ୍ତ ବିଧାୟକ ଓ ରାଜ୍ୟ ସରକାରଙ୍କ ବିଭିନ୍ନ ବିଭାଗଗୁଡ଼ିକୁ ଯୋଗାଇ ଦିଆଯିବ ବୋଲି ମନ୍ତ୍ରୀ ଶ୍ରୀ ଘଡାଇ ପ୍ରକାଶ କରିଥିଲେ । ସୂଚନାଯୋଗ୍ୟ ଯେ ଯେ ଏହି ସି.ଡି.କୁ ଜାତୀୟ ସୂଚନା ବିଜ୍ଞାନ କେନ୍ଦ୍ର (ଏନ୍.ଆଇ.ସି.) ଦ୍ୱାରା ପ୍ରସ୍ତୁତ କରାଯାଇଛି ।

ଏହି ଉତ୍ସବରେ ଅନ୍ୟମାନଙ୍କ ମଧ୍ୟରେ ଅର୍ଥ ବିଭାଗର ପ୍ରମୁଖ ଶାସନ ସଚିବ ଶ୍ରୀ ୟୁ.ଶରତଚନ୍ଦ୍ରନ୍, ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ ପ୍ରମୋଦ କୁମାର ମିଶ୍ର, ଅତିରିକ୍ତ ଶାସନ ସଚିବ ଶ୍ରୀ କୃଷ୍ଣଚନ୍ଦ୍ର ବଡୁ ଓ ଏନ୍.ଆଇ.ସି., ଓଡ଼ିଶା ଶାଖାର ଅଧିକାରୀ ଶ୍ରୀ ସୁଶାନ୍ତ କୁମାର ପଣ୍ଡାଙ୍କ ସମେତ ବିଭାଗୀୟ ପଦାଧିକାରୀମାନେ ଯୋଗ ଦେଇଥିଲେ ।

# ନମସ୍ତୁଭ୍ୟ ବିଶ୍ୱକର୍ମା

ବୈକୁଣ୍ଠନାଥ ମହାପାତ୍ର

ଦଂଶପାଳ ମହାବୀର
ସୁଚିତ୍ରକର୍ମକାରକ

ବିଶ୍ୱକୃଦ୍ ବିଶ୍ୱଧୃକ୍ ତ୍ୱଞ୍ଚ ବାସନାମାନଦଣ୍ଡଧୃକ ॥ ଓଁ ବିଶ୍ୱକର୍ମଣେ ନମଃ ।

**ହେ** ଦଂଶପାଳ (ବର୍ମଦ୍ୱାର ପାଳନକାରୀ), ହେ ମହାବୀର, ହେ ବିଶ୍ୱର ସୃଷ୍ଟିକର୍ତ୍ତା ଓ ବିଶ୍ୱବିଧାତା, ହେ ସୁନ୍ଦର ଚିତ୍ରଭଳି କର୍ମକାରକ, ଆପଣ ମାଲ୍ୟ, ଚନ୍ଦନ, ମାନଦଣ୍ଡ ଧାରଣ କରନ୍ତି - ଆପଣଙ୍କୁ ନମସ୍କାର !



ବିଶ୍ୱକର୍ମା ବୈଦିକ ଓ ପୌରାଣିକ ଦେବତା । ବେଦରେ ସେ କେତେବେଳେ ସୂର୍ଯ୍ୟଙ୍କ ସହିତ ଏକ ହୋଇ ଗଲେଣି ତ କେତେବେଳେ ଅଗ୍ନିଙ୍କ ସହିତ ଏକ ହୋଇ ଗଲେଣି । ଋଗ୍‌ବେଦର ଦଶମ ମଣ୍ଡଳରେ ଦୁଇଟି ସୂକ୍ତରେ ବିଶ୍ୱକର୍ମାଙ୍କ ସ୍ତୁତି ଅଛି । ସେଥିରେ କୁହାଯାଇଛି ବିଶ୍ୱକର୍ମା ବିଶ୍ୱଭୁବନରେ ଯଜ୍ଞ କରନ୍ତି - ସେ ହେତା, ଋଷି, ସେ ଆମ୍ଭମାନଙ୍କର ପିତା - ଯ ଇମା ବିଶ୍ୱଭୁବନାନି ଜୁହ୍ୱଦୃଷି ହେତା ନ୍ୟସାଦଦ୍ ପିତା ନଃ । ପୁଣି ସେ ବିଶ୍ୱଚକ୍ଷୁ, ଭୂମି ସୃଷ୍ଟି କରିଛନ୍ତି, ମହତ୍ତ୍ୱ ଦ୍ୱାରା ଆକାଶକୁ ବିସ୍ତୃତ କରିଛନ୍ତି । ସେ ପୁଣି ସହସ୍ରଶୀର୍ଷା ବିରାଟ ପୁରୁଷ - ସର୍ବତ୍ର ହିଁ ତାଙ୍କ ମୁଖ, ଚକ୍ଷୁ, ବାହୁ ଓ ପଦ । ସେ ଆକାଶ ପୃଥିବୀର ସ୍ରଷ୍ଟା । ପୁନର୍ବାର ସେ ବାଚସ୍ପତି ବା ବାକ୍ୟର ଅଧିପତି । ସେ ସବୁ କିଛି ନିର୍ମାଣ କରନ୍ତି, ଧାରଣ କରନ୍ତି ଓ ଦର୍ଶନ ମଧ୍ୟ କରନ୍ତି । ଅଥର୍ବ ବେଦରେ କୁହା ହୋଇଛି, ବିଶ୍ୱକର୍ମା ବଶ୍ୱଦେବ, ତୁମେ ମହାନ୍, ତୁମେ ଇନ୍ଦ୍ରଙ୍କୁ ଅଭିଭୂତ କରିଛ, ତୁମେ ସୂର୍ଯ୍ୟଙ୍କୁ ପ୍ରକାଶିତ କରୁଥାଅ । ଭାଷ୍ୟକାର ଯାସ୍କ କହନ୍ତି ବିଶ୍ୱକର୍ମା ସର୍ବସ୍ୟ କର୍ତ୍ତା । ଶୁକ୍ଳ ଯଜୁର୍ବେଦ ବିଶ୍ୱକର୍ମାଙ୍କୁ ଦକ୍ଷିଣା ବୋଲି କହିଛି । ଦକ୍ଷିଣ ଶବ୍ଦର ଅର୍ଥ ପ୍ରସନ୍ନ । ଋଷି ବିଶ୍ୱସ୍ରଷ୍ଟା ବିଶ୍ୱକର୍ମାଙ୍କର ପ୍ରସନ୍ନତା କାମନା କରିଛନ୍ତି । ଯଜ୍ଞାଗ୍ନିର ଗୋଟିଏ ନାମ ଦକ୍ଷିଣାଗ୍ନି । ଆଚାର୍ଯ୍ୟ ମହୀଧର କହନ୍ତି ଦକ୍ଷିଣା ବିଶ୍ୱକର୍ମା ବାୟୁ - ବିଶ୍ୱ କରୋତି ସର୍ବଂ ସୃଜତୀତି ବିଶ୍ୱକର୍ମା ବାୟୁରୟଂ ଦକ୍ଷିଣା, ଦକ୍ଷିଣସ୍ୟାଂ ଦିଶି ଆର୍ଯାବର୍ତାଦ୍ ଭୂୟୋ ବାତି । ବୃହଦେବ ତାଙ୍କ ମତରେ ବିଶ୍ୱକର୍ମା ବର୍ଷାକାଳୀନ ସୂର୍ଯ୍ୟ । ସେ କହନ୍ତି ଗ୍ରୀଷ୍ମମାସ ଅତିକ୍ରାନ୍ତ ହେଲେ ଯାହାଙ୍କ ବ୍ୟତୀତ ପୃଥିବୀ ରହିପାରେନା, ସେ ବିଶ୍ୱର କର୍ମ (କୃଷିକର୍ମ) ସୃଷ୍ଟି କରନ୍ତି ତାଙ୍କୁ ବିଶ୍ୱକର୍ମା କୁହାଯାଏ । 'ବିଶ୍ୱ କର୍ମୈଷ ତେନ ସଃ' । ସେଥିପାଇଁ ବୋଧେ ବର୍ଷା ଗମନେ ଭାଦ୍ରବ ସଂକ୍ରାନ୍ତିରେ ବିଶ୍ୱକର୍ମାଙ୍କ ପୂଜା ହୁଏ । ସେ ବର୍ଷାର ଦେବତା ଇନ୍ଦ୍ର ହୋଇଥିବାରୁ ତାଙ୍କର ବାହନ ହସ୍ତୀ ।

ତ୍ୱଷ୍ଟା ଦେବତାମାନଙ୍କ ଶିଳ୍ପୀ । ସେ ଇନ୍ଦ୍ରଙ୍କ ବଜ୍ର ନିର୍ମାଣ କରିଥିଲେ । ସେହି ବଜ୍ରଦ୍ୱାରା ଇନ୍ଦ୍ର ବଧ କରିଥିଲେ ବୃତ୍ରକୁ । ଋଗ ବେଦରେ କୁହାଯାଇଛି, ତ୍ୱଷ୍ଟା କ୍ରିୟାକୁଶଳ ବ୍ୟକ୍ତିମାନଙ୍କ ମଧ୍ୟରେ ସର୍ବାପେକ୍ଷା କର୍ମଠ । ସେ ଅତି ସୁନ୍ଦର ପାନପତ୍ରଗୁଡ଼ିକ ଦେବତାମାନଙ୍କ ପାଇଁ ପ୍ରସ୍ତୁତ କରିଥାନ୍ତି । ସେ ଉତ୍ତମ ଲୌହ ନିର୍ମିତ କୁଠାର ଶାଣିତ କରନ୍ତି । ତଦ୍ୱାରା ବ୍ରହ୍ମଣସ୍ପତି ପାତ୍ର ନିର୍ମାଣ ଉପଯୋଗୀ କାଷ୍ଠ ଛେଦନ କରନ୍ତି । ବେଦର ସେହି ବିଶ୍ୱସ୍ରଷ୍ଟା ପୁରାଣର ସେହି ବିଶ୍ୱକର୍ମାଙ୍କୁ ସାଧାରଣତଃ ଆମେ ଦେଖିବାକୁ ପାଉ ଦେବଶିଳ୍ପୀ ଭୂମିକାରେ । ସେ 'କର୍ତ୍ତା ଶିଳ୍ପ-ସହସ୍ରାଣମ୍' ସହସ୍ର ସହସ୍ର ଶିଳ୍ପର ସେ ଅଧିକର୍ତ୍ତା । ସେ 'ଦେବାନାଂ କାର୍ଯ୍ୟସାଧକଃ' - ଦେବତାମାନଙ୍କର ଶିଳ୍ପ କାର୍ଯ୍ୟ ସାଧକ । ବିଶ୍ୱକର୍ମାଙ୍କ ଜନ୍ମ ସମ୍ବନ୍ଧରେ ବିଭିନ୍ନ ପୁରାଣ ଭିନ୍ନଭିନ୍ନ ମତ ଦିଅନ୍ତି । ବ୍ରହ୍ମ ବୈବର୍ତ୍ତ ପୁରାଣ କହେ ବ୍ରହ୍ମାଙ୍କ ନାଭିଦେଶରୁ ବିଶ୍ୱକର୍ମାଙ୍କ ଜନ୍ମ । ମାତ୍ର ବେଦରେ ବିଶ୍ୱକର୍ମାଙ୍କୁ ଅଜାତ ପୁରୁଷ ବା ସନାତନ ପୁରୁଷ ରୂପେ ବର୍ଣ୍ଣନା କରିଛି । ପୁରାଣର ବିଶ୍ୱକର୍ମା ବିମାନ ନିର୍ମାତା ଓ କାରୁକାର ଓ ଚିତ୍ରଶିଳ୍ପକାରକ । ସେ

ଅଳଙ୍କାର ଓ ଭୂଷଣ ପ୍ରସ୍ତୁତକାରକ । ମାନବ ଶିଳ୍ପୀମାନେ ବିଶ୍ୱକର୍ମାଙ୍କ ପ୍ରବର୍ତ୍ତିତ ଶିଳ୍ପ ସାଧନାକୁ ଉପଜୀବ୍ୟକରି ବଞ୍ଚି ରହିଛନ୍ତି । କୁଞ୍ଜର ପର୍ବତରେ ଅବସ୍ଥିତ ଅଗସ୍ତ୍ୟଙ୍କ ଭବନ, କୁବେରଙ୍କ ଅଳକାପୁରୀ, ରାବଣର ସ୍ୱର୍ଣ୍ଣଲଙ୍କା, ଯଦୁପତି ଶ୍ରୀକୃଷ୍ଣଙ୍କର ସୁରକ୍ଷିତ ସୁରମ୍ୟ ଓ ସୁବ୍ୟବସ୍ଥିତ ରାଜଧାନୀ ଦ୍ୱାରକା ବିଶ୍ୱକର୍ମାଙ୍କ ବାସ୍ତୁବିଦ୍ୟା ଓ ନଗର ପରିକଳ୍ପନା ବିଷୟକ ଜ୍ଞାନର ଉଜ୍ଜ୍ୱଳ ଦୃଷ୍ଟାନ୍ତ । ବିଶ୍ୱକର୍ମାଙ୍କ ବିରଚିତ ଭାସ୍କର୍ଯ୍ୟ ଶିଳ୍ପର ଅନୁପମ ଦର୍ଶନ - ତିଳୋତ୍ତମା । ଦେବଦ୍ୱେଷୀ ସୁନ୍ଦ ଓ ଉପସୁନ୍ଦଙ୍କୁ ବିନାଶ କରିବା ନିମିତ୍ତ ବିଶ୍ୱର ସମସ୍ତ ସୌନ୍ଦର୍ଯ୍ୟ ତିଳ ତିଳ କରି ଆହରଣ ପୂର୍ବକ ସେ ଏହି ଲାବଣ୍ୟବତୀ ସ୍ତ୍ରୀକୁ ସୃଷ୍ଟି କରିଥିଲେ । ଅସୁର ଭ୍ରାତୃଦ୍ୱୟ ପରସ୍ପର ଯୁଦ୍ଧ କରି ସେହି ରୂପସୀର ଅନଳେ ପୋଡ଼ି ହୋଇ ମରିଛନ୍ତି । ମତ୍ସ୍ୟପୁରାଣରେ ଉଲ୍ଲେଖ ଅଛି, କୂପ ଓ ତଡ଼ାଗାଦି ଖନନ, ପ୍ରତିମାଦି ଗଠନ, ଗୃହ ଓ ଉଦ୍ୟାନର ପରିକଳ୍ପନା ସମସ୍ତ ଶିଳ୍ପର ଉଦ୍‌ଭାବକ ଓ କାର୍ଯ୍ୟକାରକ ବିଶ୍ୱକର୍ମା ଦେବତାମାନଙ୍କ ପାଇଁ ନୂଆନୂଆ ମାରଣାସ୍ତ୍ର ବିଶ୍ୱକର୍ମା ପ୍ରସ୍ତୁତ କରିଛନ୍ତି । ଯେଉଁ ପ୍ରସିଦ୍ଧ ଧନୁ ସାହାଯ୍ୟରେ ଶଙ୍କର ତ୍ରିପୁରାସୁରକୁ ସଂହାର କରିଥିଲେ, ଯେଉଁ ଆୟତଧନୁର ଅମିତ ବିକ୍ରମରେ ପରଶୁରାମ ଏକୋଇଶଥର ପୃଥିବୀ ନିଃକ୍ଷେତ୍ରିୟ କରିଥିଲେ, ସେହି ଦୁଇଟି ଧନୁ ବିଶ୍ୱକର୍ମାଙ୍କ ଅସ୍ତ୍ର ନିର୍ମାଣ କାରଖାନାରେ ନିର୍ମାଣ ହୋଇଥିଲା ।

ବିଶ୍ୱକର୍ମା କେବଳ ନିଜେ ଶିଳ୍ପୀ ନୁହନ୍ତି, ସେ ଶିଳ୍ପୀ - ସମାଜର ସ୍ରଷ୍ଟା ବା ଜନ୍ମଦାତା । ରାମଚନ୍ଦ୍ରଙ୍କ ପାଇଁ ଦୁସ୍ତର ସମୁଦ୍ରବକ୍ଷରେ ବିଶାଳ ସେତୁ ନିର୍ମାଣକାରୀ ବାନରଶିଳ୍ପୀ ନଳ ବିଶ୍ୱକର୍ମାଙ୍କ ପୁତ୍ର । ବିଷ୍ଣୁ ପୁରାଣରେ ଅଛି - ଶିଳ୍ପୀବର ତ୍ୱଷ୍ଟା ମଧ୍ୟ ବିଶ୍ୱକର୍ମାଙ୍କ ସନ୍ତାନ । ବାୟୁ ଓ ପଦ୍ମପୁରାଣ ମତରେ ଦୈତ୍ୟଶିଳ୍ପୀ 'ମୟ' ମଧ୍ୟ ବିଶ୍ୱକର୍ମାଙ୍କ ପୁତ୍ର । ଦୈତ୍ୟରାଜ ପ୍ରହ୍ଲାଦଙ୍କ କନ୍ୟା ବିରୋଚନାଙ୍କ ଗର୍ଭରୁ ବିଶ୍ୱକର୍ମାଙ୍କ ଔରସରେ ମୟର ଜନ୍ମ । ମର୍ତ୍ତ୍ୟଲୋକର ମାଳାକାର, କର୍ମକାର, କାଂସ୍ୟକାର, ଶଙ୍ଖାକାର, ସୂତ୍ରଧର, କୁମ୍ଭକାର, ସ୍ୱର୍ଣ୍ଣକାର, ଚିତ୍ରକାର ପ୍ରଭୃତି ସଂପ୍ରଦାୟଗୁଡ଼ିକ ଶିଳ୍ପଜୀବୀ । ବ୍ରହ୍ମବୈବର୍ତ୍ତରେ ପୁରାଣ ଅଛି ବିଶ୍ୱକର୍ମାଙ୍କ ଔରସରେ, ଦେବନର୍ତ୍ତକୀ ଘୃତାଚୀଙ୍କ ଗର୍ଭରୁ ଏହି ଶିଳ୍ପୀ ସଂପ୍ରଦାୟ ଜନ୍ମ ଗ୍ରହଣ କରିଥିଲେ । ବିଶ୍ୱକର୍ମା ଓ ଘୃତାଚୀ ଉଭୟ ଶାପଗ୍ରସ୍ତ ହୋଇ ମରଧାମକୁ ଆସନ୍ତି ଓ ଜନ୍ମ ଦିଅନ୍ତି ଏହି ସନ୍ତାନମାନଙ୍କୁ । ବିଶ୍ୱକର୍ମାଙ୍କର ଚିତ୍ରାଙ୍ଗଦା ନାମରେ ଗୋଟିଏ କନ୍ୟା ଥିଲା ।

ଧ୍ୟାନମନ୍ତ୍ରରେ ବିଶ୍ୱକର୍ମାଙ୍କୁ କୁହାଯାଇଛି - ବାସନା ମାନଦଣ୍ଡ ଧୃକ୍ । ବାସନା ଅର୍ଥରେ ମାଲ୍ୟଚନ୍ଦନାଦି ସାହାଯ୍ୟରେ ସୁଗନ୍ଧିକରଣ, ମାନଦଣ୍ଡ ଅର୍ଥରେ ପରିମାପ ଦଣ୍ଡ । ବିଶ୍ୱକର୍ମାଙ୍କ କଣ୍ଠରେ ମାଲ୍ୟ, ଲଲାଟରେ ଚନ୍ଦନ-କୁଙ୍କୁମ, ସର୍ବାଙ୍ଗରେ ଗନ୍ଧାନୁଲେପନ, ହସ୍ତରେ ମାନଦଣ୍ଡ । ବିଶ୍ୱକର୍ମାଙ୍କ ସୃଷ୍ଟି ଧର୍ମ ଓ ଶିଳ୍ପ-କର୍ମ କ୍ଷେତ୍ରରେ ଏଭଳି ରୂପର ତାତ୍ପର୍ଯ୍ୟ ରହିଛି । ଗନ୍ଧ ପୃଥିବୀର ଗୁଣ । ବିଶ୍ୱକର୍ମା ଏହି ପୃଥିବୀର ସ୍ରଷ୍ଟା । ତେଣୁ ସୃଷ୍ଟି ସୌରଭ ସେ ନିଜ ଅଙ୍ଗରେ ମାଖି ନେଇଛନ୍ତି । ସ୍ରଷ୍ଟାର ସୃଷ୍ଟି କେବଳ ରୂପ ବୈଭବ ଓ ଶିଳ୍ପ ବୈଭବର ଆଧାର ନୁହେଁ, ରସ-ଗନ୍ଧାଦିରେ ତାହା ସମସ୍ତଙ୍କର ଚିତ୍ତ ହରଣ କରିଥାଏ । ମାଲ୍ୟଚନ୍ଦନାଦି ଧାରଣ ଓ ସୁଗନ୍ଧାଦି ଲେପନ ମଧ୍ୟରେ ସୁଚିତା ଓ ରୁଚିବୋଧର ପ୍ରକାଶ ସୁସ୍ପଷ୍ଟ । ବିଶ୍ୱକର୍ମାଙ୍କ ହସ୍ତରେ ମାନଦଣ୍ଡ ବା ପରିମାପ ଦଣ୍ଡ ସ୍ରଷ୍ଟାର ସୃଷ୍ଟି ପ୍ରକାଶ ସୁପରିକଳ୍ପିତ ଭିତ୍ତି ଉପରେ ପ୍ରତିଷ୍ଠିତ । ସବୁକୁ ଯେପରି ସେ ମାପିଚୁପି ପିର ନିର୍ମାଣ କରନ୍ତି । ସେ ସୂର୍ଯ୍ୟଙ୍କୁ ମାପିକରି ଦୂରରେ ରଖିଛନ୍ତି ଯଦ୍ୱାରା ସୂର୍ଯ୍ୟଙ୍କ ଉତ୍ତପ୍ତ କିରଣରେ ପୃଥିବୀ ଯେପରି ଧ୍ୱଂସ ହୋଇ ନଯାଏ ।

ସେ ଏଭଳି ଦେବତା, ତାଙ୍କୁ ପ୍ରମାଣକରି ଜଣାଉଛି, ହେ ଦେବଶିଳ୍ପୀ, ମହାଭାଗ ଦେବତାମାନଙ୍କର କାରୁକାର୍ଯ୍ୟ ସାଧକ, ସର୍ବାଭିଷ୍ଟ ପ୍ରଦାନକାରୀ ହେ ବିଶ୍ୱକର୍ମନ୍, ତୁମକୁ ନମସ୍କାର !

ଦେବଶିଳ୍ପୀ ମହାଭାଗ ଦେବାନାଂ କାର୍ଯ୍ୟସାଧକ ।
ବିଶ୍ୱକର୍ମନ୍ନମସ୍ତୁଭ୍ୟଂ ସର୍ବାଭିଷ୍ଟ ପ୍ରଦାୟକ ॥

ନୟାଗଡ଼




ମିଶନ ଶକ୍ତି ସଭାଗୃହ, ନବରଙ୍ଗପୁର

# ମେଦବୃଦ୍ଧି-ନୂତନ ମହାମାରୀ

ଦୀନେଶ ସି. ଶର୍ମା

ଏହା ଏକ ରୋଗ ନୁହେଁ, ତଥାପି ଏଥିଯୋଗୁଁ ଶରୀରରେ ଅନେକ ଜଟିଳ ଅବସ୍ଥା ଦେଖାଦିଏ । ଲୋକମାନେ ଏହାକୁ ହେୟ ମନେ କରିଥାନ୍ତି । ଏଥିପାଇଁ କୌଣସି ଯାଦୁକରୀ ଆରୋଗ୍ୟ ବ୍ୟବସ୍ଥା ନାହିଁ, ତଥାପି ଅଧିକାଂଶ ରାଷ୍ଟ୍ରରେ ଏହାର ଆରୋଗ୍ୟ ପାଇଁ କେତେକ ଶିଳ୍ପର ଅଭିବୃଦ୍ଧି ଘଟିଛି । ସରକାର ଏହାର କୌଣସି ହିସାବ ରଖି ନାହାନ୍ତି । ତଥାପି ଏହାକୁ ମହାମାରୀର ଆଖ୍ୟା ଦିଆଯାଇଛି । ଏହିସବୁ ବିଷୟରେ ଏକମାତ୍ର ଉତ୍ତର ହେଉଛି ମେଦବୃଦ୍ଧି ।

'ମେଦବୃଦ୍ଧି' ଅତ୍ୟଧିକ ଓଜନ ଏବଂ ଶରୀରର ସ୍ଥୂଳକାୟତାକୁ ଜନସାଧାରଣ ସମ୍ମୁଖୀନ ହେଉଥିବା ଦଶଟି ସବୁଠାରୁ ବିପଜ୍ଜନକ ସ୍ୱାସ୍ଥ୍ୟ ସମସ୍ୟା ମଧ୍ୟରେ ଅନ୍ୟତମ ବୋଲି ବିଶ୍ୱ ସ୍ୱାସ୍ଥ୍ୟ ସଂଗଠନ (ଡବ୍ଲ୍ୟୁଏଚଓ) ବିବେଚନା କରୁଛି । ଏହାଦ୍ୱାରା ଆକ୍ରାନ୍ତ ଲୋକଙ୍କ ସଂଖ୍ୟା ବିପଜ୍ଜନକ ଭାବେ ବୃଦ୍ଧି ପାଇବାରେ ଲାଗିଛି । ସମଗ୍ର ବିଶ୍ୱରେ ୧ ବିଲିୟନରୁ ଅଧିକ ଲୋକ ମାତ୍ରାଧିକ ଓଜନ ବିଶିଷ୍ଟ ଏବଂ ଅତିକମ୍‌ରେ ୩୦୦ ନିୟୁତ ଲୋକ ଡାକ୍ତରୀ ମତ ଅନୁଯାୟୀ ମେଦଯୁକ୍ତ । ବିଶ୍ୱସ୍ୱାସ୍ଥ୍ୟ ସଂଗଠନ ପକ୍ଷରୁ ଏହି ଅଟକଳ ପ୍ରସ୍ତୁତ କରାଯାଇଛି । ୧୯୮୦ରୁ ମେଦବୃଦ୍ଧି ହାର ତିନିଗୁଣ ଅଥବା ତା'ଠାରୁ ଅଧିକ ବୃଦ୍ଧି ପାଇଛି । ବିଶେଷକରି ଉତ୍ତର ଆମେରିକା, ବ୍ରିଟେନ୍, ପୂର୍ବ ୟୁରୋପ, ମଧ୍ୟପ୍ରାଚ୍ୟ, ଅଷ୍ଟ୍ରେଲିଆ ଏବଂ ଚୀନ୍‌ରେ ଏହା ଅଧିକ ପରିଲକ୍ଷିତ ହେଉଛି । ଏକ ନୂତନ ପରିସଂଖ୍ୟାନରୁ ଜଣାଯାଇଛି ଯେ ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ବିଶେଷକରି ଯୁବଗୋଷ୍ଠୀଙ୍କଠାରୁ ଏହି ସମସ୍ୟା ଏବେ ଅଧିକରୁ ଅଧିକ ପରିଲକ୍ଷିତ ହେଉଛି । ସାଧାରଣରେ ଯାହା ବିଶ୍ୱାସ କରାଯାଏ ତା'ଠାରୁ ଏହି ସମସ୍ୟା ଅଧିକ ଭୟଙ୍କର । ମେଦବୃଦ୍ଧି ଯୋଗୁଁ ଅନେକ ରୋଗ ସୃଷ୍ଟି ହୋଇଥାଏ । ସେଥିପାଇଁ ମେଦବୃଦ୍ଧି ହେଉଛି ବିଭିନ୍ନ ସ୍ୱାସ୍ଥ୍ୟ ସମସ୍ୟାର ମୂଳ କାରଣ । ବିଶେଷଜ୍ଞମାନଙ୍କର ବିଶ୍ୱାସ ଯେ, ମୁକ୍ତ ଶର୍କରା ଏବଂ ଚର୍ବିଯୁକ୍ତ ଖାଦ୍ୟ ପରିମାଣରେ ବୃଦ୍ଧି ସାଙ୍ଗକୁ ଶାରୀରିକ କାର୍ଯ୍ୟକଳାପରେ ହ୍ରାସ ଘଟିବା କାରଣରୁ ମେଦବୃଦ୍ଧି ଘଟୁଛି । ଏଥିଯୋଗୁଁ ଶରୀର ଓଜନ ବୃଦ୍ଧି ସାଙ୍ଗକୁ ମେଦବୃଦ୍ଧି ଘଟୁଛି ଏବଂ ରକ୍ତଚାପ, କୋଲେଷ୍ଟେରଲ, ଟ୍ରାଇଗ୍ଲିସେରାଇଡ୍‌ସ ଓ ହନ୍‌ମୁଲିନ୍ ପ୍ରତିରୋଧକ କ୍ଷମତା ଉପରେ ପ୍ରତିକୂଳ ପ୍ରଭାବ ପଡୁଛି ।

ଶରୀରର ମେଦବୃଦ୍ଧି ସହିତ କରୋନାରୀ ହୃଦ୍‌ରୋଗ, ହୃଦ୍‌ଘାତ ଏବଂ ଟାଇପ୍-୨ ମଧୁମେହ ରୋଗର ଆଶଙ୍କା ମଧ୍ୟ ବଢ଼ିଚାଲେ । ସଂପ୍ରତି ମେଦବୃଦ୍ଧି ଘଟିଥିବା ପିଲାଙ୍କଠାରେ ମଧ୍ୟ ଟାଇପ୍-୨ ମଧୁମେହ ହୋଇଥିବା ଲକ୍ଷ୍ୟ କରାଯାଉଛି । ଶରୀରର ଆବଶ୍ୟକତା ଅନୁଯାୟୀ ଓଜନ ହ୍ରାସ ଦ୍ୱାରା ରକ୍ତଚାପ ହ୍ରାସ ସହିତ ଅନାବଶ୍ୟକ ରକ୍ତ କୋଲେଷ୍ଟରଲ ମଧ୍ୟ ହ୍ରାସପାଏ ଏବଂ ଏହାଦ୍ୱାରା ଟାଇପ୍-୨ ମଧୁମେହ ହେବାର ଆଶଙ୍କା ହ୍ରାସ ପାଇଥାଏ । ଶରୀରରେ ମେଦବୃଦ୍ଧି ଯୋଗୁ ସ୍ତନ କର୍କଟ, ପ୍ରୋଷ୍ଟେଟ, ଏଣ୍ଡୋମେଟ୍ରିୟମ୍, ବୃକକ୍ ଏବଂ ପୀତକୋଷ କର୍କଟ ହେବାର ଆଶଙ୍କା ବୃଦ୍ଧି ପାଏ । ଯଦିଓ ଯେଉଁ କାରଣରୁ ଏଭଳି ଗୁରୁତର ରୋଗ ସୃଷ୍ଟି ହେବାର ଆଶଙ୍କା ରହୁଛି ତାହାକୁ ଏପର୍ଯ୍ୟନ୍ତ ପୂର୍ଣ୍ଣ ଭାବରେ ବୁଝିବା ସମ୍ଭବ ହୋଇପାରିନାହିଁ, ତଥାପି ଏଗୁଡ଼ିକ ମେଦବୃଦ୍ଧିଜନିତ ହର୍‌ମୋନ ପରିବର୍ତ୍ତନ ଯୋଗୁଁ ହୋଇଥାଇପାରେ । କ୍ରମାଗତଭାବେ ଶରୀର ଅଧିକ ଓଜନ ବିଶିଷ୍ଟ ରହିବା ଏବଂ ମେଦବୃଦ୍ଧି ଘଟିବା କାରଣରୁ ଅଷ୍ଟିଓ ଆର୍ଥ୍ରାଇଟିସ୍ ମଧ୍ୟ ହୋଇଥାଏ । ଏହା ବୟସ୍କ ଲୋକଙ୍କଠାରେ ଶାରୀରିକ ଅକ୍ଷମତାର ଏକ ମୁଖ୍ୟ କାରଣ ।

'ବଡ଼ି ମାସ ଇଣ୍ଡେକ୍ସ' (ବିଏମ୍‌ଆଇ) ଭଳି ଏକ ଓଜନ/ଉଚ୍ଚତା ସୂତ୍ରକୁ ବ୍ୟବହାର କରି ଶରୀରର ଅଧିକ ଓଜନ ଏବଂ ମେଦବୃଦ୍ଧି ସଂପର୍କରେ ଆକଳନ କରାଯାଇପାରେ । ବିଶ୍ୱସ୍ୱାସ୍ଥ୍ୟ ସଂଗଠନ ପକ୍ଷରୁ ଶରୀରର ଅଧିକ ଓଜନକୁ ଅନ୍ୟୂନ ୨୫ କି.ଗ୍ରା./ବର୍ଗ ମିଟର ଏବଂ ମେଦବୃଦ୍ଧିକୁ ଅନ୍ୟୂନ ୩୦ କି.ଗ୍ରା/ବର୍ଗମିଟର ଭାବରେ ଧାର୍ଯ୍ୟ କରାଯାଇଛି । ଏହି ସୂଚକଗୁଡ଼ିକ ଆକଳନ ପାଇଁ ସାଧାରଣ ଭିତ୍ତି ଯୋଗାଇ ଦେଇଥାଏ । କିନ୍ତୁ ସମସ୍ତ କ୍ଷେତ୍ରରେ ରୋଗ ସୃଷ୍ଟି ହେବାର ଆଶଙ୍କା ବି.ଏମ୍.ଆଇ. ସ୍ତର ୨୦-୨୨ କି.ଗ୍ରା./ବର୍ଗମିଟରରୁ ଆରମ୍ଭ ହୋଇଥାଏ । ମଧ୍ୟବୟସ୍କ ଏବଂ ବୟସ୍କଙ୍କ କ୍ଷେତ୍ରରେ ବି.ଏମ୍.ଆଇ.ର ବୃଦ୍ଧି ଘଟିଥାଏ ଏବଂ ଏମାନେ ଜଟିଳ ସ୍ୱାସ୍ଥ୍ୟଗତ ସମସ୍ୟା ସମ୍ମୁଖୀନ ହେବାର ଅଧିକ ସମ୍ଭାବନା ଥାଏ ।

ସମଗ୍ର ବିଶ୍ୱରେ ମଧୁମେହରେ ଆକ୍ରାନ୍ତ ଲୋକଙ୍କ ମଧ୍ୟରୁ ପ୍ରାୟ ୫୮ ପ୍ରତିଶତ ଲୋକ, ହୃଦ୍‌ରୋଗରେ ଆକ୍ରାନ୍ତ ହେଉଥିବା ଲୋକଙ୍କ

ମଧ୍ୟରୁ ୨୧ ପ୍ରତିଶତ ଏବଂ କର୍କଟ ରୋଗରେ ଆକ୍ରାନ୍ତ ହେଉଥିବା ଲୋକଙ୍କ ମଧ୍ୟରୁ ୮ରୁ ୪୨ ପ୍ରତିଶତ ଲୋକ ମେଦବୃଦ୍ଧି ଏବଂ ଶରୀରର ସ୍ଥୂଳକାୟତା ଯୋଗୁ ଏହି ରୋଗର ସମ୍ମୁଖୀନ ହୋଇଥାନ୍ତି । ବିକାଶଶୀଳ ରାଷ୍ଟ୍ରଗୁଡ଼ିକରେ ସ୍ଥୂଳକାୟତା ଏବଂ ମେଦବୃଦ୍ଧି ପାଇଁ ରହିଥିବା ସୂଚକ ଭିନ୍ନ ବୋଲି ଜଣାଯାଇଛି ।

ଶରୀରରେ ଶକ୍ତିର ସନ୍ତୁଳନ ସହିତ ମଧ୍ୟ ମେଦବୃଦ୍ଧିର ସଂପର୍କ ରହିଛି । ଆମ ଶରୀର ସାଧାରଣତଃ ପ୍ରତିଦିନ ପ୍ରାୟ ୧୬୦୦ କ୍ୟାଲୋରୀ ଶକ୍ତି ଆବଶ୍ୟକ କରିଥାଏ । ଆମେ ଯେଉଁ ଖାଦ୍ୟ ଖାଉ ତାହା କ୍ୟାଲେରୀରେ ରୂପାନ୍ତରିତ ହୋଇ ବିଭିନ୍ନ ଶରୀରିକ କାର୍ଯ୍ୟରେ ବ୍ୟବହାର ହୋଇଥାଏ । ଯେତେବେଳେ କ୍ୟାଲୋରୀ ଦୃଷ୍ଟିରୁ ଆମେ ଅଧିକ ଖାଦ୍ୟ ଖାଉ, ସେତେବେଳେ ଶରୀର ଏହି କ୍ୟାଲୋରୀକୁ ଚର୍ବିରେ ରୂପାନ୍ତରିତ କରେ । ପ୍ରାୟ ୯ କ୍ୟାଲୋରୀରୁ ୧ ଗ୍ରାମ ଚର୍ବି ସୃଷ୍ଟି ହୁଏ । ଡାକ୍ତରୀ ଭାଷାରେ ଚର୍ବି କୋଷଗୁଡ଼ିକୁ ଆଡିପୋଜ୍ ଟିସ୍ୟୁ କୁହାଯାଏ । ଏଗୁଡ଼ିକ ଚର୍ମତଳେ ଜମା ହୋଇ ରହେ । ମସ୍ତିଷ୍କ ଦ୍ୱାରା ସମସ୍ତ ଆହରଣ ନିୟନ୍ତ୍ରଣ ପ୍ରକ୍ରିୟା ପରିଚାଳିତ ହୋଇଥାଏ । ଏହାପରେ ହର୍ମୋନ୍ ଜନିତ କାରଣରୁ ମେଦବୃଦ୍ଧି ଘଟିଥାଏ । ହାଇପୋଥାଇରଏଡ଼ଜିମ୍, ଗର୍ଭଧାରଣ, ଋତୁସ୍ରାବ ବନ୍ଦ ଭଳି ପରିସ୍ଥିତିରେ ଲୋକଙ୍କର ଓଜନ ସାଧାରଣତଃ ବୃଦ୍ଧି ପାଇଥାଏ ।

ଆମର ପରିବର୍ତ୍ତିତ ଜୀବନଯାପନ ଶୈଳୀ ସହିତ ମେଦବୃଦ୍ଧିର ଅନେକ ସଂପର୍କ ରହିଛି । ତଥାପି ବୈଜ୍ଞାନିକମାନେ ମେଦବୃଦ୍ଧିର ବଂଶଗତ ଭିତ୍ତି ଯୋଡ଼ିବାକୁ ଚେଷ୍ଟା କରୁଛନ୍ତି । ସେମାନେ ଏଭଳି ଗୁଣସୂତ୍ର ସନ୍ଧାନରେ ଅଛନ୍ତି ଯାହା କିଛି ଲୋକଙ୍କଠାରେ ମେଦବୃଦ୍ଧିର କାରଣ ହେଉଛି । ବିଗତ ବର୍ଷମାନଙ୍କରେ ଏଦିଗରେ ଗୁରୁତ୍ୱପୂର୍ଣ୍ଣ ଅଗ୍ରଗତି ଘଟିଛି । ଏହିଭଳି ଏକ ଗୁରୁତ୍ୱପୂର୍ଣ୍ଣ ଆବିଷ୍କାର ହେଉଛି ହ୍ୱାଇଟ୍ ଆଡିହପୋଜ ଟିସ୍ୟୁ (ଡବ୍ଲ୍ୟୁଏଟି) । ସାଧାରଣରେ ବିଶ୍ୱାସ ଥିଲା ସେ ଡବ୍ଲ୍ୟୁଏଟି ଏକ ଚର୍ବି ମହଜୁଦ୍ ଭଣ୍ଡାର । କିନ୍ତୁ ଏବେ ସେହି ଧାରଣା ବଦଳି ଯାଇଛି ଏବଂ ଜାଣିବାକୁ ମିଳିଛି ଏହା ଏକ ଏଣ୍ଡୋକ୍ରାଇନ୍ ଅର୍ଗାନ୍ । ଏହା ମସ୍ତିଷ୍କ ଏବଂ ଏହାର ଚତୁପାର୍ଶ୍ୱରେ ଥିବା ଟିସ୍ୟୁଗୁଡ଼ିକ ସହିତ ଲେପ୍‌ଟିନ୍ ହରମୋନ୍ କ୍ଷରଣ ଜରିଆରେ ସଂପର୍କରେ ରଖିଥାଏ । ବୈଜ୍ଞାନିକମାନଙ୍କର ବିଶ୍ୱାସ ଯେ ଲେଫ୍‌ଟିନ୍ ଶରୀରରେ ଶକ୍ତି ସନ୍ତୁଳନ ନିୟନ୍ତ୍ରଣ କରିବାରେ ଭୂମିକା ଗ୍ରହଣ କରିଥାଏ । ଆଉ କେତେକଙ୍କର ବିଶ୍ୱାସ ଯେ ବଂଶଗତ, ଅସ୍ୱାଭାବିକ ଖାଦ୍ୟ ଖାଇବା ପ୍ରଭୃତି, ଶାରୀରିକ ବ୍ୟାୟାମର ଅଭାବ ଏବଂ ସାଂସ୍କୃତିକ ପ୍ରଭାବ ପ୍ରଭୃତି କାରଣରୁ ଶରୀରର ମେଦବୃଦ୍ଧି ଘଟିଥାଏ । ଖାଦ୍ୟ ଖାଇବା, ଔଷଧ ସେବନ, ଅସ୍ତ୍ରୋପଚାର ଏବଂ ବ୍ୟୟବହୁଳ ଓଜନହ୍ରାସକାରୀ କାର୍ଯ୍ୟକ୍ରମକୁ ମେଦବୃଦ୍ଧି ସମସ୍ୟାର ସମ୍ଭାବ୍ୟ ସମାଧାନ ପନ୍ଥା ଭାବରେ ବିବେଚନା କରାଯାଉଛି । ବିଶ୍ୱସ୍ୱାସ୍ଥ୍ୟ ସଂଗଠନ ପକ୍ଷରୁ ଗଠିତ ୩୦ ଜଣିଆ ଆନ୍ତର୍ଜାତିକ ବିଶେଷଜ୍ଞ ମଣ୍ଡଳୀ ଏକ ସୁସ୍ଥ ଖାଦ୍ୟ ତାଲିକା ପ୍ରସ୍ତୁତ କରିଛନ୍ତି । ଏଥିରେ ଜଣେ ଦୈନିକ ଖାଉଥିବା ଖାଦ୍ୟରେ ଚର୍ବି ପରିମାଣ ୧୫ରୁ ୩୦ ପ୍ରତିଶତ ମଧ୍ୟରେ ସୀମିତ ରଖିବାକୁ କୁହାଯାଇଛି । ଅନୁରୂପ ଭାବେ ମୁକ୍ତ ଶର୍କରା ପରିମାଣକୁ ୧୦ ପ୍ରତିଶତରୁ କମ୍ ରଖିବାକୁ ପରାମର୍ଶ ଦିଆଯାଇଛି । ପ୍ରତିଦିନ ଜଣକର ଖାଦ୍ୟରେ ଆୟୋଡ଼ିନ୍ ଯୁକ୍ତଲୁଣ ୫ ଗ୍ରାମରୁ କମ୍ ରହିବା ଉଚିତ । ସେହିଭଳି ଫଳ, ପନିପରିବା ଦୈନିକ ୪୦୦ ଗ୍ରାମ୍, ପ୍ରୋଟିନ୍ ୧୦ରୁ ୧୫ ପ୍ରତିଶତ ରହିବା ଆବଶ୍ୟକ । ତା' ସହିତ ଜଣେ କେତେ ଶକ୍ତି ଖର୍ଚ୍ଚ କରୁଛନ୍ତି ତାହା ତାଙ୍କ ଶାରୀରିକ କାର୍ଯ୍ୟକଳାପ ଉପରେ ନିର୍ଭର କରୁଛି । ଚାଲିବା ଭଳି ଦିନକୁ ଏକ ଘଣ୍ଟା ମଧ୍ୟମ ଧରଣର ପରିଶ୍ରମ ଏକ ସୁସ୍ଥ ଶରୀର ବଜାୟ ରଖିବାପାଇଁ ନିତାନ୍ତ ଆବଶ୍ୟକ ।

(ପି.କେ.ଡି/ଏ.ପି.)



ଧରିତ୍ରୀ ସଞ୍ଚୟ ସମିତି, ଢେଙ୍କାନାଳ (ମହିଳା ସଶକ୍ତି କରଣ)

# ଉତ୍କଳୀୟ ସାଂସ୍କୃତିକ ଚେତନାରେ ଚିତାଲାଗି ଅମାବାସ୍ୟା

ଡଃ ସୁଜାତା ଆଚାର୍ଯ୍ୟ

**ବି**ଭିନ୍ନ ପର୍ବପର୍ବାଣି, ଓଷାବ୍ରତ, ପୂଜାପାର୍ବଣ, ଯାନିଯାତ୍ରା ପାଳନ କରିବାରେ ଓଡ଼ିଶାବାସୀ ବେଶ୍ ଆଗୁଆ । ସେଥିପାଇଁ କୁହାଯାଏ, 'ଓଡ଼ିଆମାନଙ୍କର ବାରମାସରେ ତେର ପରବ' । ଏତଦ୍‌ବ୍ୟତୀତ ଆହୁରି ଅନେକ ଉପପର୍ବ ଓଡ଼ିଆମାନଙ୍କୁ ଉତ୍ସବମୁଖର ଓ ଆହ୍ଲାଦିତ କରିଥାଏ । କାହିଁ କେଉଁ ଯୁଗରୁ ଏହି ପର୍ବଗୁଡ଼ିକ ସୃଷ୍ଟି ହୋଇ ଅଦ୍ୟାବଧି ପାଳିତ ହୋଇ ଆସୁଛି । ମନୁଷ୍ୟର ସାମାଜିକ, ନୈତିକ, ମାନସିକ ଓ ଆଧ୍ୟାତ୍ମିକ ଚେତନାକୁ ଉଦ୍‌ବୁଦ୍ଧ କରିବାରେ ଏହି ପର୍ବପର୍ବାଣିର ଯଥେଷ୍ଟ ଭୂମିକା ରହିଛି ।

ତିଥି ଓ ବାରକୁ କେନ୍ଦ୍ର କରି ଓଡ଼ିଶାରେ ଓଷାବ୍ରତ ଓ ପର୍ବପର୍ବାଣି ପାଳନ କରାଯାଏ । ପ୍ରାୟ ପ୍ରତ୍ୟେକ ପୂର୍ଣ୍ଣମୀ ଓ ଅମାବାସ୍ୟା ତିଥିଗୁଡ଼ିକରେ ବିଭିନ୍ନ ଓଷାପର୍ବ ଯଥା- ଦୋଳ ପୂର୍ଣ୍ଣମୀ, ସ୍ନାନ ପୂର୍ଣ୍ଣମୀ, ଗହ୍ମା ପୂର୍ଣ୍ଣମୀ, ଦୀପାବଳୀ ଅମାବାସ୍ୟା, ବଉଳ ଅମାବାସ୍ୟା, ଜାଗର ଅମାବାସ୍ୟା ପ୍ରଭୃତି ପ୍ରଧାନ ଅଟେ ।

ଓଡ଼ିଶାର ଆରାଧ୍ୟ ଦେବତା ଜଗତର ନାଥ ଶ୍ରୀଜଗନ୍ନାଥ ଓଡ଼ିଶାର ଧର୍ମ ଓ ସଂସ୍କୃତିର ପ୍ରାଣକେନ୍ଦ୍ର । ପ୍ରତ୍ୟେକ ଉତ୍କଳୀୟ ପର୍ବପର୍ବାଣି ସହ ଶ୍ରୀଜଗନ୍ନାଥଙ୍କର ଘନିଷ୍ଠ ସମ୍ପର୍କ ରହିଛି । ଶ୍ରାବଣ ମାସର ଅମାବାସ୍ୟା ଶ୍ରୀମନ୍ଦିରରେ 'ଚିତାଲାଗି ଅମାବାସ୍ୟା' ରୂପେ ପାଳିତ ହୋଇଥାଏ ।

ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ବାରଟି ପ୍ରଧାନ ଯାତ୍ରା ରହିଛି । ସେଗୁଡ଼ିକ ହେଉଛି - ଦୋଳ ପୂର୍ଣ୍ଣମୀ, ସ୍ନାନ ପୂର୍ଣ୍ଣମୀ, ଦମନକ ଚତୁର୍ଦ୍ଦଶୀ, ଅକ୍ଷୟ ତୃତୀୟା, ଦେବଶୟନ, ଦକ୍ଷିଣାୟନ, ଉତ୍ତରାୟଣ, ଗୁଣ୍ଡିଚା ଯାତ୍ରା, ପାର୍ଶ୍ୱ ପରିବର୍ତ୍ତନ, ଦେବୋତ୍‌ଥାନ, ଓଢ଼ଣ ଷଷ୍ଠୀ ଓ ପୁଷ୍ୟାଭିଷେକ । ଏତଦ୍‌ବ୍ୟତୀତ ପ୍ରତ୍ୟେକ ମାସରେ ମହାପ୍ରଭୁଙ୍କର ଅନେକ ଉପଯାତ୍ରା ମଧ୍ୟ ପାଳନ କରାଯାଏ । ତନ୍ମଧ୍ୟରୁ ଶ୍ରାବଣ ମାସର ଅମାବାସ୍ୟାରେ ଅନୁଷ୍ଠିତ ଚିତାଲାଗି ଅନ୍ୟତମ ।

ଅଷ୍ଟାଦଶ ଶତାବ୍ଦୀରେ ବାଲୁଙ୍କି ପାଠୀଙ୍କ 'ଯାତ୍ରା ଭାଗବତ'ରୁ ଜଣାଯାଏ -

'ଶ୍ରାବଣେ କୃଷ୍ଣପକ୍ଷେ ତୁ ଦର୍ଶପ୍ରାପ୍ତେ ଶୁଭଦିନେ
ଲଲାଟ-ଭୂଷଣଂ ଯାତ୍ରାଂ ଜଗନ୍ନାଥସ୍ୟ କାରୟେତ୍ ।'

ଅର୍ଥାତ୍, ଶ୍ରାବଣ ମାସର ଅମାବାସ୍ୟା ତିଥିରେ ଶ୍ରୀଜଗନ୍ନାଥଙ୍କ ଲଲାଟରେ ଭୂଷଣ ଅର୍ପଣ କରିବା ଉଚିତ । ଏହା ନିୟମାନୁସାରେ ପାଳନ କରାଯାଏ, ନଚେତ୍ ବର୍ଷକ ମଧ୍ୟରେ ପ୍ରଭୁଙ୍କ ଯାତ୍ରା ପାଳନରୁ ଯେଉଁ ପୁଣ୍ୟ ଅର୍ଜନ କରାଯାଇଥାଏ, ତାହା କ୍ଷୟପ୍ରାପ୍ତ ହୋଇଥାଏ ।

ଶ୍ରୀମନ୍ଦିରରେ ଚିତାଲାଗି ଅମାବାସ୍ୟା ଖ୍ରୀଷ୍ଟୀୟ ତ୍ରୟୋଦଶ ଶତାବ୍ଦୀରୁ ଅଦ୍ୟାବଧି ନିୟମ ପୂର୍ବକ ପାଳିତ ହୋଇ ଆସୁଛି । ଏହାର ବିଧିବିଧାନ ସମ୍ପର୍କରେ ପଦ୍ମ ପୁରାଣ, ସ୍କନ୍ଦ ପୁରାଣ, ବ୍ରହ୍ମ ବୈବର୍ତ୍ତ ପୁରାଣ, ଯାତ୍ରା ଭାଗବତ, ନୀଳାଦ୍ରି ମହୋଦୟ ଆଦି ପ୍ରାଚୀନ ଗ୍ରନ୍ଥରେ ବିସ୍ତୃତ ବର୍ଣ୍ଣନା ରହିଛି । ଶ୍ରାବଣ ଅମାବାସ୍ୟା ଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଦୈନନ୍ଦିନ ଧୂପ ଶେଷ ହେବା ପରେ ତିନି ଠାକୁରଙ୍କୁ ଚିତାଲାଗି କରାଯାଏ । ସ୍ନାନ ପୂର୍ଣ୍ଣମୀ ରାତ୍ରିରେ ଶ୍ରୀବିଗ୍ରହମାନେ ସ୍ନାନବେଦୀରୁ ଅଣସର ପିଣ୍ଡିକୁ ବିଜେ କରିବା ପରେ ସେମାନଙ୍କ ଶ୍ରୀଅଙ୍ଗରୁ ସୁବର୍ଣ୍ଣ ଚିତାମାନ ଓଲାଗି କରାଯାଏ । ଜ୍ୟେଷ୍ଠ ପୂର୍ଣ୍ଣମୀଠାରୁ ଶ୍ରାବଣ ଅମାବାସ୍ୟା ପର୍ଯ୍ୟନ୍ତ ଶ୍ରୀବିଗ୍ରହମାନେ ସୋଲଚିତା ପରିଧାନ କରିଥାନ୍ତି । ଶ୍ରାବଣ ଅମାବାସ୍ୟା ଦିନ ଏହି ସୋଲଚିତାଗୁଡ଼ିକ ଓଲାଗି କରାଯାଇ ସୁବର୍ଣ୍ଣ ଚିତାମାନ ଲାଗି କରାଯାଏ । ସ୍ୱର୍ଣ୍ଣରେ ନିର୍ମିତ ଏହି ଚିତାଗୁଡ଼ିକରେ ହୀରା, ନୀଳା, ମାଣିକ୍ୟ ଓ ଅନ୍ୟାନ୍ୟ ରତ୍ନ ସୁସଜ୍ଜିତ ହୋଇ ରହିଥାଏ । ଶ୍ରୀଜଗନ୍ନାଥଙ୍କ ଚିତାର ନାୟକ ହୀରା (ଧଳା), ଶ୍ରୀବଳଭଦ୍ରଙ୍କ ନୀଳା (ନୀଳ) ଏବଂ ମାତା ସୁଭଦ୍ରାଙ୍କ ଚିତାରେ ମାଣିକ୍ୟ (ଲାଲ୍) ଖଞ୍ଜା ଯାଇଥାଏ । ଏହି ଚିତାଗୁଡ଼ିକର ଓଜନ ଯଥାକ୍ରମେ ୧୨୫ ଭରି, ୭୩ ଭରି ୧୨ ଅଣା ଓ ୩୩ ଭରି ବାରଅଣା ଓ ଏହି ଚିତାଗୁଡ଼ିକର ଆକୃତି ମଧ୍ୟ ଭିନ୍ନ ଭିନ୍ନ ହୋଇଥାଏ । ଶ୍ରୀଜଗନ୍ନାଥଙ୍କ ଚିତା ପ୍ରଦୀପ ଶିଖାକୃତି, ଶ୍ରୀବଳଭଦ୍ରଙ୍କର ଚିତା ପଦ୍ମାକୃତି ଓ ଦେବୀ ସୁଭଦ୍ରାଙ୍କ ଚିତା ବୃତ୍ତାକାକୃତିର ହୋଇଥାଏ । ସୋଲଚିତା ପରିଧାନପୂର୍ବକ ମହାପ୍ରଭୁ ଶ୍ରୀଜଗନ୍ନାଥ ଯେ କେବଳ ସ୍ନାନ ପୂର୍ଣ୍ଣମୀରେ ଭକ୍ତଙ୍କ ସମ୍ମୁଖରେ ଉଭା ହୁଅନ୍ତି ତାହା ନୁହେଁ, ବିଶ୍ୱପ୍ରସିଦ୍ଧ ରଥଯାତ୍ରାରେ ରଥବିଜେ ସହିତ

ଶ୍ରୀଗୁଣ୍ଡିଚା ଘରକୁ ବହିର୍ଗମନ କରିଥାନ୍ତି । ତତ୍‌ପରେ ବାହୁଡ଼ା ବିଜେ ପୂର୍ବକ ଅଧରପଣା, ସୁନାବେଶ ଓ ନୀଳାଦ୍ରି ବିଜେ ପ୍ରଭୃତି ଯାତ୍ରାରେ ତ୍ରିବିଗ୍ରହ ମଧ ସୋଲଚିତାରେ ବିମଣ୍ଡିତ ହୋଇଥାନ୍ତି । ପୁନର୍ବାର ରତ୍ନସିଂହାସନରେ ଅଧିଷ୍ଠିତ ପୂର୍ବକ ଅସଲି ଚିତା ପରିଧାନ କରିଥାନ୍ତି ।

ଚିତାଲାଗି ଅମାବାସ୍ୟା କୃଷକ ଭାଇମାନଙ୍କର ଏକ ବିଶେଷ ପର୍ବ ଭାବରେ ଖ୍ୟାତ । କାରଣ ଅଧିକାଂଶ ପର୍ବପର୍ବାଣି ଯଥା- ଅକ୍ଷୟ ତୃତୀୟା, ଗର୍ଭଣା ସଂକ୍ରାନ୍ତି, ନୂଆଖାଇ ପ୍ରଭୃତି କୃଷିକୁ କେନ୍ଦ୍ର କରି ପ୍ରତ୍ୟେକ ଓଡ଼ିଆ ଘରେ ପାଳନ କରାଯାଇଥାଏ । କୃଷିକର୍ମ ସହିତ ଚିତାଲାଗି ଅମାବାସ୍ୟାରେ ଏକ ବିଶେଷ ସ୍ୱାତନ୍ତ୍ର୍ୟ ରହିଛି । ଶ୍ରାବଣ ମାସରେ କୃଷିର ପ୍ରାରମ୍ଭିକ କାର୍ଯ୍ୟ ଆରମ୍ଭ ହୋଇଥାଏ । ଏହି ସମୟରେ କ୍ଷେତରେ ବେଉଷଣ କାର୍ଯ୍ୟ ଚାଲିଥାଏ । କିପରି ଅଧିକ ଫସଲ ଉତ୍ପାଦନ ହେବ, ସେଥିପାଇଁ ଚାଷୀଭାଇମାନେ ଧାନ କ୍ଷେତକୁ ଫୁଲ, ଚନ୍ଦନ, ସିନ୍ଦୂର ଓ ଚିତୋଉ ପିଠା ନେଇ ଯାଆନ୍ତି । ପୂଜାପୂଜି କରିସାରିବା ପରେ ଚିତୋଉ ପିଠାକୁ କ୍ଷେତରେ ପୋତି ଦେଇ ଆସନ୍ତି । ଏହାଦ୍ୱାରା ଉତ୍ତମ ରୂପେ ଫସଲ ଅମଳ ହେବ ବୋଲି ସେମାନଙ୍କ ମନରେ ଅଖଣ୍ଡ ବିଶ୍ୱାସ ରହିଥାଏ ।

ବାଲେଶ୍ୱର, ମୟୂରଭଞ୍ଜ ଓ କେନ୍ଦୁଝର ଅଞ୍ଚଳରେ ଏହି ପର୍ବକୁ 'ଗେଣ୍ଡାକଟା ଅମାବାସ୍ୟା' ବୋଲି କୁହାଯାଏ । କେହି କେହି ଏହାକୁ 'ଗେଣ୍ଡେଇସୁଣୀ ପୂଜା' ବୋଲି କହିଥାଆନ୍ତି । ଏହାର ବିଶେଷତ୍ୱ ହେଲା ଗେଣ୍ଡାମାନଙ୍କୁ ପୂଜା କରିବା । ଏହି ସମୟରେ ବର୍ଷା ଆରମ୍ଭ ହୋଇଯାଇଥିବାରୁ କ୍ଷେତରେ ପାଣି ଜମି ରହିଥାଏ ଓ ଗେଣ୍ଡାମାନଙ୍କର ସଂଖ୍ୟା ଆଶାତୀତ ଭାବେ ବୃଦ୍ଧି ପାଇଥାଏ । କୃଷକ ଭାଇ ଖାଲି ପାଦରେ କ୍ଷେତରେ କାମ କଲାବେଳେ ଗୋଡ଼କୁ ଗେଣ୍ଡାକାଟି ଦେବାର ଭୟ ରହିଥାଏ । ତେଣୁ ଚାଷୀ ଘରର ଝିଅମାନେ ଚିତୋଉ ପିଠା ହାତରେ ଧରି ବିଲ ବା ପୋଖରୀରେ ଅର୍ପଣ କରି କୁହନ୍ତି - 'ଗେଣ୍ଡେଇସୁଣୀ ଲୋ ଗେଣ୍ଡେଇସୁଣୀ, ମୋ' ବାପାଭାଇଙ୍କ ଗୋଡ଼କୁ କାଟିବୁ ନାହିଁ । ଅର୍ଥାତ୍, ଚାଷୀକୁଳର ବିଶ୍ୱାସ ଯେ- ଗେଣ୍ଡା, କୋଚିଆ, ଧଣ୍ଡ ଆଦି ଅନିଷ୍ଟକାରୀ ଜୀବମାନେ ସନ୍ତୁଷ୍ଟ ହେଲେ ଫସଲ ଭଲ ହେବ ଏବଂ ସେମାନେ ବଳଦ ତଥା କୃଷି କର୍ମରେ ନିୟୋଜିତ ପରିବାର ଲୋକଙ୍କର କ୍ଷତି କରିବେ ନାହିଁ । ସେଥିପାଇଁ ଏହି ଅନିଷ୍ଟକାରୀ ଜଳଚର ଜୀବମାନଙ୍କ ପାଇଁ ବିଲ, ନଈ, ପୋଖରୀ ଓ ନାଳରେ ପିଠା ସମର୍ପଣ କରାଯାଏ ।

ଚିତୋଉ ଅମାବାସ୍ୟା ବା ଚିତାଲାଗି ଅମାବାସ୍ୟା ଦିନ ପ୍ରତ୍ୟେକ ଓଡ଼ିଆ ପରିବାରରେ ଚିତୋଉ ପିଠା, ଖିରି ଓ ମିଷ୍ଟାନ୍ନ ପ୍ରସ୍ତୁତ କରାଯାଇ ପ୍ରଥମେ କୁଳ ଦେବତା ଓ ଇଷ୍ଟ ଦେବତାଙ୍କୁ ଅର୍ପଣ କରାଯାଏ । କେଉଁ କେଉଁ ଜାଗାରେ ଗ୍ରାମ ଦେବୀଙ୍କ ନିକଟରେ ମଧ ଏହି ଭୋଗ ଲାଗି କରାଯାଏ । କେତେକ ବିଶ୍ୱାସ କରନ୍ତି ଯେ, ଶ୍ରାବଣ ମାସରେ ବନ୍ୟା ବିତ୍ପାତ ହେଉଥିବାରୁ ବନ୍ୟାର ପ୍ରକୋପ କମିବା ଉଦ୍ଦେଶ୍ୟରେ ବରୁଣ ଦେବତାଙ୍କୁ ସନ୍ତୁଷ୍ଟ କରିବା ପାଇଁ ପୂଜାର୍ଚ୍ଚନା କରାଯାଇ ଚିତୋଉ ପିଠା ଭୋଗ ନୈବେଦ୍ୟ ସ୍ୱରୂପ ଅର୍ପଣ କରାଯାଏ ।

ଉପରୋକ୍ତ ଆଲୋଚନାରୁ ଜଣାଯାଏ, ଚିତାଲାଗି ଅମାବାସ୍ୟା ପାଳନର ଅନେକ ବୈଶିଷ୍ଟ୍ୟ ରହିଛି । ଏହି ଦିନ ମହାପ୍ରଭୁ ଜଗନ୍ନାଥଙ୍କୁ ସୁବର୍ଣ୍ଣ ଚିତାରେ ଲାଗି କରାଯାଏ ଓ ଚିତୋଉ ପିଠା ଭୋଗ ଲଗାଯାଏ, କୃଷକ ପରିବାରରେ ଚିତୋଉ ପିଠା ପ୍ରସ୍ତୁତ କରାଯାଇ ଅପକାରୀ ଶକ୍ତିମାନଙ୍କୁ ସନ୍ତୁଷ୍ଟ କରାଯାଏ ଓ ବନ୍ୟା ବିତ୍ପାତରୁ ମୁକ୍ତି ପାଇବାକୁ ବରୁଣ ଦେବତାଙ୍କୁ ଚିତୋଉ ଭୋଗ ଅର୍ପଣ କରାଯାଏ । ଏହିସବୁ କାରଣଗୁଡ଼ିକୁ ପୁଙ୍ଖାନୁପୁଙ୍ଖ ଭାବେ ଅନୁଧ୍ୟାନ କଲେ ପର୍ବ ପାଳନର ମହତ୍ ଉଦ୍ଦେଶ୍ୟ ଜଣାପଡ଼େ । ଉଭୟ ଜଗନ୍ନାଥ ମହାପ୍ରଭୁଙ୍କର ପର୍ବପର୍ବାଣି ଓ କୃଷିକାର୍ଯ୍ୟର ପୃଷ୍ଠଭୂମିର ଉପରେ ପର୍ଯ୍ୟବସିତ ଚିତାଲାଗି ଅମାବାସ୍ୟା ଯଥାର୍ଥରେ ଓଡ଼ିଆ ଜନମାନସର ସାଂସ୍କୃତିକ ଓ ସାମାଜିକ ଚେତନାର ଗଭୀର ଆଲେଖ୍ୟ ବହନ କରେ ।

**ଉପାଦାନର ଉତ୍ସ**


୧. ମିଶ୍ର ନୀଳମଣି : ଓଡ଼ିଶାରେ ଚିତାଲାଗି ଅମାବାସ୍ୟା, ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା ଉତ୍କଳ ପାଠକ ସଂସଦ - ତୃତୀୟ ସଂସ୍କରଣ, ୧୯୯୪ ।

୨. Pattnaik Dhirendranath- Festivals of Orissa, First Edition, December-1982.

୩. ସିହ୍ନା ଦୀପ୍ତି : ଚିତାଲାଗି ଅମାବାସ୍ୟା, ଜୟ ଜଗନ୍ନାଥ- ସହସ୍ରାବ୍ଦ ରଥଯାତ୍ରା ସଂଖ୍ୟା, ପୃ.୩୯-୪୦ ।

୪. ମହାନ୍ତି ସୁବ୍ରତ କୁମାର : ଚିତାଲାଗି ଅମାବାସ୍ୟା, ଓ.ପ.ଓ.ଯା- ଉତ୍କଳ ପାଠକ ସଂସଦ, ତୃତୀୟ ସଂସ୍କରଣ, ୧୯୯୪ ।


୨୫, ମଧୁସୂଦନ ନଗର
ୟୁନିଟ୍-୪, ଭୁବନେଶ୍ୱର-୧

# ଅଣସର କାଳରେ ଶ୍ରୀଅଲାରନାଥ ଦର୍ଶନ

ପଙ୍କଜ ସାହୁ

**ସୃ**ଷ୍ଟିର କେଉଁ ପବିତ୍ର ମୁହୂର୍ତ୍ତରେ ନୀଳାଚଳର ନୀଳକନ୍ଦରରେ ଶବରରାଜ ବିଶ୍ୱାବସୁ : ଶଙ୍ଖ-ଚକ୍ର-ଗଦା-ପଦ୍ମ ପରିଶୋଭିତ ନୀଳକାନ୍ତ ମଣିବିଗ୍ରହ ନୀଳମାଧବଙ୍କୁ ନିଭୃତରେ ପୂଜାର୍ଚ୍ଚନା କରୁଥିଲେ । ମାଳବରାଜ ଇନ୍ଦ୍ରଦ୍ୟୁମ୍ନଙ୍କ ଦ୍ୱାରା ଆଦିଷ୍ଟ ବିଦ୍ୟାପତି ସେଠାରେ ପହଞ୍ଚି ବିଶ୍ୱାବସୁଙ୍କ ସହାୟତାରେ ନୀଳମାଧବଙ୍କୁ ଠାବ କରିବା ପରେ ଇନ୍ଦ୍ରଦ୍ୟୁମ୍ନଙ୍କୁ ଏହି ସୁସମ୍ବାଦ ପ୍ରଦାନ ଅଭିପ୍ରାୟରେ ମାଳବ/ଉଜ୍ଜୟିନୀ ପ୍ରତ୍ୟାବର୍ତ୍ତନ କଲେ । ପରମ ବିଷ୍ଣୁଭକ୍ତ ରାଜା ଇନ୍ଦ୍ରଦ୍ୟୁମ୍ନ ସର୍ବଦେବ ପୂଜ୍ୟ ଶ୍ରୀପୁରୁଷୋତ୍ତମଙ୍କୁ ଦର୍ଶନ ପାଇଁ ଆସି ନୀଳାଦ୍ରିରେ ପହଞ୍ଚିବା ପୂର୍ବରୁ ମହାପ୍ରଭୁ ନୀଳକନ୍ଦରରୁ ଅନ୍ତର୍ହିତ ହୋଇ ସେଠାରୁ ଚାରିକୋଶ ଦୂର ପଶ୍ଚିମରେ (୧) ବାସ କରୁଥିବା ଅଲାଲ୍ୟ ନାମଧେୟ ଜନୈକ ବିଷ୍ଣୁଭକ୍ତଙ୍କ ଗୃହରେ ଗୁପ୍ତରେ ଆବିର୍ଭୂତ ହେଲେ । ମହାପ୍ରଭୁ ଅଲାଲ୍ୟ ବ୍ରାହ୍ମଣଙ୍କ ସାରଲ୍ୟ ଭକ୍ତିରେ ଏପରି ପ୍ରୀତ ହୋଇଗଲେ ଯେ ସ୍ୱୟଂ ପୁରୁଷୋତ୍ତମ ଭଗବାନ ମାଧବ ରୂପରେ (୨) ପାୟସ ନୈବେଦ୍ୟ ପ୍ରତ୍ୟକ୍ଷ ଭାବେ ସେବନ କଲେ । ମାତ୍ର ଏ ଘଟଣା ବହୁଦିନ ପର୍ଯ୍ୟନ୍ତ ଗୋପନ ରହି ନପାରି ପ୍ରଚାରିତ ହୋଇଯିବାରୁ ଅଲାଲ୍ୟ ପୂଜିତ ଠାକୁର କ୍ରମଶଃ 'ପାୟସପ୍ରିୟ ଅଲାଲ୍ୟନାଥ' ନାମରେ ଲୋକ ପ୍ରସିଦ୍ଧି ଲାଭ କଲେ । ତତ୍ପରେ ମହାପ୍ରଭୁ ଅଲାଲ୍ୟଙ୍କୁ ସାଯୁଜ୍ୟମୁକ୍ତି ପ୍ରଦାନ ପୂର୍ବକ 'ହେ ଦ୍ୱିଜଶ୍ରେଷ୍ଠ ! ଲୋକ ପ୍ରଘଟ ହେବାରୁ ନୀଳଶୈଳ ତ୍ୟାଗକରି ଆସି ତୋ ଗୃହରେ ଗୁପ୍ତରେ ଅବସ୍ଥାନ କରିଥିଲି । ମାତ୍ର ଏଠାରେ ମୋର ଅବସ୍ଥିତି ଗୋପନୀୟତା ହରାଇବାରୁ ମୁଁ ମଧ୍ୟ ଏ ସ୍ଥାନ ପରିତ୍ୟାଗ କରୁଛି' କହି ପୁନଶ୍ଚ ଅନ୍ତର୍ହିତ ହୋଇଗଲେ ।



ନୀଳାଚଳଠାରୁ ପଶ୍ଚିମକୁ ପ୍ରାୟ ଷଡ଼କ୍ରୋଶ ଦୂରବର୍ତ୍ତୀ ଗିରିବନ ଶୋଭିତ ଏକ ମନୋରମ ପ୍ରାକୃତିକ ପରିବେଶରେ, ସତ୍ୟଯୁଗରେ ବେଦପତି ବ୍ରହ୍ମା ସ୍ୱୟଂ ଅବତରଣ ପୂର୍ବକ ତପସ୍ୟା ଦ୍ୱାରା ସିଦ୍ଧିଲାଭ କରିଥିଲେ । ପବିତ୍ର, ନିର୍ଜନ ତଥା ଶାନ୍ତ ବାତାବରଣ ବିଶିଷ୍ଟ ପ୍ରୋକ୍ତ ସିଦ୍ଧିକ୍ଷେତ୍ରରେ ବ୍ରହ୍ମାଙ୍କ ପ୍ରାର୍ଥନାରେ ସନ୍ତୁଷ୍ଟ ହୋଇ ସ୍ୱୟଂ ବ୍ରହ୍ମନାରାୟଣ ଶିଳାବ୍ରହ୍ମ ରୂପେ ପ୍ରକଟ ଲାଭ କରିବାରୁ ଏହି ଦିବ୍ୟସ୍ଥାନ 'ବ୍ରହ୍ମଗିରି' ନାମରେ ସୁପ୍ରସିଦ୍ଧ ହେଲା । ସୃଷ୍ଟିକର୍ତ୍ତା ବ୍ରହ୍ମା ଉକ୍ତ ବ୍ରହ୍ମଗିରିରେ ସର୍ବ ଶୁଭଲକ୍ଷଣଯୁକ୍ତ ଏହି ବିଷ୍ଣୁବିଗ୍ରହଙ୍କୁ ପରମ ଗୋପନୀୟ ମନ୍ତ୍ର ଦ୍ୱାରା ସ୍ୱୟଂ ପ୍ରତିଷ୍ଠା କଲେ । ପରବର୍ତ୍ତୀ କାଳରେ ହିନ୍ଦୁଧର୍ମର ପ୍ରଚାରକ ରୂପେ ଶ୍ରୀ ସମ୍ପ୍ରଦାୟର ଦ୍ୱାଦଶ ପୂର୍ବସୂରୀ ପରମ ବିଷ୍ଣୁଭକ୍ତ ପାର୍ଷଦଗଣ (୩) ଏହି ଅନିନ୍ଦ୍ୟ ପୀଠରେ ଅବସ୍ଥାନ ପୂର୍ବକ ବ୍ରହ୍ମାକର୍ତ୍ତୃକ ପ୍ରତିଷ୍ଠିତ ଚତୁର୍ଭୁଜ ଜନାର୍ଦ୍ଦନ ବିଷ୍ଣୁଙ୍କୁ (୪) ପଞ୍ଚରାତ୍ର ବିଧିରେ ପୂଜାର୍ଚ୍ଚନା କରୁଥିଲେ । ତତ୍କାଳରେ ସେମାନଙ୍କୁ ଆଲୋୟାର ବା ଆଲବାର ସମ୍ପ୍ରଦାୟ କୁହାଯାଉଥିଲା । ଉକ୍ତ ଆଲବାରମାନଙ୍କର ପ୍ରଭୁ/ଇଷ୍ଟ/ନାଥ ଶ୍ରୀମନ୍ନାରାୟଣ କ୍ରମଶଃ ଆଲବାର ନାଥ- ଆଲାରନାଥ- ଅଲାରନାଥ ନାମରେ ବହୁ ପ୍ରସିଦ୍ଧି ଲାଭ କଲେ । ଅଲାରନାଥଙ୍କ ଆବିର୍ଭାବ ସମ୍ବନ୍ଧରେ କୌଣସି ସତ୍ୟତା ଏଯାବତ୍ ଉଦ୍‌ଘାଟିତ ହୋଇ ନଥିଲେ ହେଁ ଅନୁରୂପ କତିପୟ ପୌରାଣିକ କିମ୍ବଦନ୍ତୀକୁ ଆଧାର କରି ଅଲାରନାଥ ମହିମାଦୀପ୍ତ ହୋଇଛନ୍ତି ।

ଇତ୍ୟବସରରେ ଇନ୍ଦ୍ରଦ୍ୟୁମ୍ନ ମାଳବରୁ ଆସି ନୀଳଗିରିରେ ନୀଳମାଧବଙ୍କୁ ଦର୍ଶନ ନପାଇ ଆତ୍ମ-ଧିକ୍କାର କରିବାକୁ ଲାଗିଲେ । ମାତ୍ର ନାରଦଙ୍କ ପରାମର୍ଶକ୍ରମେ ସାହସ୍ରିକ ଅଶ୍ୱମେଧ ଯଜ୍ଞାନୁଷ୍ଠାନ ପରିସମାପ୍ତିରେ ମହୋଦଧିରୁ ଉତ୍ତୋଳିତ ବ୍ରହ୍ମଦାରୁରୁ ଶ୍ରୀଜଗନ୍ନାଥଙ୍କ ଚତୁର୍ଦ୍ଧା ଦାରୁବ୍ରହ୍ମ ମୂର୍ତ୍ତି ପ୍ରତିଷ୍ଠାପୂର୍ବକ ଠାକୁରଙ୍କ ପୂଜାର୍ଚ୍ଚନା ନିମିତ୍ତ ଯଥୋଚିତ ବ୍ୟବସ୍ଥା କଲେ । ପରବର୍ତ୍ତୀ କାଳରେ ବିଭିନ୍ନ ଠାକୁରରାଜା : ଲୀଳାମୟ ମହାପ୍ରଭୁଙ୍କ ପ୍ରୀତ୍ୟର୍ଥେ ଅନେକ ପର୍ବପର୍ବାଣି-ଯାନିଯାତ୍ରା ଖଞ୍ଜିଦେଲେ ଯାହାକି ଅଦ୍ୟାବଧି ଅନୁଷ୍ଠିତ ହୋଇଆସୁଛି । ଆଲୋଚ୍ୟ ବ୍ରହ୍ମଗିରି ଓ ନୀଳଗିରି ମଧ୍ୟରେ ନାଭିସୂତ୍ରର ସମ୍ପର୍କ ବିଦ୍ୟମାନ । ଆଉ

ସେ ସମ୍ପର୍କସୂତ୍ର, ଓଡ଼ିଆର ଇଷ୍ଟ ଦେବ ଶ୍ରୀଜଗନ୍ନାଥଙ୍କ ଲୀଳାବୈଭବ ଯୋଗୁ ହିଁ ସମ୍ବନ୍ଧାନ୍ୱିତ ହୋଇଅଛି ।

ଦେବସ୍ନାନ ପୂର୍ଣ୍ଣମୀରେ ଶ୍ରୀଜଗନ୍ନାଥ ଚତୁର୍ଦ୍ଧାମୂର୍ତ୍ତି ସ୍ନାନବେଦୀ ଉପରେ ସର୍ବତୀର୍ଥମୟ ସ୍ୱର୍ଣ୍ଣକୂପରୁ ଉତ୍ତୋଳିତ ୧୦୮ କୁମ୍ଭ ସୁବାସିତ ଜଳରେ ସମ୍ପୂର୍ଣ୍ଣ ସ୍ନାନ ଫଳରେ ମହାପ୍ରଭୁ ଭୀଷଣ ଜ୍ୱରାକ୍ରାନ୍ତ ହୋଇ ପଡ଼ନ୍ତି ବୋଲି ଭକ୍ତିପ୍ରାଣ ଜନତା ବିଶ୍ୱାସ କରେ । ଅସୁସ୍ଥତା ବଶତଃ ଶ୍ରୀଜୀଉ ଉକ୍ତ ଦର୍ଶନାର୍ଥୀମାନଙ୍କୁ ଦର୍ଶନ ପ୍ରଦାନ ନିମିତ୍ତ ଅବସର ପାଉନଥିବାରୁ ମଞ୍ଜାସ୍ନାନ ପରବର୍ତ୍ତୀ ପଞ୍ଚଦଶ ଦିବସକୁ ଅନବସର ବା ଅଣସର ନାମରେ ଅଭିହିତ କରାଯାଇଥାଏ । ଉକ୍ତ ଅନବସର ଅବସ୍ଥାନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ଅନ୍ୟତମ ଗୁପ୍ତ ଲୀଳା ଅଟେ । ଇତ୍ୟବସରରେ ମହାପ୍ରଭୁଙ୍କ ଅଙ୍ଗଲାଗି ସେବକ ଦଇତାପତି ସେବାୟତଗଣ ଶ୍ରୀଜୀଉଙ୍କୁ ଅଣସର ପିଣ୍ଡିରେ ନିଭୃତରେ ରଖି ପଥ୍ୟ-ପାଚନ-ଦଶମୂଳ-ମୋଦକ ପ୍ରଭୃତି ନୈବେଦ୍ୟ ଅର୍ପଣ ପୂର୍ବକ ଚିକିତ୍ସା ବ୍ୟାଜରେ 'ଗୁପ୍ତ ସେବା' କରିଥାନ୍ତି । ସୂକ୍ଷ୍ମ ଦୃଷ୍ଟିରେ ବିଚାର କଲେ ଜଣାଯାଏ ଯେ ଯଦି ପ୍ରତିବର୍ଷ ସ୍ନାନବେଦୀରେ ପ୍ରତ୍ୟକ୍ଷ ସ୍ନାନ ଯୋଗୁଁ ମହାପ୍ରଭୁ ଜ୍ୱର କଷ୍ଟ ଭୋଗ କରୁଛନ୍ତି, ତେବେ ସାମ୍ବତ୍ସରିକ ମଞ୍ଜାସ୍ନାନ କରାଇ ଶ୍ରୀଜୀଉଙ୍କୁ ଜ୍ୱରପୀଡ଼ା ପ୍ରଦାନର ପୁନରାବୃତ୍ତି କରିବା ଭଳି ଧୃଷ୍ଟତା, ଆଦୌ ଭକ୍ତମାନସ ପ୍ରଦର୍ଶନ କରନ୍ତା ନାହିଁ । ତେଣୁ ବାସ୍ତବିକତା କିନ୍ତୁ ଭିନ୍ନ ଅଟେ ।

ପ୍ରତ୍ୟକ୍ଷ ମଞ୍ଜାସ୍ନାନ ଫଳରେ ମହାପ୍ରଭୁଙ୍କ ଅଙ୍ଗରାଗ ବିରୂପ ହୋଇ ଅଙ୍ଗସୌଷ୍ଠବର କାନ୍ତି ବିକୃତ ହୋଇଯିବା ସ୍ୱାଭାବିକ । ସେହିହେତୁ ଠାକୁରଙ୍କର ଶ୍ରୀଅଙ୍ଗଶୋଧନ ତଥା ନୂତନତା ଆନୟନ ନିମିତ୍ତ ଏହି ଅଣସର ପକ୍ଷ ହେଉଛି ପ୍ରକୃଷ୍ଟ ସମୟ । ତେଣୁ ଶ୍ରୀଜୀଉଙ୍କ ବିକୃତ କଳେବରକୁ ପୁନଃଚିତ୍ରଣ ବା ବର୍ଣ୍ଣୀକରଣ ପୂର୍ବରୁ ଶ୍ରୀଅଙ୍ଗରୁ ଜଳସିକ୍ତ ପାଟ ଆସ୍ତରଣ ଫିଟାଇ ଦିଆଯାଉଥିବାରୁ ଶ୍ରୀମନ୍ଦିର ପରିଭାଷାରେ ଏହି କାର୍ଯ୍ୟବିଧି ସାଧାରଣତଃ ଶ୍ରୀଅଙ୍ଗଫିଟା ବା ଶ୍ରୀଅଙ୍ଗସଂସ୍କାର ନାମରେ ସର୍ବଜନ ବିଦିତ । ଶ୍ରୀଅଙ୍ଗ ସଂସ୍କାର ସମୟରେ ଶ୍ରୀବିଗ୍ରହମାନଙ୍କ ଆଦ୍ର ଶରୀରରୁ ପୂର୍ବ ପରିହିତ ପଟ୍ଟବସ୍ତ୍ର ସବୁ ଉଲାଗି କରି ଶ୍ରୀଜୀଉଙ୍କ ମୌଳିକ ଦାରବ କଳେବରର ସମସ୍ତ ଅବୟବ ତନଖି କରି ତହିଁରେ ପରିଦୃଷ୍ଟ ତ୍ରୁଟି ବିଚ୍ୟୁତି ଆବିଷ୍କାର ପୂର୍ବକ ତାହାର ପ୍ରତିବିଧାନ ନିମିତ୍ତ ଆନୁଷଙ୍ଗିକ ମରାମତି କାର୍ଯ୍ୟ ପାଇଁ ଗୋପନୀୟତା ଅବଲମ୍ବନ ଏକାନ୍ତ ଅପରିହାର୍ଯ୍ୟ । ସେହି ଗୋପନକର୍ମ ସମ୍ପାଦନ ନିମିତ୍ତ ଠାକୁରଙ୍କୁ ଜ୍ୱର ହୋଇଛି ବୋଲି ସର୍ବସାଧାରଣରେ ଧାରଣା ଜନ୍ମାଇ ଲୋକଲୋଚନ ଅନ୍ତରାଳରେ ଅଣସର ପିଣ୍ଡିରେ ମହାପ୍ରଭୁଙ୍କୁ ଅବସ୍ଥାପନ ପୂର୍ବକ ଘଣାଲାଗି, ଖଳିଲାଗି, ଖଡ଼ିଲାଗି, ବନକଲାଗି ପ୍ରଭୃତି ଶ୍ରୀଅଙ୍ଗବିନ୍ୟାସ ମାଧ୍ୟମରେ ସୁରୂପ ପ୍ରଦାନ ପର୍ଯ୍ୟନ୍ତ ଭକ୍ତ ସାଧାରଣଙ୍କୁ ଶ୍ରୀଜଗନ୍ନାଥ ଦର୍ଶନ ସୁଯୋଗ ଉପଲବ୍ଧ ହୁଏ ନାହିଁ । ଏପରିକି ଅନୁରୂପ ବିଧି ଯୋଗୁଁ ଏହି ସମୟରେ ଶ୍ରୀମନ୍ଦିର ବଳୟିତ ମେଘନାଦ ପ୍ରାଚୀର ସଂଲଗ୍ନ ସିଂହଦ୍ୱାର ଗୁମୁଟ ମଧ୍ୟରେ ବିରାଜିତ ପତିତପାବନ ଠାକୁରଙ୍କୁ ମଧ୍ୟ ଆବରଣ ମଧ୍ୟରେ ରଖି ସର୍ବସାଧାରଣଙ୍କ ସମକ୍ଷୀଭୂତ ହେବାକୁ ଦିଆଯାଏ ନାହିଁ ।

ଶାସ୍ତ୍ର ନିର୍ଦ୍ଦେଶ ଅନୁସାରେ ଉକ୍ତ ଅନବସର ସମୟରେ ଶ୍ରୀଜୀଉଙ୍କର ଅନାବୃତ୍ତ ଦାରୁ (ଅସ୍ଥି)ମୟ ରୂପ (୫) ଦର୍ଶନ କଲେ ଦର୍ଶନାର୍ଥୀର ଆୟୁ, ପ୍ରଜ୍ଞା, ଯଶ ଓ ବଳହାନି ଘଟେ । ତା'ର ପ୍ରତିବିଧାନ ନିମିତ୍ତ ଅଣସର ତାଟି ବାହାର ପାର୍ଶ୍ୱରେ ପଟି ଦିଅଁ ପୂଜା ବ୍ୟବସ୍ଥା ପ୍ରଚଳିତ ଅଛି । କିନ୍ତୁ ଭକ୍ତମାନସ ସେହି ପଟି ଦିଅଁ ଦର୍ଶନରେ ଆଦୌ ପରିତୋଷ ହୁଏ ନାହିଁ । ପୁନଶ୍ଚ ଜଗନ୍ନାଥ ପ୍ରାଣ ଏପରି କେତେକ ନୈଷ୍ଠିକ ଭକ୍ତ ଅଛନ୍ତି ଯେଉଁମାନେକି ପ୍ରତ୍ୟହ ମହାପ୍ରଭୁଙ୍କୁ ପ୍ରତ୍ୟକ୍ଷ ନକଲେ ଅନ୍ନଜଳ ସ୍ପର୍ଶ କରନ୍ତି ନାହିଁ । ତେଣୁ ନିତ୍ୟ ଦର୍ଶନାକାଙ୍କ୍ଷୀ ଭକ୍ତଙ୍କ ପକ୍ଷେ ଅଣସର ୧୫ ଦିନ ବିଶେଷତଃ ମହାଅଣସରର ୪୫ ଦିନ ବ୍ୟାପୀ ଶ୍ରୀଜଗନ୍ନାଥଙ୍କ ଅଦର୍ଶନଜନିତ ଶ୍ରୀକ୍ଷେତ୍ର ରହଣି ଅତ୍ୟନ୍ତ ଦୁର୍ବିସହ ବୋଧ ହୋଇଥାଏ । ଅତୀତରେ ଅନୁରୂପ ଜନୈକ ଭକ୍ତ ଶ୍ରୀଜଗନ୍ନାଥ ଦର୍ଶନେଚ୍ଛା ମନରେ ପୋଷଣ କରି ଶ୍ରୀକ୍ଷେତ୍ରରେ ଉପସ୍ଥିତ ହେଲେ । ମାତ୍ର ଶ୍ରୀଜଗନ୍ନାଥ ମହାପ୍ରଭୁ ଜ୍ୱରାକ୍ରାନ୍ତ ହୋଇ ଚିକିତ୍ସାଧୀନ ଥିବାରୁ ଦର୍ଶନ ସମ୍ଭବ ନୁହେଁ ବୋଲି ସେବକଙ୍କଠାରୁ ଶୁଣି ବିସ୍ମୟାଭିଭୂତ ହୋଇ ପଡ଼ିଲେ ସେ । ଯେଉଁ ଠାକୁର ସ୍ୱୟଂ ବିଗତଜ୍ୱର, ସେ ପୁଣି ଜ୍ୱର ପ୍ରପୀଡ଼ିତ ହୋଇ ଚିକିତ୍ସାରେ ଅଛନ୍ତି, ଏହି ଉକ୍ତି ତାଙ୍କର କିନ୍ତୁ ହଜମ ହେଲା ନାହିଁ । ତେଣୁ ସେ ନିଜକୁ ହତଭାଗ୍ୟ ମନେକରି ମହୋଦଧିରେ ଆତ୍ମ ବିସର୍ଜନ ନିମିତ୍ତ ଅଗ୍ରସର ହେଲେ । ଅନ୍ତର୍ଯ୍ୟାମୀ ଶ୍ରୀଜଗନ୍ନାଥଙ୍କୁ ଭକ୍ତର ଏ ଆର୍ତ୍ତି ବିଚଳିତ କଲା । ତେଣୁ ଭକ୍ତବତ୍ସଳ ପ୍ରଭୁ ଭକ୍ତକୁ ପ୍ରାଣବିସର୍ଜନରୁ ନିବୃତ୍ତ କରାଇବା ପାଇଁ ମଶାଣିଆ ମହାବୀରଙ୍କୁ ନିର୍ଦ୍ଦେଶ ଦେଲେ । ମହାବୀର ଏକ ବିରାଟକାୟ ବାନର ରୂପେ ଭକ୍ତଙ୍କ ପଶ୍ଚାଦ୍‌ଧାବନ କରିବାରୁ ସେ ଇତଃସ୍ତତଃ ଭାବେ ପଶ୍ଚିମାଭିମୁଖୀ ହୋଇ ଦୌଡ଼ି ଦୌଡ଼ି ଏପରି କ୍ଳାନ୍ତ ହୋଇପଡ଼ିଲେ ଯେ ମହୋଦଧିର ସମୀପବର୍ତ୍ତୀ ହେବାକୁ ତାଙ୍କର ଆଉ ଧୈର୍ଯ୍ୟ ନଥିଲା । ତେଣୁ ସେଠାରେ ସେ ଅଗ୍ନି ପ୍ରଜ୍ୱଳନ ପୂର୍ବକ ଆତ୍ମାହୂତି ଦେବା ନିମିତ୍ତ କୃତ-ସଂକଳ୍ପ ହୋଇ ଉଦ୍ୟତ ହୁଅନ୍ତେ, ହଠାତ୍ ଶୂନ୍ୟବାଣୀ ଶୁଣିବାକୁ ପାଇଲେ 'ହେ ଭକ୍ତ ଶ୍ରେଷ୍ଠ ! ତୁମ ଅନ୍ତର୍ବେଦନା ମୁଁ ଅନୁଭବ କରିପାରୁଛି । ହେଲେ ଅଣସରରେ ଥାଇ ତୁମର ଦର୍ଶନେଚ୍ଛା ପୂରଣ କରିପାରୁନାହିଁ । କିନ୍ତୁ ମୋର ମୂଳବିଗ୍ରହ ନୀଳମାଧବ, ସମ୍ପ୍ରତି ବ୍ରହ୍ମଗିରିଠାରେ 'ଅଲାରନାଥ' ନାମରେ ବିରାଜମାନ କରୁଅଛନ୍ତି । ତେଣୁ ତୁମେ ଅଲାରନାଥ ବିଗ୍ରହରେ ମୋର ଦର୍ଶନ ପାଇପାରିବ ଏବଂ ଆଜିଠାରୁ ଅଣସର/ମହାଅଣସର ସମୟରେ ଯେଉଁ ପ୍ରିୟ ଭକ୍ତ ମୋର ଦର୍ଶନ କାମନା ମନରେ ପୋଷଣ କରିବ, ସେ ଅଲାରନାଥ ଦର୍ଶନ ମାଧ୍ୟମରେ ମୋ' ଦର୍ଶନର ସମପୁଣ୍ୟ ଫଳ ଲାଭ କରିବ । ଶୂନ୍ୟବାଣୀ ଶ୍ରବଣରେ ଆତ୍ମହତ୍ୟା ଚିନ୍ତନରୁ ବିରତ ହୋଇ ଭକ୍ତ ଶିରୋମଣି କିଛିବାଟ ପଶ୍ଚିମକୁ ଗମନ କରିବା ପରେ ପ୍ରାୟ ଚିଲିକା ତଟପ୍ରଦେଶରେ ଆତ୍ମ-

ପୁନାଙ୍ଗ-ବକୁଳ-ଲଙ୍କାମ୍ବ-ନାରିକେଳ ଉଦ୍ୟାନ ପରିବେଷ୍ଟିତ ସୁରମ୍ୟ ସ୍ଥାନରେ ପ୍ରଭୁ ଅଲାରନାଥଙ୍କୁ ଦର୍ଶନ କରି ନିଜକୁ ଧନ୍ୟ ମନେକଲେ । ତତ୍ତ୍ୱାନ୍ୱେଷୀମାନଙ୍କ ମସ୍ତିଷ୍କ ଚକ୍ଷୁ ଅପେକ୍ଷା ଭକ୍ତ ଅନ୍ତର୍ଦୃଷ୍ଟିରେ ଶ୍ରୀଜଗନ୍ନାଥଙ୍କ ଲୀଳାବୈଚିତ୍ର୍ୟର ଭବ୍ୟରୂପ ବେଶ୍ କମନୀୟ ହୋଇ ପ୍ରତିଭାତ ହୋଇଉଠେ । ଏହି ପରିପ୍ରେକ୍ଷୀରେ ଅଲାରନାଥ, ଶ୍ରୀଜଗନ୍ନାଥ ରୂପେ ପ୍ରତୀୟମାନ ହେବା କୌଣସି ଯୁକ୍ତିର ଅପେକ୍ଷା ରଖେ ନାହିଁ । ସେ ଯାହା ହେଉନା କାହିଁକି ସେହି ଦିନଠାରୁ ଅଣସର କାଳରେ ଶ୍ରୀଅଲାରନାଥଙ୍କୁ ବିଶେଷ ଦର୍ଶନର ଅୟମାରମ୍ଭ ହୋଇଅଛି ।

ପ୍ରୋକ୍ତ ବିଶେଷ ଦର୍ଶନ ଯୋଗୁଁ ଅଲାରନାଥ ମହିମା କ୍ରମଶଃ ପ୍ରଚାରିତ ହେଲା । ଠାକୁରରାଜା ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କ ବିକଳ୍ପ ଶ୍ରୀଅଲାରନାଥଙ୍କ ଉଦ୍ଦେଶ୍ୟରେ ଏକ ଭବ୍ୟମନ୍ଦିର ନିର୍ମାଣ କଲେ । ପୁରୀଠାରୁ ୧୮ କି.ମି. ଦୂରବର୍ତ୍ତୀ ବ୍ରହ୍ମଗିରିରେ ଅଲାରନାଥଙ୍କ ମୂଳମନ୍ଦିର କେବେ ଯେ ନିର୍ମିତ ହୋଇଥିଲା, ସେ ସମ୍ବନ୍ଧରେ ଇତିହାସ ସମର୍ଥିତ କୌଣସି ତଥ୍ୟ ଉପଲବ୍ଧ ନହେଲେ ମଧ୍ୟ ବର୍ତ୍ତମାନର ଶ୍ରୀଜଗନ୍ନାଥ ମନ୍ଦିର ନିର୍ମାଣ ପୂର୍ବରୁ ଅର୍ଥାତ୍ ଖ୍ରୀଷ୍ଟିୟ ନବମ ଶତାବ୍ଦୀର ଉତ୍ତରାର୍ଦ୍ଧରେ ଏହା ନିର୍ମିତ ହୋଇଥିବା ସମ୍ଭବ ବୋଲି ପ୍ରତ୍ନତତ୍ତ୍ୱବିତ୍‌ଗଣ ଅନୁମାନ କରନ୍ତି । ପ୍ରାକୃତିକ ବିପର୍ଯ୍ୟୟ ଦ୍ୱାରା କବଳିତ ହୋଇ ମୂଳମନ୍ଦିର ଧ୍ୱଂସପ୍ରାପ୍ତ ହେବା ପରେ ଖ୍ରୀ: ୧୧୨୮ରେ ଗଙ୍ଗବଂଶୀ ଚତୁର୍ଥ ନରପତି ମଦନମହାଦେବଙ୍କ ଦ୍ୱାରା ଏହି ମନ୍ଦିରର ଜୀର୍ଣ୍ଣ ସଂସ୍କାର କାର୍ଯ୍ୟ ସମ୍ପନ୍ନ ହୋଇଥିବାର ପ୍ରମାଣ (୬) ମିଳିଥାଏ । ଉତ୍କର୍ଷ କାରୁକଳାର ଚରମ ଅଭିବ୍ୟକ୍ତି ବହନ କରି ଦଣ୍ଡାୟମାନ ଏହି ଅଲାରନାଥ ମନ୍ଦିରର ଉଚ୍ଚତା ପ୍ରାୟ ୫୦ ଫୁଟ ଅଟେ । ଜଗମୋହନ ଓ ନାଟମନ୍ଦିର ସଂଲଗ୍ନ ଏହି ମନ୍ଦିରର ଚତୁଃପାର୍ଶ୍ୱରେ ପରିବେଷ୍ଟିତ ୭ଟି ଦେବବିଗ୍ରହ ସମେତ ଦୋଳବେଦୀ, ଚନ୍ଦନ ପୁଷ୍କରିଣୀ, କୂପ, ଚତ୍ୱର ଇତ୍ୟାଦି ଦେଖିବାକୁ ମିଳେ । ଏହି ମନ୍ଦିର ସମ୍ପ୍ରତି ରାଜ୍ୟ ପ୍ରତ୍ନତତ୍ତ୍ୱ ବିଭାଗର ତତ୍ତ୍ୱାବଧାନରେ ରହିଥିଲେ ମଧ୍ୟ ଇସ୍‌କନ ଦ୍ୱାରା ରୋଷଶାଳା ଓ ଭୋଜନମଣ୍ଡପ ନିର୍ମିତ ହୋଇଅଛି ।

ଆଲୋଚ୍ୟ ମନ୍ଦିର ମଧ୍ୟରେ ଉପାସିତ ହେଉଛନ୍ତି ଶିଳାବିଗ୍ରହ ଶିଳାବ୍ରହ୍ମ ନାରାୟଣ ମୂର୍ତ୍ତି ଶ୍ରୀଅଲାରନାଥ । ଶ୍ରୀଜଗନ୍ନାଥଙ୍କର ମୂଳବିଗ୍ରହ ନୀଳମାଧବଙ୍କର ଯେଉଁ ରୂପ ବର୍ଣ୍ଣନା ଇନ୍ଦ୍ରନୀଳମଣି ପୁରାଣ, ସ୍କନ୍ଦପୁରାଣ, ପଦ୍ମପୁରାଣ, କପିଳ ସଂହିତା, ବାମଦେବ ସଂହିତା ଓ ନୀଳାଦ୍ରି ମହୋଦୟରେ ସ୍ଥାନ ପାଇଛି, ସେହିସବୁ ପ୍ରତିମାଲକ୍ଷଣ ଅଲାରନାଥ ବିଗ୍ରହରେ ପ୍ରତିଭାତ ହେଉଥିବାରୁ ନୀଳାଚଳରୁ ଅନ୍ତର୍ହିତ ନୀଳମାଧବ, ଅଲାଲ୍ୟ ବ୍ରାହ୍ମଣ ଗୃହାବସ୍ଥାନ ପରେ ପ୍ରୋକ୍ତ ବ୍ରହ୍ମଗିରିଠାରେ ଆବିର୍ଭୂତ ହୋଇଥିବା ଅନୁମାନ, ସତ୍ୟରେ ପରିଣତ ହୋଇଅଛି । ବିଗ୍ରହ କଳାଦୃଷ୍ଟିରୁ ପ୍ରାୟ ଛଅଫୁଟ ଉଚ୍ଚତା ବିଶିଷ୍ଟ ଖଣ୍ଡିଏ ମାତ୍ର କଳାମୁଗୁନି ପ୍ରସ୍ତର ନିର୍ମିତ ଅଲାରନାଥ ବିଗ୍ରହ ଏକ ସୂକ୍ଷ୍ମ କାରୁକାର୍ଯ୍ୟ ସମ୍ବଳିତ ପ୍ରଭା ବା ତୋରଣ ମଧ୍ୟରେ ଦଣ୍ଡାୟମାନ । ତୋରଣର ପାଦପୀଠ ଉପରେ ଉଭୟପାର୍ଶ୍ୱରେ ଶ୍ରୀଦେବୀ ଓ ଭୂଦେବୀ ଯଥାକ୍ରମେ ଲକ୍ଷ୍ମୀ ଏବଂ ସରସ୍ୱତୀ ରୂପେ ସମାସୀନ ହୋଇଥିଲେ ହେଁ ସେବକମାନେ ତାଙ୍କୁ ରୁକ୍ମିଣୀ-ସତ୍ୟଭାମା ବୋଲି ଭକ୍ତ ଦର୍ଶକମାନଙ୍କୁ ଚିହ୍ନିତ କରାଇଥାନ୍ତି । ପୁନଶ୍ଚ ତୋରଣସ୍ତମ୍ଭର ମଧ୍ୟାଂଶରେ ଚାମରଧାରଣୀ ଲଳିତା, ବିଶାଖା ଉଭୟପାର୍ଶ୍ୱରେ ଦଣ୍ଡାୟମାନ ଥାଇ ସେବା ସମର୍ପଣ କରୁଥିବା ସ୍ଥଳେ ତୋରଣସ୍ତମ୍ଭର ଊର୍ଦ୍ଧ୍ୱଭାଗରେ ବ୍ରହ୍ମା ଓ ଶିବ ବିଦ୍ୟମାନ ଅଛନ୍ତି । ସର୍ବୋପରି ଶ୍ରୀଚରଣତଳେ ପକ୍ଷୀରାଜ ଗରୁଡ଼ ଉପବେସନ ମୁଦ୍ରାରେ ଯୋଡ଼ ହସ୍ତରେ ପ୍ରାର୍ଥନା କରୁଅଛନ୍ତି । ମୂର୍ତ୍ତିତତ୍ତ୍ୱ ଦୃଷ୍ଟିରୁ ଅଲାରନାଥ ହେଉଛନ୍ତି ଚତୁର୍ଭୁଜ ବିଶିଷ୍ଟ ବାମନୀୟ ନାରାୟଣ ମୂର୍ତ୍ତି - ଯାହାଙ୍କର ଚତୁଃହସ୍ତରେ ଶଙ୍ଖ-ଚକ୍ର-ଗଦା ତଥା ଅଭୟମୁଦ୍ରା ମଧ୍ୟରେ ପଦ୍ମ ସୁଶୋଭିତ ହୋଇଛି । ନୀଳମେଘ ସଦୃଶ କାନ୍ତିଯୁକ୍ତ ମହାପ୍ରଭୁଙ୍କ ସର୍ବାଙ୍ଗରେ ସୂକ୍ଷ୍ମ କାରୁକାର୍ଯ୍ୟ ଫୁଟି ଉଠିଛି । ଅଲାରନାଥଙ୍କର ପୁଣ୍ଡରିକ ସଦୃଶ ଆୟତ ନେତ୍ରଯୁଗଳ, କର୍ଣ୍ଣରେ ଦୋଳାୟିତ ମକର କୁଣ୍ଡଳ, ଗଳାରେ ପ୍ରଲମ୍ବିତ ଗଜମୋତି ସଂଯୁକ୍ତ ରତ୍ନହାର, ସ୍କନ୍ଧରେ ଯଜ୍ଞୋପବୀତ, ହସ୍ତରେ ବାହୁଟି, ଅଙ୍ଗୁଳିମାନଙ୍କରେ ଅଙ୍ଗୁରୀୟ ଓ ପାଦରେ ନୂପୁର ପ୍ରଭୃତି ଆଭୂଷଣରେ ମହାପ୍ରଭୁ ସର୍ବଦା ଜୀବନ୍ତରୂପେ ପ୍ରତୀୟମାନ ହୋଇଥାନ୍ତି । ଅଲାରନାଥଙ୍କ ମୁଖ, ଦକ୍ଷିଣହସ୍ତ ଓ ହୃଦୟରେ ୩ଟି ବିସ୍ଫୋଟକ ଚିହ୍ନ ପରିଦୃଷ୍ଟ ହୁଏ, ଯାହାକି ଅଲାଲ୍ୟ ବ୍ରାହ୍ମଣଙ୍କ ପରିବାର ସଦସ୍ୟଙ୍କର ଦ୍ୱାରା ନିବେଦିତ ଉଷ୍ମପାୟସ ସେବନରୁ ସୃଷ୍ଟି ହୋଇଥିବା କିମ୍ବଦନ୍ତୀକୁ ପୁଷ୍ଟ କରିଥାଏ । ଏତଦ୍‌ବ୍ୟତୀତ ଠାକୁରଙ୍କଠାରେ ଯେଉଁ ବିଶେଷତ୍ୱ ପରିଲକ୍ଷିତ ହୋଇଥାଏ, ତାହା ହେଉଛି ବିଷ୍ଣୁ ପୀତାମ୍ବର ହୋଇଥିବାସ୍ଥଳେ ଶ୍ରୀଅଲାରନାଥଙ୍କୁ ସର୍ବଦାନ ଶୁଭ୍ରବସ୍ତ୍ର ପରିଧାନ କରାଯାଇଥାଏ । ତଦ୍ୱାରା ଆଳବାରମାନଙ୍କ 'ଶୁକ୍ଲାମ୍ବର ଧର ବିଷ୍ଣୁ' ପୂଜନ ସ୍ମୃତି, ଏ ଯାବତ୍ ଅଲାରନାଥଙ୍କ ପରିଧେୟରେ ଯେ ସୁରକ୍ଷିତ ହୋଇଅଛି, ଏଥିରେ ସନ୍ଦେହ ନାହିଁ ।

ଆଲୋଚନାର ନିଷ୍କର୍ଷ ଏହି ଯେ ଶ୍ରୀମନ୍ନାରାୟଣ ପୁରୁଷୋତ୍ତମ ଶ୍ରୀଜଗନ୍ନାଥ ଦାରୁବ୍ରହ୍ମ ରୂପ ପରିଗ୍ରହ ପୂର୍ବରୁ ଚତୁର୍ଭୁଜ ଶିଳାବିଗ୍ରହ ନୀଳମାଧବ ରୂପେ ଉପାସିତ ହେଉଥିଲେ । ବିଶ୍ୱାବସୁ ଉପାସିତ ନୀଳମାଧବ 'ଝାଡ଼ନାରାୟଣ', ବ୍ରହ୍ମା ପ୍ରତିଷ୍ଠିତ 'ବ୍ରହ୍ମନାରାୟଣ' ସର୍ବୋପରି ଆଲୋୟାର ପ୍ରପୂଜିତ 'ଜନାର୍ଦ୍ଦନ ନାରାୟଣ' ଅଲାରନାଥ (୭) ପ୍ରତ୍ୟେକେ ହେଉଛନ୍ତି ଏକ ଓ ଅଭିନ୍ନ । ବିଶେଷତଃ ସେମାନେ ନିର୍ଗୁଣ ଶ୍ରୀଜଗନ୍ନାଥଙ୍କର ସାକାର ବିଗ୍ରହ ପ୍ରତୀକରେ ସମସ୍ତେ ମହାଜ୍ୟୋତି ଶ୍ରୀଜଗନ୍ନାଥଙ୍କର ଏକ ଏକ ସ୍ଫୁଲିଙ୍ଗ ମାତ୍ର । ଶ୍ରୀଜୀଉଙ୍କ ସଦୃଶ ଅଲାରନାଥଙ୍କ ଦୈନିକ ପୂଜାବିଧି ଓ ବାର୍ଷିକ ପର୍ବନୀତି ଯଥାସମ୍ଭବ ଅନୁଷ୍ଠିତ ହେଉଥିଲେ ମଧ୍ୟ ଅଣସର ସମୟରେ ଅଲାରନାଥଙ୍କ ମାହାତ୍ମ୍ୟ ସମଧିକ ବଳବତ୍ତର ମନେ ହୋଇଥାଏ । କାରଣ ଅଲାରନାଥ ହେଉଛନ୍ତି ଉପାସନା ଜଗତରେ ଏକମାତ୍ର ଠାକୁର, ଯିଏକି ଅଣସର ସମୟରେ ସ୍ୱୟଂ ଶ୍ରୀଜଗନ୍ନାଥ ରୂପେ ଭକ୍ତର

ସମକ୍ଷୀଭୂତ ହୋଇଥାନ୍ତି । ଅଶ୍ୱମେଧୀ ଇନ୍ଦ୍ରଦ୍ୟୁମ୍ନଙ୍କ ପ୍ରଗାଢ଼ ଭକ୍ତିରେ ପ୍ରସନ୍ନ ହୋଇ ଶ୍ରୀଜଗନ୍ନାଥ ନୀଳାଦ୍ରିରେ ବର୍ଷତମାମ ଆର୍ଯ୍ୟ ସମ୍ମତ ପୂଜା ଗ୍ରହଣ କରୁଥିଲେ ମଧ୍ୟ ତାଙ୍କର ମୂଳମୂର୍ତ୍ତିରେ ମମତା ବିସ୍ମରି ନପାରି ଶାବରୀୟ ସରଳ ସେବାପୂଜାରେ ଆକୃଷ୍ଟ ହୋଇ ଅଣସର ପନ୍ଦରଦିନ ପାଇଁ ଅଲାରନାଥ ମୂର୍ତ୍ତିରେ ଆତ୍ମପ୍ରକଟ ପୂର୍ବକ ଭକ୍ତମାନଙ୍କୁ ଦର୍ଶନ ଦେଇ ଆସୁଛନ୍ତି । ଏ ବିଧି ସମ୍ଭବତଃ ଶ୍ରୀଜଗନ୍ନାଥଙ୍କ ଦାରୁବ୍ରହ୍ମ ରୂପ ପରିଗ୍ରହ ସମୟରୁ ପ୍ରଚଳିତ ଥିବାର ଅନୁମାନ କରାଯାଉଥିଲେ ମଧ୍ୟ ଏକାଦଶ ଶତାବ୍ଦୀରେ ଶ୍ରୀସମ୍ପ୍ରଦାୟର ରାମାନୁଜାଚାର୍ଯ୍ୟ ଓ ଦ୍ୱାଦଶ ଶତାବ୍ଦୀରେ ବିଶିଷ୍ଟାଦ୍ୱୈତ ସମ୍ପ୍ରଦାୟର ପ୍ରଖ୍ୟାତ ଭକ୍ତ ଆଳବନ୍ଦାରାଚାର୍ଯ୍ୟ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ଅଣସର ଅବସ୍ଥିତି କାଳରେ ବ୍ରହ୍ମଗିରିଠାରେ ଅଲାରନାଥ ଦର୍ଶନ ପ୍ରଥା ଐତିହାସିକତା ବହନ କରିଅଛି । ବିଶେଷତଃ ଷୋଡ଼ଶ ଶତାବ୍ଦୀରେ ପ୍ରେମବାଦୀ ଚୈତନ୍ୟ ତାଙ୍କର ଅଷ୍ଟାଦଶବର୍ଷ ବ୍ୟାପୀ ଶ୍ରୀକ୍ଷେତ୍ର ରହଣି ସମୟରେ ପ୍ରତ୍ୟେକ ଅଣସର ଓ ମହାଅଣସର କାଳରେ ସେ ଅଲାରନାଥ ଦର୍ଶନକୁ ଜୀବନର ବ୍ରତ ରୂପେ ଗ୍ରହଣ କରିନେଇ ଗୌଡ଼ୀୟ ବୈଷ୍ଣବ ତଥା ଅନ୍ୟାନ୍ୟ ଭକ୍ତ-ଜନଙ୍କ ପାଇଁ ଏକ ଆଦର୍ଶ ସୃଷ୍ଟି କରିଥିଲେ । କ୍ରମଶଃ ଏହି ପରମ୍ପରା ସର୍ବସାଧାରଣ ପରମ୍ପରାରେ ପରିଣତ ହୋଇ ସମ୍ପ୍ରତି ହଜାର ହଜାର ଭକ୍ତ ଦର୍ଶନାର୍ଥୀ ଅଣସର ସମୟରେ ଅଲାରନାଥ ଦର୍ଶନ ନିମିତ୍ତ ବ୍ରହ୍ମଗିରିଠାରେ ସମବେତ ହେଉଛନ୍ତି ।

ଅଣସର ସମୟରେ ଅଙ୍ଗଲାଗି ସେବକ ଦଇତାପତି ସେବାୟତଗଣ ଶ୍ରୀଜୀଉଙ୍କ ଶ୍ରୀଅଙ୍ଗ ବ୍ୟବଚ୍ଛେଦ ତଥା ଆନୁଷଙ୍ଗିକ ଉପଚାର ପ୍ରୟୋଗ କାର୍ଯ୍ୟରେ ବ୍ୟସ୍ତ ଥିବାବେଳେ ଭକ୍ତ ସାଧାରଣ ଇତ୍ୟବସରରେ ବ୍ରହ୍ମଗିରିଠାରେ ଅଲାରନାଥ ଦର୍ଶନ ମାଧ୍ୟମରେ ଶ୍ରୀଜଗନ୍ନାଥ ଦର୍ଶନ ତୃଷା ପରିତୋଷ କରିଥାନ୍ତି । ପାୟସପ୍ରିୟ ଅଲାରନାଥ ଦର୍ଶନ ସହିତ ଶୁଦ୍ଧ ସୌରଭ ତଥା ଅମୃତସମ ସ୍ୱାଦଯୁକ୍ତ ପାୟସ ନିର୍ମାଲ୍ୟ ସେବନ ଲୋଭରେ ପ୍ରତିବର୍ଷ ଅଣସର ସମୟରେ ବ୍ରହ୍ମଗିରିଠାରେ ପ୍ରବଳ ଜନସମାଗମ ହୋଇଥାଏ । ଯଜ୍ଞନାଥ ଶ୍ରୀଜଗନ୍ନାଥଙ୍କ ବିକଳ୍ପ ଅଣସରନାଥ ଶ୍ରୀଅଲାରନାଥ ପୀଠରେ ଏହି ସମୟରେ ଜଗତକଲ୍ୟାଣ ନିମିତ୍ତ ବିଶ୍ୱଶାନ୍ତି ମହାଯଜ୍ଞ ହୋଇଥାଏ । ଏଠାରେ ଦିନସାରା କୀର୍ତ୍ତନ ସମାରୋହ ସହିତ ସନ୍ଧ୍ୟା ନଇଁଲେ ପାଲା, ଦାସକାଠିଆ ତଥା ଅନ୍ୟାନ୍ୟ ଲୋକନୃତ୍ୟ ପ୍ରଦର୍ଶନ ସମେତ ବହୁ ସ୍ୱନାମଧନ୍ୟ କଣ୍ଠଶିଳ୍ପୀଙ୍କ ଦ୍ୱାରା ଭଜନ ପରିବେଷଣ ସର୍ବୋପରି ଲବ୍ଧପ୍ରତିଷ୍ଠ ବିଦ୍ୱାନମାନଙ୍କ କର୍ତ୍ତୃକ ଆଧ୍ୟାତ୍ମିକ ପ୍ରବଚନ କାର୍ଯ୍ୟକ୍ରମ ଅନୁଷ୍ଠିତ ହୋଇ ପ୍ରତ୍ୟେକ ସନ୍ଧ୍ୟା ସାଂସ୍କୃତିକ ସୁରଭିରେ ସୁରଭିତ ହୋଇଉଠେ ।

**ଉପାଦାନ ଉତ୍ସ :**


୧. 'ଅନ୍ତର୍ହିତେ ପୁରା ବିଷ୍ଣୁର୍ମାଧବୋ ଭଗବାନ ସ୍ୱୟମ୍ ।
ସଂଗୁପ୍ତ ନୀଳଶୈଳସ୍ୟ ଚତୁଃକ୍ରୋଶେ ତୁ ପଶ୍ଚିମେ ॥'
କପିଳ ସଂହିତା, ୨୬ ଅଧ୍ୟାୟ

୨. ତସ୍ୟାଗ୍ରେ ମାଧବୋଭଂକ୍ତେ ନିଜ ରୂପ ପ୍ରଦର୍ଶୟନ୍ ।
ଫେଟୟିତ୍ୱା କପାଟଂ ସ ପ୍ରଯଯୌ ପିଚ୍ଛୁରନ୍ତିକମ୍ ॥'
କପିଳ ସଂହିତା, ୨୬ ଅଧ୍ୟାୟ

୩. ଅନନ୍ତାଚାର୍ଯ୍ୟ କୃତ 'ପ୍ରପନ୍ନାମୃତ' ।

୪. 'ପଦ୍ମଂ ସୁଦର୍ଶନଂ ଶଙ୍ଖଂ ଗଦାଧରେ ଜନାର୍ଦ୍ଦନଃ ।' (ସିଦ୍ଧାନ୍ତ ଚନ୍ଦ୍ରିକା)

୫.(କ) 'ଅରୂପଂ ବା ସ୍ୱରୂପଂ ଚ ନ ପଶ୍ୟେତ ପଞ୍ଚଦଶାହନି ।'
ଇନ୍ଦ୍ରନୀଳମଣି ପୁରାଣ-ଅନବସର ନିର୍ଣ୍ଣୟାଧ୍ୟାୟ

(ଖ) 'ତତଃ ପଞ୍ଚଦଶାହନି ସ୍ନାନାନ୍ତେ ମମସତ୍ତମ
ସ୍ୱରୂପଂ ବା ବିରୂପଂ ବା ନ ପଶ୍ୟତେ ପ୍ରତିମାମମ ।'
ସ୍କନ୍ଦପୁରାଣ, ଉତ୍କଳଖଣ୍ଡ

୬. ମାଦଳା ପାଞ୍ଜି - ଆର୍ତ୍ତବଲ୍ଲଭ ମହାନ୍ତି ସଂପାଦନା, ଓ.ସା.ଏ. ପ୍ରକାଶନ, ପୃ.୨୬ ।

(କ) ପ୍ରଥମ ପାଞ୍ଜି ମତେ 'ଏ ମହାରାଜାଙ୍କ ଅ୨ଙ୍କରେ ଅଲାରନାଥ ଦେଉଳ ତୋଳା ହୋଇଥିଲା ।'

(ଖ) ତୃତୀୟ ପାଞ୍ଜି ମତେ 'ଏ ରାଜା ଅଲାରନାଥ ଦେଉଳ କଲେ ।'

୭. କଲିକତା ଚୈତନ୍ୟ ଗବେଷଣା ପ୍ରତିଷ୍ଠାନଙ୍କ ମତ ଓ ସୁନ୍ଦରାନନ୍ଦ ବିଦ୍ୟାବିନୋଦଙ୍କ ଲିଖିତ 'ଶ୍ରୀକ୍ଷେତ୍ର' ଅନୁଯାୟୀ ଅଲାରନାଥ ହେଉଛନ୍ତି ଜନାର୍ଦ୍ଦନ ନାରାୟଣ ।


ନୂଆଗାଁ, ଇଡିପୁର
ଭୁବନେଶ୍ୱର-୨

# ଓଡ଼ିଶାରେ ଗହ୍ମାପର୍ବ ଓ ରାକ୍ଷୀପୂର୍ଣ୍ଣିମା

ଅଧ୍ୟାପିକା ସୁମିତା ଆଚାର୍ଯ୍ୟ

ଓଡ଼ିଶାକୁ ଦକ୍ଷିଣ-ପଶ୍ଚିମ ମୌସୁମୀ ବାୟୁର ଆଗମନ ଫଳରେ ଓଡ଼ିଶାବାସୀ ତତ୍ପର ହୋଇ ପଡ଼ନ୍ତି କୃଷିକାର୍ଯ୍ୟ କରିବା ପାଇଁ । ସାଧାରଣତଃ କର୍ମଜଞ୍ଜାଳ ପରିବେଶ ମଧ୍ୟରେ ଉତ୍କଳୀୟମାନେ ମହା-ଆଡ଼ମ୍ବର ଓ ମର୍ଯ୍ୟାଦାର ସହ ପାଳିଥାନ୍ତି ବହୁ ପର୍ବପର୍ବାଣି ଓ ଯାନିଯାତ୍ରା । ସେଥିପାଇଁ ଆମର ଏହି ଓଡ଼ିଶା ସଂସ୍କୃତି ସମୃଦ୍ଧ ରାଜ୍ୟ ଭାବେ ମହିମାମଣ୍ଡିତ । ଓଡ଼ିଶା ଏକ କୃଷି ପ୍ରଧାନ ରାଜ୍ୟ ଦୃଷ୍ଟିରୁ ଏଠାରେ କୃଷିଭିତ୍ତିକ ବା କୃଷି ସମ୍ବନ୍ଧୀୟ ପର୍ବପର୍ବାଣି ପାଳନ ହେବା ସ୍ୱାଭାବିକ । ଏତଦ୍‌ବ୍ୟତୀତ ଦେବଦେବୀଙ୍କ ବିଷୟରେ ଲୋକ ବିଶ୍ୱାସ ଓ ପରମ୍ପରାଗତ ଭାବେ ପର୍ବପର୍ବାଣି ମହାସମାରୋହରେ ଅନୁଷ୍ଠିତ ହୋଇଥାଏ ।

ଆମ ସଂସ୍କୃତିରେ ପ୍ରଚଳିତ ପର୍ବପର୍ବାଣି ଓ ଓଷାବ୍ରତଗୁଡ଼ିକ ମଧ୍ୟରୁ ଅଧିକାଂଶ ତିଥି ଓ ବାରକୁ କେନ୍ଦ୍ରକରି ହୋଇଥାଏ । ତିଥିମାନଙ୍କ ମଧ୍ୟରେ ଅମାବାସ୍ୟା, ପୂର୍ଣ୍ଣିମା, ଏକାଦଶୀ, ସଂକ୍ରାନ୍ତି ଓ ଚତୁର୍ଦ୍ଦଶୀ ପ୍ରଧାନ । ପ୍ରାୟତଃ ପ୍ରତ୍ୟେକ ଅମାବାସ୍ୟା ଗୋଟିଏ ଗୋଟିଏ ପର୍ବଦିନ । ଏହି ଅମାବାସ୍ୟା ମଧ୍ୟରେ ମହାଳୟା ଅମାବାସ୍ୟା, ଦୀପାବଳୀ ଅମାବାସ୍ୟା, ସପ୍ତପୁରୀ ଅମାବାସ୍ୟା, ଜାଗର ଅମାବାସ୍ୟା, ଚିତାଲାଗି ଅମାବାସ୍ୟା ପ୍ରଧାନ । ସେହିପରି ପୂର୍ଣ୍ଣିମା କଥା ବିଚାର କଲେ ପୌଷ ପୂର୍ଣ୍ଣିମା, କାର୍ତ୍ତିକ ପୂର୍ଣ୍ଣିମା, ବୈଶାଖ ପୂର୍ଣ୍ଣିମା, ଦେବସ୍ନାନ ପୂର୍ଣ୍ଣିମା, ଅଗିଲାଗି ପୂର୍ଣ୍ଣିମା, ଦୋଳ ପୂର୍ଣ୍ଣିମା, କୁମାର ପୂର୍ଣ୍ଣିମା, ଇନ୍ଦୁ ପୂର୍ଣ୍ଣିମା ଇତ୍ୟାଦି ଗୋଟିଏ ଗୋଟିଏ ପବିତ୍ର ଦିନ ହୋଇଥିବାବେଳେ ଠିକ୍ ସେହିପରି ଏକ ପବିତ୍ର ଦିବସ ହେଉଛି ଗହ୍ମା ପୂର୍ଣ୍ଣିମା ବା ରାକ୍ଷୀ ପୂର୍ଣ୍ଣିମା । ଉକ୍ତ ଦିବସଟି ତିନୋଟି କାରଣ ଯୋଗୁଁ ସନାତନ ଧର୍ମରେ ପବିତ୍ରତା ବହନ କରିପାରିଛି । ପ୍ରଥମତଃ, ଗହ୍ମା ପୂର୍ଣ୍ଣିମାରେ ପ୍ରତ୍ୟେକ ଭଗ୍ନୀ ତା'ର ଭାଇକୁ ଶ୍ରଦ୍ଧାର ସହିତ ରାକ୍ଷୀ ପିନ୍ଧାଇଥାଏ । ଦ୍ୱିତୀୟତଃ, ଭଗବାନ ଶ୍ରୀବିଷ୍ଣୁଙ୍କ ଅଷ୍ଟମ ଅବତାର ଯାହାକି ଶ୍ରୀବଳରାମଙ୍କ ଜନ୍ମ ଦିବସ ରୂପେ ପରିଗଣିତ ହୋଇଥାଏ । ସେ ମାତା ରୋହିଣିଙ୍କ ଗର୍ଭରୁ ଜନ୍ମଲାଭ କରିଥିଲେ ଓ ତାଙ୍କୁ କୃଷିର ଦେବତା ରୂପେ ଗ୍ରହଣ କରାଯାଏ । ଅନ୍ତିମ କାରଣଟି ହେଉଛି ଶ୍ରାବଣ ମାସର ଶୁକ୍ଳପକ୍ଷ ଦଶମୀଠାରୁ ଭାଦ୍ର ମାସର କୃଷ୍ଣପକ୍ଷ ପ୍ରତିପଦା ପର୍ଯ୍ୟନ୍ତ ଶ୍ରୀଜଗନ୍ନାଥଙ୍କ ପବିତ୍ର ଝୁଲଣଯାତ୍ରା ଅନୁଷ୍ଠିତ ହୁଏ । କେବଳ ଶ୍ରୀମନ୍ଦିର ବା ଶ୍ରୀକ୍ଷେତ୍ରରେ ନୁହେଁ, ସମଗ୍ର ଉତ୍କଳରେ ଏହା ପ୍ରଚଳିତ । ତେଣୁ ରାକ୍ଷୀ ପୂର୍ଣ୍ଣିମା ଏହି ସମୟ ସୀମା ମଧ୍ୟରେ ପଡୁଥିବାରୁ ସମ୍ଭବତଃ ଲୋକାଚାରରେ ଶ୍ରାବଣ ମାସର ପୂର୍ଣ୍ଣିମାକୁ ମଧ୍ୟ ଝୁଲଣ ପୂର୍ଣ୍ଣିମା କହିବା ସମୀଚୀନ ମନେହୁଏ ।

ସନାତନ ଧର୍ମରେ ରକ୍ଷାବନ୍ଧନ ଦିନ ଗୋପୂଜା ପ୍ରଚଳନ ଅଛି । ଏହି ଦିନ ପ୍ରତ୍ୟେକଙ୍କ ଘରେ ଘରେ ଗାଈ, ବଳଦ ପ୍ରଭୃତି ପୂଜା ଅର୍ଚ୍ଚନା ହେବା ବିଧି ନିହିତ । ସମ୍ଭବତଃ ଏହି କାରଣରୁ ଶ୍ରାବଣ ପୂର୍ଣ୍ଣିମାକୁ ଗହ୍ମା ପୂର୍ଣ୍ଣିମା କହିବା ଅସଙ୍ଗତ ନୁହେଁ ବରଂ ଅଧିକ ଯୁକ୍ତିଯୁକ୍ତ । ଗୋମାତାଙ୍କୁ କାହିଁକି ଗୋ-ଅଷ୍ଟମୀ ବା ଶୁକ୍ଳ ଅଷ୍ଟମୀ, ଫାଲ୍‌ଗୁନ ପୂର୍ଣ୍ଣିମା ବା ଦୋଳ ପୂର୍ଣ୍ଣିମା ବ୍ୟତୀତ ଶ୍ରାବଣ ପୂର୍ଣ୍ଣିମା ବା ବଳଦେବ ମହାପ୍ରଭୁଙ୍କ ଜନ୍ମ ତିଥି ଦିନ ଗୋ-ପୂଜା ଓ ଉପାସନାର ବିଧି ପ୍ରଚଳିତ । ଏହି ଦିନ ଗାଈଗୋରୁମାନଙ୍କୁ ପୁଷ୍ପମାଳରେ ସଜ୍ଜିତ କରାଇ ତା'ର ମସ୍ତକରେ ସିନ୍ଦୂର ଚନ୍ଦନାଦି ଲଗାଇ ବିଭିନ୍ନ ଭୋଜ୍ୟ ପଦାର୍ଥମାନ ଖାଇବାକୁ ଦିଆଯାଏ । ଏହା ବିଶେଷତଃ ଗୋପାଳ ପରିବାରରେ ବିଧିମତ ଭାବେ ପାଳନ କରାଯାଏ । ବଳଦେବ ମଧ୍ୟ ଗୋପାଳ ଜାତିରେ ଜନ୍ମିତ ହୋଇଥିଲେ । ତାଙ୍କୁ ଉତ୍କଳୀୟମାନେ କୃଷିର ଦେବତା ଭାବେ ଗ୍ରହଣ କରିଥାନ୍ତି ଏବଂ ତାଙ୍କର ଆୟୁଧ ମଧ୍ୟ ଲଙ୍ଗଳ ଓ ମୂଷଳ ରୂପେ ଦୁଇ ହସ୍ତରେ ଶୋଭା ପାଇଥାଏ ।

ଶ୍ରାବଣ ପୂର୍ଣ୍ଣିମା ଆମ ଜନସମାଜରେ ରାକ୍ଷୀ ପୂର୍ଣ୍ଣିମା ବା ରକ୍ଷାବନ୍ଧନରେ ପବିତ୍ରମୟ ଦିବସ ଭାବେ ଅଧିକ ପରିଚିତ । ଆମ ସଂସ୍କୃତି ସମୃଦ୍ଧ ସମାଜ ସହିତ ରାକ୍ଷୀ ବନ୍ଧନ ପର୍ବ ଅଙ୍ଗାଙ୍ଗୀଭାବେ ଜଡ଼ିତ । ସାଧାରଣତଃ ରକ୍ଷାବନ୍ଧନ କହିଲେ ଭଉଣୀ ନିଜର ସୁରକ୍ଷା, ସୁଖଦୁଃଖ କାମନା ପୂର୍ବକ ଆଗାମୀ ସମୟ ପାଇଁ ରକ୍ଷାସୂତ୍ର ବାନ୍ଧିବା ଅର୍ଥରେ ସମୀଚୀନ । ଭଉଣୀ ଯଦି ଭାଇଠାରୁ ବଡ଼ ହୋଇଥାଏ, ତାହାହେଲେ ସାନଭାଇକୁ ରାକ୍ଷୀ ବାନ୍ଧି ଦେବା ପାଇଁ ତା'ର ଅନ୍ତରରେ ସ୍ନେହ, ଶ୍ରଦ୍ଧା, ଆଶୀର୍ବାଦ, ମମତା ଓ ବାତ୍ସଲ୍ୟ ପ୍ରେମ ଏମିତି ବି ନିଜର ଆତ୍ମାକୁ ଉତ୍ସର୍ଗ କରିଥାଏ । ଯଦି ଭଉଣୀଠାରୁ ଭାଇ ବଡ଼

ହୋଇଥାଏ ସେଠାରେ ଭାଇ ପାଇଁ ଭଗ୍ନୀର ଭକ୍ତି, ଭଦ୍ରତା ଓ ପୂଜ୍ୟ ଭାବ ଜାଗ୍ରତ ହୋଇଥାଏ । ଏହା ରକ୍ଷାବନ୍ଧନ ବେଳେ ସ୍ପଷ୍ଟ ବାରି ହୋଇପଡ଼େ । ପ୍ରକୃତରେ ଏହି ରକ୍ଷାବନ୍ଧନ ଆଜୀବନ ପର୍ଯ୍ୟନ୍ତ ଭାଇ ଓ ଭଉଣୀ ମଧ୍ୟରେ ରକ୍ଷାକବଚ ସଦୃଶ ନବଚେତନା, ନବପ୍ରେରଣା ଓ ନବଜୀବନ ସୃଷ୍ଟି କରିଥାଏ । ଭାଇ ଓ ଭଉଣୀ ମଧ୍ୟରେ ରକ୍ଷାବନ୍ଧନ ସୁଦୃଢ଼ ଭିତ୍ତିଭୂମି ପ୍ରତିଷ୍ଠା କରିଥାଏ, କହିଲେ ଅସଙ୍ଗତ ହେବ ନାହିଁ । ରାକ୍ଷୀ ପୂର୍ଣ୍ଣିମା ଆମ ସାଂସ୍କୃତିକ ପରମ୍ପରା ଓ ଐତିହ୍ୟକୁ ଗୌରବାମଣ୍ଡିତ କରିପାରିଛି ।

ପୂର୍ବକାଳରେ ଗ୍ରାମାଞ୍ଚଳମାନଙ୍କରେ ଏହି ଗହ୍ମାପର୍ବରେ ଗହ୍ମାଣ୍ଡିଆ ପ୍ରତିଯୋଗିତାପୂର୍ବକ ସୈନ୍ୟବାହିନୀରେ ଯୋଗ୍ୟ ବିବେଚିତ ବ୍ୟକ୍ତି ଯୋଗଦାନ କରୁଥିଲେ । ଗ୍ରାମ ମଧ୍ୟରେ ଯେଉଁ ବ୍ୟକ୍ତି ବିଶେଷରେ ସବୁଠାରୁ ବଡ଼ ଗହ୍ମାଣ୍ଡିଆ ଥାଏ ତାଙ୍କରି ପ୍ରାଙ୍ଗଣ ବା ସେହି ସ୍ଥାନରେ ଏହି ପ୍ରତିଯୋଗିତା ଅନୁଷ୍ଠିତ ହୁଏ । ଯେଉଁ ସାହସୀ ପୁରୁଷ ଉକ୍ତ ଗହ୍ମାଣ୍ଡିଆ ଡେଇଁ ଅପରପାର୍ଶ୍ୱକୁ ଯାଇପାରେ ସେହି ପୁରୁଷ ହିଁ ପରବର୍ତ୍ତୀ ସମୟରେ ସୈନ୍ୟବାହିନୀରେ ଯୋଗ ଦେଇଥାଏ ନିଜ ଦେଶର ଜାତିର ସମ୍ମାନ ଟେକ ରଖିବା ପାଇଁ । ସେଥିପାଇଁ ବୋଧହୁଏ ରକ୍ଷା ପୂର୍ଣ୍ଣିମାକୁ ଗହ୍ମାପର୍ବ ନାମରେ ନାମାଙ୍କିତ କରାଯାଇଛି ।

ଏହି ସମୟରେ ଓଡ଼ିଶାର ବୈଷ୍ଣବ ପୀଠମାନଙ୍କରେ ଝୁଲଣଯାତ୍ରା ଆରମ୍ଭ ହୋଇଥାଏ । ପ୍ରାୟତଃ ଶ୍ରୀଚୈତନ୍ୟ ମହାପ୍ରଭୁ ଓଡ଼ିଶାକୁ ୧୫୦୯/୧୫୧୦ରେ ଆଗମନ କରିବା ଫଳରେ ଶ୍ରୀମନ୍ଦିରରେ କୃଷ୍ଣଲୀଳା ପୂର୍ବାପେକ୍ଷା ଅଧିକ ଗୁରୁତ୍ୱପୂର୍ଣ୍ଣ ଭାବରେ ପାଳିତ ହେବାକୁ ଲାଗିଲା ଏବଂ ଶ୍ରୀମନ୍ଦିରରେ ମହାସମାରୋହରେ ପାଳିତ ହେଲା ମହାପ୍ରଭୁଙ୍କ ଝୁଲଣଯାତ୍ରା ଓ ଝୁଲଣ ଲାଗି ବେଶ କିନ୍ତୁ ଏହି ଯାତ୍ରାର ପ୍ରଚାର ଓ ପ୍ରସାରର ସମୟ ଐତିହାସିକ ଦୃଷ୍ଟିରୁ ଗଜପତି ବୀର କିଶୋର (୧ମ) ଓ ଦ୍ୱିତୀୟ ଦିବ୍ୟସିଂହ ଦେବଙ୍କ ଶାସନ କାଳରେ ହୋଇଥିବାରୁ ଅଧିକ ଯୁକ୍ତିସଂଗତ ।

ଶ୍ରୀମନ୍ଦିରରେ ପ୍ରଥମେ ଏହି ଝୁଲଣ କୁଞ୍ଜ ଦେବସଭା ମଣ୍ଡପ ଉପରେ ଅନୁଷ୍ଠିତ ହେଉଥିଲା । ଶ୍ରାବଣ ମାସରେ ଅଧିକ ବୃଷ୍ଟିପାତ ହେଉଥିବାରୁ ଏହା ସ୍ଥାନାନ୍ତରିତ ହୋଇ ବର୍ତ୍ତମାନ ମୁକ୍ତିମଣ୍ଡପରେ ଝୁଲଣ କୁଞ୍ଜରେ ମଦନମୋହନ, ଶ୍ରୀଦେବୀ ଓ ଭୂଦେବୀ ଶୋଭାବର୍ଦ୍ଧନ ପୂର୍ବକ ଝୁଲଣ ଯାତ୍ରା ଅନୁଷ୍ଠିତ ହେଉଛି । ଯେଉଁ ୧୫ ଦିନ ଝୁଲଣ ଯାତ୍ରା ଅନୁଷ୍ଠିତ ହୁଏ ସେହି ସମୟରେ ଶ୍ରୀଜୀଉମାନେ ପ୍ରତିଦିନ ବିଭିନ୍ନ ରଙ୍ଗ ବସ୍ତ୍ର ପରିଧାନ କରିଥାନ୍ତି । ଏସବୁ ବସ୍ତ୍ରବର୍ଣ୍ଣ ଉପରେ ବାର ଅଧିପତିମାନଙ୍କ ପ୍ରଭାବ ରହିଥିବାରୁ ଏ ବିଧି ଲଙ୍ଘନ କରାଯାଏ ନାହିଁ । ଶ୍ରୀମନ୍ଦିର ବ୍ୟତୀତ ଶ୍ରୀକ୍ଷେତ୍ରର ଅନେକ ମଠ ଓଡ଼ିଶାର ପୁରପଲ୍ଲୀ ଅଞ୍ଚଳରେ ଝୁଲଣ କୁଞ୍ଜରେ ରାଧାକୃଷ୍ଣଙ୍କ ଯୁଗଳବିଗ୍ରହ ସ୍ଥାପନ ପୂର୍ବକ ଝୁଲଣଯାତ୍ରା ଅନୁଷ୍ଠିତ ହୋଇଥାଏ । ଏହାକୁ କୁଞ୍ଜଦୋଳି କୁହାଯାଏ ଏବଂ ଭକ୍ତମାନେ ଭଗବାନ ଶ୍ରୀକୃଷ୍ଣ ଓ ପ୍ରେମମୟୀ ଶ୍ରୀରାଧାଙ୍କୁ ଝୁଲାଇବା ବେଳେ କୁଞ୍ଜ ଦୋଳି ଗୀତ ଗାନ କରିଥାନ୍ତି ।

**ସହାୟକ ଗ୍ରନ୍ଥସୂଚୀ :**


୧. ବିନୋଦିନୀ ସାହୁ : ଉତ୍କଳରେ ଗହ୍ମାପର୍ବ ।

୨. ସୁଶାନ୍ତ କୁମାର ସ୍ୱାଇଁ : ଦୈନିକ ପର୍ଯ୍ୟବେକ୍ଷକ, ଅଗଷ୍ଟ ୨୨, ୨୦୦୨ ଏବଂ ରାକ୍ଷୀ ପୂର୍ଣ୍ଣିମା ଓ ଝୁଲଣ ଯାତ୍ରା, ଦୈନିକ ପର୍ଯ୍ୟବେକ୍ଷକ ।

୩. ଶ୍ରୀମତୀ ପ୍ରମିଳା ମିଶ୍ର : ଗହ୍ମା ପୂର୍ଣ୍ଣିମା, ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା, ଉତ୍କଳ ପାଠକ ସଂସଦ, ତୃତୀୟ ସଂସ୍କରଣ, ୧୯୯୪ ।

୪. ସତ୍ୟ ନାରାୟଣ ମହାପାତ୍ର : ଝୁଲଣ ଯାତ୍ରା, ଓଡ଼ିଶାର ପର୍ବପର୍ବାଣି ଓଷାବ୍ରତ ଯାନିଯାତ୍ରା - ଉତ୍କଳ ପାଠକ ସଂସଦ ।

୫. Festival of Orissa - Orissa Sahitya Academy, First Edition, December-1982.



ରମାଦେବୀ ମହିଳା ମହାବିଦ୍ୟାଳୟ
କଟକ-୨


■■■■■




# ସମ୍ବାଦ ପରିକ୍ରମା



## ସେପ୍ଟେମ୍ବର ମାସ ନିମନ୍ତେ ସବୁ ଜିଲ୍ଲାକୁ ୧,୧୪,୩୭୬ ମେଟ୍ରିକ୍ ଟନ୍ ବି.ପି.ଏଲ୍. ଚାଉଳ ଯୋଗାଣ

ସାଧାରଣ ବଣ୍ଟନ ବ୍ୟବସ୍ଥା ମାଧ୍ୟମରେ ଚଳିତ ସେପ୍ଟେମ୍ବର ମାସ ପାଇଁ କେନ୍ଦ୍ର ସରକାରଙ୍କ ପକ୍ଷରୁ ରାଜ୍ୟକୁ ମିଳିଥିବା ୧,୨୩,୬୯୮ ମେଟ୍ରିକ୍ ଟନ୍ ବି.ପି.ଏଲ୍. ଚାଉଳ ମଧ୍ୟରୁ ରାଜ୍ୟ ସରକାର ଉକ୍ତ ମାସରେ ୧,୧୪,୩୭୬ ମେଟ୍ରିକ୍ ଟନ୍ ଚାଉଳ ସବୁ ଜିଲ୍ଲାକୁ ଯୋଗାଇ ଦେଇଛନ୍ତି । ତନ୍ମଧ୍ୟରେ ୩୦ଟି ଜିଲ୍ଲାର ଗ୍ରାମ ଓ ସହରାଞ୍ଚଳରେ ଦାରିଦ୍ର୍ୟ ସୀମାରେଖା ତଳେ ଥିବା ପରିବାରଙ୍କ ନିମନ୍ତେ ଉଦ୍ଦିଷ୍ଟ ୧,୦୨,୯୦୭ ମେଟ୍ରିକ୍ ଟନ୍ ଏବଂ କେ.ବି.କେ. ଜିଲ୍ଲାଗୁଡ଼ିକର ଗ୍ରାମ ଓ ସହରାଞ୍ଚଳରେ ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ପରିବାରଙ୍କ ନିମନ୍ତେ ଉଦ୍ଦିଷ୍ଟ ୧୧,୪୮୯ ମେଟ୍ରିକ୍ ଟନ୍ ବି.ପି.ଏଲ୍. ଚାଉଳ ଅନ୍ତର୍ଭୁକ୍ତ । ଏହା ଫଳରେ ୩୦ଟି ଜିଲ୍ଲାର ୪୧,୧୬,୨୬୫ଟି ବି.ପି.ଏଲ୍. କାର୍ଡ଼ଧାରୀ ପରିବାର ଏବଂ କେ.ବି.କେ. ଜିଲ୍ଲାଗୁଡ଼ିକର ୪,୫୮,୭୭୧ଟି ଏ.ପି.ଏଲ୍. କାର୍ଡ଼ଧାରୀ ପରିବାର ଉପକୃତ ହୋଇପାରିବେ ବୋଲି ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ସୂତ୍ରରୁ ଜଣାଯାଇଛି । ଏଠାରେ ସୂଚାଇ ଦିଆଯାଇ ପାରେ ଯେ ରାଜ୍ୟର ଆଇ.ଟି.ଡ଼ି.ପି. / ଡି.ପି.ଏ.ପି. ବ୍ଲକ୍‌ର ପ୍ରତ୍ୟେକ ବି.ପି.ଏଲ୍. ପରିବାର କାର୍ଡ଼ ମାଧ୍ୟମରେ କିଲୋଗ୍ରାମ ପିଛା ୪ ଟଙ୍କା ୭୫ ପଇସା ଦରରେ ୧୬ କି.ଗ୍ରା. ଏବଂ କିଲୋଗ୍ରାମ ପିଛା ୬ ଟଙ୍କା ୩୦ ପଇସା ଦରରେ ୯ କି.ଗ୍ରା., ଏପରି ମୋଟ ୨୫ କିଲୋଗ୍ରାମ ବି.ପି.ଏଲ୍. ଚାଉଳ ପାଇବେ । ସେହିପରି କେ.ବି.କେ. ଜିଲ୍ଲା ଅନ୍ତର୍ଗତ ପ୍ରତ୍ୟେକ ଏ.ପି.ଏଲ୍. ପରିବାର କିଲୋଗ୍ରାମ ପିଛା ୬ ଟଙ୍କା ୩୦ ପଇସା ଦରରେ ୨୫ କି.ଗ୍ରା. ବି.ପି.ଏଲ୍. ଚାଉଳ ପାଇ ପାରିବେ ।

ଚଳିତ ସେପ୍ଟେମ୍ବର ମାସରେ ଅନୁଗୁଳ ଜିଲ୍ଲାର ୧,୧୩,୯୦୧ଟି ବି.ପି.ଏଲ୍. କାର୍ଡ଼ଧାରୀ ପରିବାରଙ୍କ ପାଇଁ ୨୮୪୮ ମେଟ୍ରିକ୍ ଟନ୍, ବାଲେଶ୍ୱର ଜିଲ୍ଲାର ୧,୮୯,୯୫୧ଟି ପରିବାର ପାଇଁ ୪୭୨୪ ମେଟ୍ରିକ୍ ଟନ୍, ବରଗଡ଼ ଜିଲ୍ଲାର ୧,୬୧,୬୫୩ଟି ପରିବାର ପାଇଁ ୪୦୪୧ ମେଟ୍ରିକ୍ ଟନ୍, ଭଦ୍ରକ ଜିଲ୍ଲାର ୧,୧୮,୬୬୪ଟି ପରିବାର ପାଇଁ ୨୯୬୭ ମେଟ୍ରିକ୍ ଟନ୍, ବଲାଙ୍ଗୀର ଜିଲ୍ଲାର ୧,୮୨,୯୪୬ଟି ପରିବାର ପାଇଁ ୪୫୭୪ ମେଟ୍ରିକ୍ ଟନ୍, ବୌଦ୍ଧ ଜିଲ୍ଲାର ୬୧,୨୩୬ଟି ପରିବାର ପାଇଁ ୧୫୩୧ ମେଟ୍ରିକ୍ ଟନ୍, କଟକ ଜିଲ୍ଲାର ୧,୬୯,୮୪୩ଟି ପରିବାର ପାଇଁ ୪୨୪୬ ମେଟ୍ରିକ୍ ଟନ୍, ଦେଓଗଡ଼ ଜିଲ୍ଲାର ୪୦,୪୩୭ଟି ପରିବାର ପାଇଁ ୧୦୧୧ ମେଟ୍ରିକ୍ ଟନ୍, ଢେଙ୍କାନାଳ ଜିଲ୍ଲାର ୧,୧୭,୮୫୭ଟି ପରିବାର ପାଇଁ ୨୯୪୬ ମେଟ୍ରିକ୍ ଟନ୍, ଗଂଜାମ ଜିଲ୍ଲାର ୨,୮୯,୯୧୯ଟି ପରିବାର ପାଇଁ ୭୨୪୮ ମେଟ୍ରିକ୍ ଟନ୍, ଗଜପତି ଜିଲ୍ଲାର ୬୭,୧୩୨ଟି ପରିବାର ପାଇଁ ୧୬୭୮ ମେଟ୍ରିକ୍ ଟନ୍, ଜଗତସିଂହପୁର ଜିଲ୍ଲାର ୮୭,୩୪୦ଟି ପରିବାର ପାଇଁ ୨୧୮୩ ମେଟ୍ରିକ୍ ଟନ୍, ଯାଜପୁର ଜିଲ୍ଲାର ୧,୫୬,୮୬୭ଟି ପରିବାର ପାଇଁ ୩୯୨୨ ମେଟ୍ରିକ୍ ଟନ୍, ଝାରସୁଗୁଡ଼ା ଜିଲ୍ଲାର ୪୦,୯୩୯ଟି ପରିବାର ପାଇଁ ୧୦୨୩ ମେଟ୍ରିକ୍ ଟନ୍, କଳାହାଣ୍ଡି ଜିଲ୍ଲାର ୧,୭୫,୦୨୫ଟି ପରିବାର ପାଇଁ ୪୩୭୬ ମେଟ୍ରିକ୍ ଟନ୍, କନ୍ଧମାଳ ଜିଲ୍ଲାର ୧,୦୫,୫୪୫ଟି ପରିବାର ପାଇଁ ୨୬୩୯ ମେଟ୍ରିକ୍ ଟନ୍, କେନ୍ଦ୍ରାପଡ଼ା ଜିଲ୍ଲାର ୭୮,୦୦୦ଟି ପରିବାର ପାଇଁ ୧୯୫୦ ମେଟ୍ରିକ୍ ଟନ୍, କେନ୍ଦୁଝର ଜିଲ୍ଲାର ୨,୧୪,୨୦୦ଟି ପରିବାର ପାଇଁ ୫୩୫୫ ମେଟ୍ରିକ୍ ଟନ୍, ଖୋର୍ଦ୍ଧା ଜିଲ୍ଲାର ୧,୩୭,୪୦୪ଟି ପରିବାର ପାଇଁ ୩୪୩୫ ମେଟ୍ରିକ୍ ଟନ୍, କୋରାପୁଟ ଜିଲ୍ଲାର ୨,୧୧,୧୨୯ଟି ପରିବାର ପାଇଁ ୫୨୭୮ ମେଟ୍ରିକ ଟନ୍, ମାଲକାନଗିରି ଜିଲ୍ଲାର ୮୪,୩୬୭ଟି ପରିବାର ପାଇଁ ୨୧୦୯ ମେଟ୍ରିକ୍ ଟନ୍, ମୟୂରଭଂଜ ଜିଲ୍ଲାର ୩,୩୪,୫୨୬ଟି ପରିବାର ପାଇଁ ୮୩୬୩ ମେଟ୍ରିକ୍ ଟନ୍, ନବରଂଗପୁର ଜିଲ୍ଲାର ୧,୩୪,୪୬୩ଟି ପରିବାର ପାଇଁ ୩୩୬୨ ମେଟ୍ରିକ୍ ଟନ୍, ନୟାଗଡ଼ ଜିଲ୍ଲାର ୧,୧୫,୧୪୦ଟି ପରିବାର ପାଇଁ ୨୮୭୮ ମେଟ୍ରିକ୍ ଟନ୍, ନୂଆପଡ଼ା ଜିଲ୍ଲାର ୯୩,୧୨୬ଟି ପରିବାର ପାଇଁ ୨୩୨୮ ମେଟ୍ରିକ୍ ଟନ୍, ପୁରୀ ଜିଲ୍ଲାର ୧,୪୩,୬୯୧ଟି ପରିବାର ପାଇଁ ୩୫୯୨ ମେଟ୍ରିକ୍ ଟନ୍, ରାୟଗଡ଼ା ଜିଲ୍ଲାର ୧,୨୩,୨୬୫ଟି ପରିବାର ପାଇଁ ୩୦୮୨ ମେଟ୍ରିକ୍ ଟନ୍,

ସମ୍ବଲପୁର ଜିଲ୍ଲାର ୧,୦୩,୬୨୭ଟି ପରିବାର ପାଇଁ ୨୫୯୧ ମେଟ୍ରିକ୍ ଟନ୍, ସୋନପୁର ଜିଲ୍ଲାର ୭୨,୦୦୨ଟି ପରିବାର ପାଇଁ ୧୮୦୦ ମେଟ୍ରିକ୍ ଟନ୍ ଏବଂ ସୁନ୍ଦରଗଡ଼ ଜିଲ୍ଲାର ୧,୯୩,୦୭୧ଟି ବି.ପି.ଏଲ୍.କାର୍ଡ଼ଧାରୀ ପରିବାର ପାଇଁ ୪୮୨୭ ମେଟ୍ରିକ୍ ଟନ୍ ବି.ପି.ଏଲ୍. ଚାଉଳ ଯୋଗାଇ ଦିଆଯାଇଛି ।

ସେହିପରି କେ.ବି.କେ. ଜିଲ୍ଲା ଅନ୍ତର୍ଗତ ବଲାଙ୍ଗୀର ଜିଲ୍ଲାର ୧,୫୮,୧୪୪ଟି ଏ.ପି.ଏଲ୍. ପରିବାରଙ୍କ ନିମନ୍ତେ ୩୯୫୪ ମେଟ୍ରିକ୍ ଟନ୍, କଳାହାଣ୍ଡି ଜିଲ୍ଲାର ୮୯,୨୪୦ଟି ପରିବାର ପାଇଁ ୨୨୩୧ ମେଟ୍ରିକ୍ ଟନ୍, କୋରାପୁଟ ଜିଲ୍ଲାର ୬୦,୬୭୮ଟି ପରିବାର ପାଇଁ ୧୫୧୭ ମେଟ୍ରିକ୍ ଟନ୍, ମାଲକାନଗିରି ଜିଲ୍ଲାର ୩୦,୨୦୭ଟି ପରିବାର ପାଇଁ ୭୫୫ ମେଟ୍ରିକ୍ ଟନ୍, ନବରଂଗପୁର ଜିଲ୍ଲାର ୨୮,୯୪୨ଟି ପରିବାର ପାଇଁ ୭୨୩ ମେଟ୍ରିକ୍ ଟନ୍, ନୂଆପଡ଼ା ଜିଲ୍ଲାର ୧୩,୧୯୭ଟି ପରିବାର ପାଇଁ ୩୩୦ ମେଟ୍ରିକ୍ ଟନ୍, ରାୟଗଡ଼ା ଜିଲ୍ଲାର ୫୦,୪୭୮ଟି ପରିବାର ପାଇଁ ୧୨୬୨ ମେଟ୍ରିକ୍ ଟନ୍ ଏବଂ ସୋନପୁର ଜିଲ୍ଲାର ୨୭,୮୮୫ଟି ଏ.ପି.ଏଲ୍. ପରିବାର ପାଇଁ ୬୯୭ ମେଟ୍ରିକ୍ ଟନ୍ ବି.ପି.ଏଲ୍. ଚାଉଳ ଯୋଗାଇ ଦିଆଯାଇଛି ବୋଲି ଉକ୍ତ ସୂତ୍ରରୁ ପ୍ରକାଶ ।

## ସେପ୍ଟେମ୍ବର ମାସରେ ଏ.ପି.ଏଲ୍. ପରିବାରଙ୍କ ମଧ୍ୟରେ ଆବଣ୍ଟନ ନିମନ୍ତେ ୩୦ଟି ଜିଲ୍ଲାକୁ ୧୬,୧୫୮ ମେଟ୍ରିକ୍ ଟନ୍ ଗହମ ଯୋଗାଣ

ଚଳିତ ସେପ୍ଟେମ୍ବର ମାସରେ ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ପରିବାରଙ୍କ ମଧ୍ୟରେ ଆବଣ୍ଟନ ନିମନ୍ତେ ରାଜ୍ୟ ସରକାର ସମସ୍ତ ୩୦ଟି ଜିଲ୍ଲାକୁ ସର୍ବମୋଟ ୧୬,୧୫୮ ମେଟ୍ରିକ୍ ଟନ୍ ଗହମ ଯୋଗାଇ ଦେଇଛନ୍ତି । ଏହାଦ୍ୱାରା ଦାରିଦ୍ର୍ୟ ସୀମାରେଖା ଉପରେ ଥିବା ପ୍ରତ୍ୟେକ ପରିବାର ଉକ୍ତ ମାସରେ କାର୍ଡ଼ ପିଛା ୯.୪୫୫ କିଲୋଗ୍ରାମ ଗହମ ପାଇ ପାରିବେ ବୋଲି ଖାଦ୍ୟ ଯୋଗାଣ ଓ ଖାଉଟି କଲ୍ୟାଣ ବିଭାଗ ସୂତ୍ରରୁ ଜଣାଯାଇଛି । ୧୬,୧୫୮ ମେଟ୍ରିକ୍ ଯନ୍ ଗହମ ମଧ୍ୟରୁ କେଉଁ ଜିଲ୍ଲାକୁ କେତେ ପରିମାଣର ଗହମ ଯୋଗାଇ ଦିଆଯାଇଛି, ତାହା ନିମ୍ନରେ ପ୍ରଦତ୍ତ ହେଲା -

ଅନୁଗୁଳ- ୩୪୫ ମେଟ୍ରିକ୍ ଟନ୍, ବାଲେଶ୍ୱର- ୬୫୦ ମେଟ୍ରିକ୍ ଟନ୍, ବରଗଡ଼- ୬୦ ମେଟ୍ରିକ୍ ଟନ୍, ଭଦ୍ରକ- ୬୩୦ ମେଟ୍ରିକ୍ ଟନ୍, ବଲାଙ୍ଗୀର- ୧୦୦ ମେଟ୍ରିକ୍ ଟନ୍, ବୌଦ୍ଧ- ୧୦ ମେଟ୍ରିକ୍ ଟନ୍, କଟକ- ୨୫୦୦ ମେଟ୍ରିକ୍ ଟନ୍, ଦେଓଗଡ଼- ୧୫ ମେଟ୍ରିକ୍ ଟନ୍, ଢେଙ୍କାନାଳ- ୩୫୩ ମେଟ୍ରିକ୍ ଟନ୍, ଗଜପତି- ୯୦ ମେଟ୍ରିକ୍ ଟନ୍, ଗଂଜାମ- ୧୩୩୦ ମେଟ୍ରିକ୍ ଟନ୍, ଜଗତସିଂହପୁର- ୮୦୦ ମେଟ୍ରିକ୍ ଟନ୍, ଯାଜପୁର- ୧୧୦୦ ମେଟ୍ରିକ୍ ଟନ୍, ଝାରସୁଗୁଡ଼ା- ୪୩୩ ମେଟ୍ରିକ୍ ଟନ୍, କଳାହାଣ୍ଡି- ୫୦ ମେଟ୍ରିକ୍ ଟନ୍, କନ୍ଧମାଳ- ୩୦ ମେଟ୍ରିକ୍ ଟନ୍, କେନ୍ଦ୍ରାପଡ଼ା- ୧୫୦୦ ମେଟ୍ରିକ୍ ଟନ୍, କେନ୍ଦୁଝର ୪୦୦ ମେଟ୍ରିକ୍ ଟନ୍, ଖୋର୍ଦ୍ଧା- ୧୫୨୦ ମେଟ୍ରିକ୍ ଟନ୍, କୋରାପୁଟ- ୨୦୦ ମେଟ୍ରିକ୍ ଟନ୍, ମାଲକାନଗିରି- ୫୦ ମେଟ୍ରିକ୍ ଟନ୍, ମୟୂରଭଂଜ- ୩୯୦ ମେଟ୍ରିକ୍ ଟନ୍, ନବରଂଗପୁର- ୨୫ ମେଟ୍ରିକ୍ ଟନ୍, ନୟାଗଡ଼- ୭୦୦ ମେଟ୍ରିକ୍ ଟନ୍, ନୂଆପଡ଼ା- ୨୫ ମେଟ୍ରିକ୍ ଟନ୍, ପୁରୀ- ୧୨୦୦ ମେଟ୍ରିକ୍ ଟନ୍, ରାୟଗଡ଼ା- ୨୫ ମେଟ୍ରିକ୍ ଟନ୍, ସମ୍ବଲପୁର- ୬୨୫ ମେଟ୍ରିକ୍ ଟନ୍, ସୋନପୁର- ୫୦ ମେଟ୍ରିକ୍ ଟନ୍, ସୁନ୍ଦରଗଡ଼- ୯୫୦ ମେଟ୍ରିକ୍ ଟନ୍ ।

## ରାଜ୍ୟର ସମୃଦ୍ଧି ପାଇଁ ସମସ୍ତଙ୍କର ସହଯୋଗ ଆବଶ୍ୟକ

ସଚିବାଳୟଠାରେ ମୁଖ୍ୟ ଶାସନ ସଚିବ ଡକ୍ଟର ସୁବାସ ପାଣିଙ୍କ ଅଧ୍ୟକ୍ଷତାରେ ସଚିବସ୍ତରୀୟ ବୈଠକ ଅନୁଷ୍ଠିତ ହୋଇଥିଲା । ନୂତନ ଭାବେ ମୁଖ୍ୟ ଶାସନ ସଚିବ ଦାୟିତ୍ୱ ଗ୍ରହଣ କରିବା ପରେ ବିଭାଗୀୟ ସଚିବମାନଙ୍କ ସହିତ ଏହା ତାଙ୍କର ପ୍ରଥମ ଆଲୋଚନା ଥିଲା ।

ରାଜ୍ୟର ସମୃଦ୍ଧି ତଥା ସର୍ବାଙ୍ଗୀନ ଉନ୍ନତି ପାଇଁ ପରସ୍ପର ମଧ୍ୟରେ ସହଯୋଗ ଓ ଭାବର ଆଦାନପ୍ରଦାନ ଉପରେ ମୁଖ୍ୟ ଶାସନ ସଚିବ ଗୁରୁତ୍ୱ ଦେଇଥିଲେ । ରାଜ୍ୟର ଗଚ୍ଛିତ ପ୍ରଚୁର ଖଣିଜ ସଂପଦର ସଦୁପଯୋଗ ମାଧ୍ୟମରେ ରାଜ୍ୟର ଆର୍ଥିକ ପ୍ରଗତି ସମ୍ଭବ ହେବ । ତେଣୁ ରାଜ୍ୟରେ ବଡ଼ ବଡ଼ ଶିଳ୍ପ କାରଖାନା ସ୍ଥାପନ ପାଇଁ ବ୍ୟାପକ ସୁଯୋଗ ଓ ସମ୍ଭାବନା ଥିବା ଯୋଗୁଁ ଏଥିପାଇଁ ଆସୁଥିବା ଶିଳ୍ପୋଦ୍ୟୋଗୀମାନଙ୍କୁ ସର୍ବାନ୍ତକରଣରେ ସମସ୍ତ ସହଯୋଗ କରିବାକୁ ସେ ବିଭାଗୀୟ ସଚିବମାନଙ୍କୁ ପରାମର୍ଶ ଦେଇଥିଲେ । ବଡ଼ ବଡ଼ ଶିଳ୍ପ ପ୍ରତିଷ୍ଠା ହେଲେ ଆଗାମୀ ଦିନରେ ଉତ୍ପାଦନ ଓ ରପ୍ତାନୀ କ୍ଷେତ୍ରରେ ରାଜ୍ୟର ଦ୍ରୁତ ପ୍ରଗତି ସମ୍ଭବ ହେବ । ପ୍ରଶାସନର ସମସ୍ତ କ୍ଷେତ୍ରରେ ସୂଚନା ଓ ପ୍ରଯୁକ୍ତି କୌଶଳର ପ୍ରୟୋଗ, ରାଜସ୍ୱ ବୃଦ୍ଧି, ମାନବ ସମ୍ବଳର ବିନିଯୋଗ, ସାକ୍ଷରତା, ପ୍ରାଥମିକ ଶିକ୍ଷାଠାରୁ ଉଚ୍ଚଶିକ୍ଷା ପ୍ରଗତିର ଯୁଗୋପଯୋଗୀ ବିକାଶ, ରାଜ୍ୟର ଐତିହ୍ୟ, ସାଂସ୍କୃତିକ, ବିଶେଷକରି ଆଦିବାସୀମାନଙ୍କର ସାମୂହିକ ବିକାଶ ଧାରାକୁ ତ୍ୱରାନ୍ୱିତ କରିବାକୁ ମୁଖ୍ୟ ଶାସନ ସଚିବ ପରାମର୍ଶ ଦେଇଥିଲେ ।

କେନ୍ଦ୍ରୀୟ ଅନୁଦାନ ଓ ସାହାଯ୍ୟ ଦ୍ୱାରା କାର୍ଯ୍ୟକାରୀ ହେଉଥିବା ବିଭିନ୍ନ ପ୍ରକଳ୍ପର ପୂର୍ଣ୍ଣାଙ୍ଗର ସମୟାନୁବର୍ତ୍ତିତା, ଉପଯୋଗ ପ୍ରମାଣପତ୍ର ନିର୍ଦ୍ଦିଷ୍ଟ ସମୟରେ ପ୍ରଦାନ, ରାଜ୍ୟରେ ହସ୍ତଶିଳ୍ପର ପ୍ରସାର ସଂପର୍କରେ ସଚିବମାନଙ୍କୁ ପରାମର୍ଶ ଦେଇଥିଲେ । ପ୍ରଶାସନ କ୍ଷେତ୍ରରେ କୌଣସି ସମସ୍ୟା ଉପୁଜିଲେ ସଚିବମାନେ ମୁଖ୍ୟ ଶାସନ ସଚିବଙ୍କ ସହିତ ପରାମର୍ଶ କରିବାକୁ କହିଥିଲେ । ରାଜ୍ୟର ଦ୍ରୁତ ବିକାଶ ଓ ପ୍ରଶାସନିକ ଶୃଙ୍ଖଳା ପାଇଁ ସେ ସମସ୍ତଙ୍କର ସହଯୋଗ କାମନା କରିଥିଲେ ।

## ବନ୍ୟା ପରିସ୍ଥିତି ସଂପର୍କରେ ମୁଖ୍ୟମନ୍ତ୍ରୀଙ୍କ ସମୀକ୍ଷା

ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଅଗଷ୍ଟ ୨୩ ତାରିଖ ଦିନ ସଚିବାଳୟଠାରେ ଅନୁଷ୍ଠିତ ଏକ ଉଚ୍ଚସ୍ତରୀୟ ବୈଠକରେ ବନ୍ୟା ପରିସ୍ଥିତି ସଂପର୍କରେ ସମୀକ୍ଷା କରିଥିଲେ ।

ସମୀକ୍ଷାରୁ ଜଣାଯାଇଛି ଯେ, କ୍ରମାଗତ ବର୍ଷା ଫଳରେ ବୈତରଣୀ, ବୁଢ଼ାବଳଙ୍ଗ ଓ ସୁବର୍ଣ୍ଣରେଖା ନଦୀରେ ବନ୍ୟା ଆସିଛି । ଏହି ବନ୍ୟାରେ ବାଲେଶ୍ୱର, ଭଦ୍ରକ, ଯାଜପୁର ଓ ମୟୂରଭଂଜ ଜିଲ୍ଲାର ୧୦ଟି ବ୍ଲକ୍‌ର ୩୬ଟି ପଂଚାୟତର ୧୬୦ଟି ଗ୍ରାମ କ୍ଷତିଗ୍ରସ୍ତ ହୋଇଛି । ପରିସ୍ଥିତି ଉପରେ ତୀକ୍ଷ୍ଣ ନଜର ରଖିବା ପାଇଁ ସଂପୃକ୍ତ ଜିଲ୍ଲାର ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି ।

ବନ୍ୟା ଦ୍ୱାରା ହୋଇଥିବା କ୍ଷୟକ୍ଷତି ଓ ଶସ୍ୟହାନୀ ସଂପର୍କରେ ଆକଳନ କରି ତୁରନ୍ତ ରାଜ୍ୟ ସରକାରଙ୍କୁ ରିପୋର୍ଟ ଦେବା ପାଇଁ ଜିଲ୍ଲାପାଳମାନଙ୍କୁ ନିର୍ଦ୍ଦେଶ ଦିଆଯାଇଛି । ସେହିପରି ବନ୍ୟାରେ ମୃତାହତ ଲୋକମାନଙ୍କୁ ତୁରନ୍ତ କ୍ଷତିପୂରଣ ପ୍ରଦାନ କରାଯିବା, ବନ୍ୟାଦ୍ୱାରା ହୋଇଥିବା ଘାଇ ଓ ରାସ୍ତା ମରାମତି କାର୍ଯ୍ୟ ଅଗ୍ରାଧିକାର ଭିତ୍ତିରେ ଶେଷ କରିବା ପାଇଁ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଯାଇଥିଲା ।

କ୍ଷତିଗ୍ରସ୍ତ ଲୋକମାନଙ୍କୁ ତୁରନ୍ତ ସ୍ୱାସ୍ଥ୍ୟ ସେବା ସୁବିଧା ଯୋଗାଇ ଦେବା ସହିତ ଜଳ ବିଶୋଧନ କାର୍ଯ୍ୟ ଉପରେ ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ ଗୁରୁତ୍ୱ ଆରୋପ କରିଥିଲେ । ବନ୍ୟାଞ୍ଚଳକୁ ମେଡ଼ିକାଲ ଟିମ୍ ପଠାଯିବା ସହିତ ଆବଶ୍ୟକ ସଂଖ୍ୟକ ଔଷଧପତ୍ର ପଠାଯାଉଛି ବୋଲି ସ୍ୱାସ୍ଥ୍ୟ ବିଭାଗର ପ୍ରମୁଖ ସଚିବ ବୈଠକରେ ସୂଚନା ଦେଇଥିଲେ । ସେହିପରି ବନ୍ୟାଞ୍ଚଳର ନଳକୂପଗୁଡ଼ିକର ବିଶୋଧନ କାର୍ଯ୍ୟ ଗ୍ରାମ୍ୟ ଉନ୍ନୟନ ବିଭାଗର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଚାଲିଛି ବୋଲି ବିଭାଗୀୟ ଶାସନ ସଚିବ ସୂଚନା ଦେଇଥିଲେ । ଗାଈଗୋରୁମାନଙ୍କ ପାଇଁ ରୋଗ ପ୍ରତିଷେଧକ ଔଷଧ ସହିତ ଗୋଖାଦ୍ୟ ପଠାଯାଉଛି ବୋଲି ବୈଠକରେ ସୂଚନା ଦିଆଯାଇଥିଲା ।

ଏହି ବୈଠକରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ, ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ମହାନ୍ତି, ଉନ୍ନୟନ କମିଶନର ଶ୍ରୀ ଅଜିତ୍ କୁମାର ତ୍ରିପାଠୀ, କୃଷି ଉତ୍ପାଦନ କମିଶନର ଶ୍ରୀ ଗୌତମବୁଦ୍ଧ ମୁଖାର୍ଜୀଙ୍କ ସମେତ କୃଷି, ଜଳସଂପଦ, ଗ୍ରାମ୍ୟ ଉନ୍ନୟନ, ପୂର୍ତ୍ତ, ସ୍ୱାସ୍ଥ୍ୟ, ନଗର ଉନ୍ନୟନ, ଖାଦ୍ୟ ଯୋଗାଣ ଆଦି ବିଭାଗର ପ୍ରମୁଖ ଶାସନ ସଚିବ ଓ ସଚିବ, ସ୍ୱତନ୍ତ୍ର ରିଲିଫ୍ କମିଶନ, ଓସ୍‌ଡମାର ନିର୍ଦ୍ଦେଶକ ଏବଂ ମୁଖ୍ୟମନ୍ତ୍ରୀଙ୍କ ସଚିବ ପ୍ରମୁଖ ଉପସ୍ଥିତ ଥିଲେ ।

## କେ.ବି.କେ. ଅଞ୍ଚଳରେ ଚଳିତ ବର୍ଷ ଅଧିକ ୨୪୦୦୦ ହେକ୍ଟର ଜମିକୁ ଜଳସେଚିତ କରାଯିବା ଉପରେ ମୁଖ୍ୟମନ୍ତ୍ରୀଙ୍କ ଗୁରୁତ୍ୱ

ଗତ ଅଗଷ୍ଟ ୬ ତାରିଖ ଦିନ ସଚିବାଳୟଠାରେ ଏକ ଉଚ୍ଚସ୍ତରୀୟ ବୈଠକରେ ମୁଖ୍ୟମନ୍ତ୍ରୀ ଶ୍ରୀ ନବୀନ ପଟ୍ଟନାୟକ ଜଳସଂପଦ ବିଭାଗ ସବ୍‌ଜେକ୍ଟ କମିଟି ସୁପାରିଶ ଉପରେ ଗ୍ରହଣ କରାଯାଇଥିବା କାର୍ଯ୍ୟାନୁଷ୍ଠାନ ସଂପର୍କରେ ସମୀକ୍ଷା କରିଥିଲେ ।

ବୈଠକରେ ଅଧ୍ୟକ୍ଷତା କରି ମୁଖ୍ୟମନ୍ତ୍ରୀ ଶ୍ରୀ ପଟ୍ଟନାୟକ କେ.ବି.କେ. ଅଞ୍ଚଳରେ ଜଳସେଚନ ବୃଦ୍ଧି କରି ଅଧିକ ଜମିକୁ ଜଳସେଚିତ କରାଯିବା ଉପରେ ଗୁରୁତ୍ୱ ଆରୋପ କରିଥିଲେ । ୨୦୦୪-୦୫ ବର୍ଷରେ କେ.ବି.କେ. ଅଞ୍ଚଳରେ ଚଳିତ ବର୍ଷ ଅନ୍ତତଃପକ୍ଷେ ଅଧିକ ୨୪୦୦୦ ହେକ୍ଟର ଜମିକୁ ଜଳସେଚନ ସୁବିଧା ଯୋଗାଇ ଦେବା ପାଇଁ ମୁଖ୍ୟମନ୍ତ୍ରୀ ପରାମର୍ଶ ଦେଇଥିଲେ । ଏତଦ୍‌ବ୍ୟତୀତ ଅଚଳ ଉଠାଜଳସେଚନ ପଏଣ୍ଟଗୁଡ଼ିକୁ ପୁନରୁଦ୍ଧାର କରିବା ସହିତ ନୂତନ ଉଠାଜଳସେଚନ ପଏଣ୍ଟଗୁଡ଼ିକୁ ବିଦ୍ୟୁତ ଶକ୍ତି ଯୋଗାଇ ପାଣି ପଞ୍ଚାୟତକୁ ହସ୍ତାନ୍ତର କରାଯିବା ଉପରେ ମୁଖ୍ୟମନ୍ତ୍ରୀ ଗୁରୁତ୍ୱ ଅରୋପ କରିଥିଲେ ।

ବୈଠକରୁ ଜଣାଯାଇଛି ଯେ, ଚଳିତ ବର୍ଷ ରାଜ୍ୟର ୪୮,୪୮୦ ହେକ୍ଟର ଅଧିକ ଜମିକୁ ଜଳସେଚନ ସୁବିଧା ସଂପ୍ରସାରିତ କରାଯିବା ପାଇଁ ବ୍ୟବସ୍ଥା କରାଯାଇଛି । ଉଠାଜଳସେଚନ ଜରିଆରେ ଜଳସେଚନ ସୁବିଧା ପାଇଁ ୧୭୯୮ ଅଚଳ ଉଠାଜଳସେଚନ ପଏଣ୍ଟ ପୁନରୁଦ୍ଧାର ପାଇଁ

ଚିହ୍ନଟ କରାଯାଇଛି । ଏ ପର୍ଯ୍ୟନ୍ତ ୧୩୧୧ ପ୍ରକଳ୍ପ ମରାମତି କରାଯାଇଛି ଓ ତନ୍ମଧ୍ୟରୁ ୬୪୮ଟି ପଏଣ୍ଟକୁ ପାଣିପଞ୍ଚାୟତକୁ ହସ୍ତାନ୍ତର କରାଯାଇଛି । ସେହିପରି ଏ ପର୍ଯ୍ୟନ୍ତ ରାଜ୍ୟରେ ୧୦୬୮୦ଟି ପାଣିପଞ୍ଚାୟତ ଗଠନ କରାଯାଇଛି । ଏହା ଜରିଆରେ ୮.୭୯ ଲକ୍ଷ ହେକ୍ଟର ଜମିରେ ଜଳସେଚନ ସୁବିଧା ପାଇଁ ବ୍ୟବସ୍ଥା କରାଯାଇଛି । ତନ୍ମଧ୍ୟରୁ ୮୦୧୩ଟି ପାଣିପଞ୍ଚାୟତକୁ ୫.୬୩ ଲକ୍ଷ ହେକ୍ଟର ଜମିର ଜଳସେଚନ ଦାୟିତ୍ୱ ହସ୍ତାନ୍ତର କରାଯାଇଛି । ଆଗାମୀ ସେପ୍ଟେମ୍ବର ସୁଦ୍ଧା ପାଣି ପଞ୍ଚାୟତକୁ ୧୧.୨୦ ଲକ୍ଷ ହେକ୍ଟର ଜମିର ଜଳସେଚନ ବ୍ୟବସ୍ଥା ହସ୍ତାନ୍ତର କରାଯିବାର ଲକ୍ଷ୍ୟ ରଖାଯାଇଛି । ଉପକୂଳ ଅଂଚଳର ଜଳାବଦ୍ଧ ଅବସ୍ଥା ଦୂରକରି ଜମିର ପୁନରୁଦ୍ଧାର ପାଇଁ କାର୍ଯ୍ୟକ୍ରମ ନାବାର୍ଡ଼ ସହାୟତାରେ ହାତକୁ ନେବାର ଯୋଜନା କରାଯାଇଛି । ଚଳିତ ବର୍ଷ ୫୦,୬୯୫ ହେକ୍ଟର ଜମିର ପୁନରୁଦ୍ଧାର ପାଇଁ ୧୧୫.୮୩ କୋଟି ଟଙ୍କାର ଏକ ପ୍ରସ୍ତାବ ନାବାର୍ଡ଼କୁ ଦିଆଯାଇଛି ବୋଲି ବୈଠକରେ ସୂଚନା ଦିଆଯାଇଥିଲା ।

ଏହି ବୈଠକରେ ମୁଖ୍ୟ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ମହାନ୍ତି, ଜଳସଂପଦ ବିଭାଗର ପ୍ରମୁଖ ସଚିବ ଶ୍ରୀ ବିଜୟ କୁମାର ପଟ୍ଟନାୟକ, ମୁଖ୍ୟମନ୍ତ୍ରୀଙ୍କ ସଚିବ ଶ୍ରୀ ଯୁଗଳ କିଶୋର ମହାପାତ୍ରଙ୍କ ସମେତ ଜଳସଂପଦ ବିଭାଗର ବରିଷ୍ଠ ପଦାଧିକାରୀ ଓ ଇଂଜିନିୟରମାନେ ଉପସ୍ଥିତ ଥିଲେ ।

## ଏଡ୍‌ସର ଭୟାବହତା ସଂପର୍କରେ ତୃଣମୂଳ ସ୍ତରରୁ ସଚେତନତା ସୃଷ୍ଟି କରାଯିବା ଉପରେ ସୂଚନା ଓ ଲୋକ ସଂପର୍କ ମନ୍ତ୍ରୀଙ୍କ ଗୁରୁତ୍ୱ

ଗତ ଅଗଷ୍ଟ ୪ ତାରିଖରୁ ପୁରୀ ଯୁବ ଛାତ୍ରାବାସଠାରେ ଜାତୀୟ ସେବା ସଂସ୍ଥା, ଭୁବନେଶ୍ୱର ଆଂଚଳିକ କେନ୍ଦ୍ର ତରଫରୁ ଏନ୍.ଏସ୍.ଏସ୍. କାର୍ଯ୍ୟକ୍ରମ ସଂଯୋଜକମାନଙ୍କ ନିମନ୍ତେ ୟୁନିଭରସିଟି ଟକ୍ ଏଡ୍‌ସ (ୟୁ.ଟି.ଏ.) ଶୀର୍ଷକ ଏକ ଚାରିଦିନିଆ ତାଲିମ ଶିବିର ଆରମ୍ଭ ହୋଇଛି ।

ଏହି ଶିବରକୁ ସୂଚନା ଓ ଲୋକ ସଂପର୍କ ତଥା କ୍ରୀଡ଼ା ଓ ଯୁବସେବା ମନ୍ତ୍ରୀ ଶ୍ରୀ ଦେବାଶିଷ ନାୟକ ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରି ଏଡ୍‌ସ ରୋଗର ଭୟାବହତା ଉପରେ ଆଲୋକପାତ କରିଥିଲେ । ମନ୍ତ୍ରୀ ଶ୍ରୀ ନାୟକ ଆନ୍ତର୍ଜାତୀୟ ସ୍ତରରେ ପ୍ରତିଦିନ ଶତକଡ଼ା ୧୫ରୁ ୨୯ ଜଣ ଲୋକ ଏଚ.ଆଇ.ଭି. ଦ୍ୱାରା ସଂକ୍ରମିତ ହେଉଥିବା ବେଳେ ଭାରତବର୍ଷରେ ପ୍ରାୟ ୭୨୫ ଜଣ ଏହି ଭୟାନକ ରୋଗରେ ସଂକ୍ରମିତ ହେଉଛନ୍ତି ବୋଲି ସୂଚନା ଦେଇ ଜାତୀୟ ସେବା ସଂସ୍ଥାର ସ୍ୱେଚ୍ଛାସେବୀମାନେ ରାଜ୍ୟର ଦୁର୍ଗମ ଅଂଚଳମାନଙ୍କରେ ଲୋକମାନଙ୍କର ସେବାକାର୍ଯ୍ୟ ତ୍ୱରାନ୍ୱିତ କରିବା ଆବଶ୍ୟକ ବୋଲି ପରାମର୍ଶ ଦେଇଥିଲେ । ଏହି ରୋଗ ନିମନ୍ତେ କେବଳ ସଚେତନତା ହିଁ ପ୍ରକୃତ ପ୍ରତିଷେଧକ ହୋଇଥିବା ଦୃଷ୍ଟିରୁ ତୃଣମୂଳ ସ୍ତରରୁ ସଚେତନତା କାର୍ଯ୍ୟକ୍ରମ ଗ୍ରହଣ କରାଯିବା ଉପରେ ମନ୍ତ୍ରୀ ଶ୍ରୀ ନାୟକ ଗୁରୁତ୍ୱ ଆରୋପ କରିଥିଲେ ।

ଜାତୀୟ ଯୁବ ବିକାଶ କେନ୍ଦ୍ର ମୁଖ୍ୟ ଉପଦେଷ୍ଟା ଡାଃ ଭଗବାନ ପ୍ରକାଶ ଏଡ୍‌ସ ରୋଗ ସଂପର୍କରେ ଏବଂ ତା'ର ନିରାକରଣ ଉପରେ ବକ୍ତବ୍ୟ ରଖିଥିଲେ । ପ୍ରାରମ୍ଭରେ ଆଂଚଳିକ ସଂଯୋଜକ ସରିତା ପଟେଲ ପ୍ରଶିକ୍ଷଣ କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେଇ ସ୍ୱାଗତ ଭାଷଣ ପ୍ରଦାନ କରିଥିଲେ ଏବଂ କାର୍ଯ୍ୟକ୍ରମ ସଂଯୋଜକ ଶ୍ରୀ ଦଶରଥ ନାୟକ ଧନ୍ୟବାଦ ଅର୍ପଣ କରିଥିଲେ ।

ଏହି ଶିବିରରେ ରାଜ୍ୟର ୫ଟି ବିଶ୍ୱବିଦ୍ୟାଳୟରୁ ୪୦ ଜଣ କାର୍ଯ୍ୟକ୍ରମ ସଂଯୋଜକ ମାଷ୍ଟର ଟ୍ରେନର୍ ଭାବେ ଏଡ୍‌ସ ଓ ଏହାର ନିରାକରଣ ଉପରେ ପ୍ରଶିକ୍ଷଣ ପାଇଁ ଯୋଗ ଦେଇଥିଲେ ।

## ରାଜ୍ୟ ଗୃହ ନିର୍ମାଣ ସଂସ୍ଥାର ଆର୍ଥିକ ଅଭିବୃଦ୍ଧି ନିମନ୍ତେ ବ୍ୟାପକ ଯୋଜନା

ଓଡ଼ିଶା ଗୃହ ନିର୍ମାଣ ସଂସ୍ଥାର ଆର୍ଥିକ ଅବସ୍ଥାର ଦ୍ରୁତ ଅଭିବୃଦ୍ଧି ନିମନ୍ତେ ଏଥିମଧ୍ୟରେ ସଂସ୍ଥାର ଅଧ୍ୟକ୍ଷ ତଥା ଗୃହ ଓ ନଗର ଉନ୍ନୟନ ବିଭାଗର ସଚିବ ଶ୍ରୀମତୀ ରାଜଲକ୍ଷ୍ମୀ ବିଗତ ୬ ମାସ ମଧ୍ୟରେ ସଂସ୍ଥାରେ ଥିବା ବିଭିନ୍ନ ବାକିଆ କାର୍ଯ୍ୟକ୍ରମକୁ ସମାପ୍ତ କରିବା ସହ ନୂତନ ଜମି ଅଧିଗ୍ରହଣ କରି ଗୃହ ନିର୍ମାଣ ପ୍ରକଳ୍ପ କାର୍ଯ୍ୟକାରୀ କରିବା ନିମନ୍ତେ ନିର୍ଦ୍ଦିଷ୍ଟ ପଦକ୍ଷେପ ଗ୍ରହଣ କରିଛନ୍ତି । ରାଜ୍ୟ ଗୃହ ନିର୍ମାଣ ସଂସ୍ଥାର ଆର୍ଥିକ ଦୁରବସ୍ଥା ଉପରେ ବିଭିନ୍ନ ଖବର କାଗଜରେ ପ୍ରକାଶ ପାଉଥିବା ସମ୍ବାଦ ପରିପ୍ରେକ୍ଷୀରେ ଏହି ସଂସ୍ଥା ବିଗତ ବର୍ଷମାନଙ୍କରେ ରାଜ୍ୟର ବିଭିନ୍ନ ସହରରେ ତଥା ବିଶେଷ ଭାବେ ଭୁବନେଶ୍ୱର ଓ ରାଉରକେଲାଠାରେ ପ୍ରାୟ ୩୦,୦୦୦ ବାସଗୃହ ସଫଳତାର ସହିତ ନିର୍ମାଣ କରି ସୁବିଧା ଦରରେ ଲୋକଙ୍କୁ ଯୋଗାଇ ଦେଇଥିଲେ । ବିଶେଷ ଭାବରେ ରାଜଧାନୀ ଭୁବନେଶ୍ୱର ଓ ରାଉରକେଲା ଯୋଜନାବଦ୍ଧ ଉନ୍ନୟନରେ ଏହି ସଂସ୍ଥାର

ଅବଦାନ ଅନସ୍ୱୀକାର୍ଯ୍ୟ । ୧୯୯୦-୯୫ ବର୍ଷମାନଙ୍କରେ ସଂସ୍ଥା ରାଜ୍ୟ ସରକାରଙ୍କ ନିର୍ଦ୍ଦେଶମତେ ଗ୍ରାମାଞ୍ଚଳରେ କଳିଙ୍ଗ କୁଟୀର ଯୋଜନା କରି ବ୍ୟାପକ ଋଣ ଆଣିବା ବର୍ତ୍ତମାନର ଆର୍ଥିକ ଦୁରବସ୍ଥାର କାରଣ ବୋଲି ଜଣାପଡ଼ିଛି ।

ବର୍ତ୍ତମାନର ବିଭାଗୀୟ ମନ୍ତ୍ରୀ ଶ୍ରୀ ଅନଙ୍ଗ ଉଦୟ ସିଂହଦେଓ, ଅଧ୍ୟକ୍ଷା ଶ୍ରୀମତୀ ରାଜଲକ୍ଷ୍ମୀ ଗୃହ ନିର୍ମାଣ ସଂସ୍ଥାକୁ ଖୁବ୍‌ଶୀଘ୍ର ପୁନଃ ଆର୍ଥିକ ସ୍ୱଚ୍ଛଳ କରିବା ନିମନ୍ତେ ବ୍ୟାପକ କାର୍ଯ୍ୟକ୍ରମ ହାତକୁ ନେଇଛନ୍ତି । ବିଗତ ଆର୍ଥିକ ବର୍ଷରେ ଅଧ୍ୟକ୍ଷଙ୍କ ପ୍ରଚେଷ୍ଟା ଫଳରେ ସଂସ୍ଥା ଭୁବନେଶ୍ୱରର ପାତ୍ରପଡ଼ା, ରଣସିଂହପୁର ଓ ସିଜୁଆଠାରେ ପ୍ରାୟ ୫୦ ଏକର ଜମି କ୍ରୟ କରିଛନ୍ତି । ଜଗତପୁର ଶିଳ୍ପାଞ୍ଚଳଠାରେ ସଂସ୍ଥା ୬୦ ଏକର ସରକାରୀ ଜମି କ୍ରୟ କରିବା ନିମନ୍ତେ ପଦକ୍ଷେପ ନେଉଛନ୍ତି । ଏହିସବୁ ସ୍ଥାନରେ ଖୁବ୍‌ଶୀଘ୍ର ଗୃହ ନିର୍ମାଣ ପ୍ରକଳ୍ପ ତଥା ଉନ୍ନତ ବାସୋପଯୋଗୀ ଜମି ଯୋଗାଇ ଦିଆଯିବ । ଏହାଛଡ଼ା ଭୁବନେଶ୍ୱର ଶହୀଦନଗର, ୟୁନିଟ-୬, ପଟିଆଠାରେ ବିଜ୍ଞାପିତ ପ୍ରକଳ୍ପଗୁଡ଼ିକର ନିର୍ମାଣ କାର୍ଯ୍ୟ ଖୁବ୍‌ଶୀଘ୍ର ଆରମ୍ଭ କରିବା ନିମନ୍ତେ ପଦକ୍ଷେପ ନିଆଯିବ । ସେହିପରି ସରକାରଙ୍କ ସାଧାରଣ ପ୍ରଶାସନ ବିଭାଗକୁ ଗୃହ ନିର୍ମାଣ ସଂସ୍ଥା ଦ୍ୱାରା ଚନ୍ଦ୍ରଶେଖରପୁରଠାରେ ବିକ୍ରୟ ହୋଇଥିବା ଫ୍ଲାଟ ବାବଦକୁ ଥିବା ଦେୟ ସହିତ କିଣିଥିବା ସରକାରୀ ଜମିର ଦରକୁ ନେଇଥିବା ହିସାବର ବହୁ ଦିନର ବିବାଦକୁ ସଂସ୍ଥାର ଅଧ୍ୟକ୍ଷ ସମାଧାନ କରିବାରେ ସଫଳ ହୋଇଛନ୍ତି । ସଂସ୍ଥା ଦ୍ୱାରା ଖୁବ୍‌ଶୀଘ୍ର ଜମିଗୁଡ଼ିକର ଲିଜ୍ ସଂପୂର୍ଣ୍ଣ କରାଯିବାର ଆଶା କରାଯାଉଛି । ଗୃହ ନିର୍ମାଣ ସଂସ୍ଥାକୁ ବିଗତ ଆର୍ଥିକ ବର୍ଷରେ ବିଭାଗୀୟ ସଚିବ ଶ୍ରୀମତୀ ରାଜଲକ୍ଷ୍ମୀ ଏକ କୋଟି ଟଙ୍କାର ଗ୍ରାଣ୍ଟ ଦେଇଥିଲେ ବୋଲି ଜଣାଯାଇଛି । ସେହିପରି ସଂସ୍ଥାର ଭୁବନେଶ୍ୱରଠାରେ ୟୁନିଟ୍-୩, ୟୁନିଟ୍-୬ ଓ ଆଇଗିଣିଆଠାରେ ଯୌଥ ପ୍ରକଳ୍ପରେ ଚାଲିଥିବା ପ୍ରକଳ୍ପଗୁଡ଼ିକ ବିଲ୍‌ଡରମାନଙ୍କଠାରୁ ବକେୟା ଟଙ୍କା ଆଦାୟ କରିବା ନିମନ୍ତେ ବଳିଷ୍ଠ ପଦକ୍ଷେପ ନିଆଯିବ । ଏଗ୍ରୀମେଣ୍ଟ ମାଧ୍ୟମରେ ଲୋକମାନଙ୍କୁ ସତର୍କ କରିବା ନିମନ୍ତେ ଆଇନଗତ ପଦକ୍ଷେପ ଗ୍ରହଣ କରିବାକୁ ଅଧ୍ୟକ୍ଷ ନିର୍ଦ୍ଦେଶ ଦେଇଛନ୍ତି । ବିଭିନ୍ନ ପ୍ରକଳ୍ପରେ ସୁଲଭ କିସ୍ତିରେ ଘର କିଣି ଶୁଝୁ ନଥିବା ବ୍ୟକ୍ତିମାନଙ୍କ ଉପରେ ଦୃଢ଼ କାର୍ଯ୍ୟାନୁଷ୍ଠାନ ନିମନ୍ତେ ସଂସ୍ଥା କାର୍ଯ୍ୟକ୍ରମ ଗ୍ରହଣ କରୁଥିବାର ଜଣାଯାଇଛି । କିସ୍ତି ଖିଲାପକାରୀଙ୍କ ଆବଣ୍ଟନ ଖାରଜ କରି ସେମାନଙ୍କୁ ବେଦଖଲ କରିବା ନିମନ୍ତେ ଖୁବଶୀଘ୍ର ପଦକ୍ଷେପ ନେବାକୁ ନିର୍ଦ୍ଦେଶ ଦିଆଯାଇଛି ।

ଏକଦା ସରକାରଙ୍କ ସମୃଦ୍ଧଶାଳୀ ସଂସ୍ଥା ଭାବେ ପରିଚିତ ରାଜ୍ୟ ଗୃହ ନିର୍ମାଣ ବୋର୍ଡ଼ ବିଗତ ବର୍ଷମାନଙ୍କରେ ରାଜ୍ୟରେ ସୁଲଭ ମୂଲ୍ୟରେ ବ୍ୟାପକ ଗୃହ ନିର୍ମାଣ ପ୍ରକଳ୍ପ କାଯ୍ୟକାରୀ କରିଥିବା ଜଣାଯାଇଛି ।

## ଜମି ଲିଜ୍ ସୂତ୍ରରେ ସମୁଦ୍ର କୂଳବର୍ତ୍ତୀ ଅଂଚଳରେ ଚିଂଗୁଡ଼ି ଚାଷ ପାଇଁ ପ୍ରୋତ୍ସାହନ ଯୋଗାଇ ଦିଆଯିବ - ରାଜସ୍ୱ ମନ୍ତ୍ରୀ ଶ୍ରୀ ସାମଲ

ସମୁଦ୍ର କୂଳବର୍ତ୍ତୀ ଅଂଚଳରେ ଚିଂଗୁଡ଼ି ଚାଷ ପାଇଁ କ୍ଷୁଦ୍ର ଓ ନାମମାତ୍ର ଚାଷୀଙ୍କୁ ଲିଜ୍ ସୂତ୍ରରେ ଜମି ଯୋଗାଇ ଦିଆଯିବା ପାଇଁ ଏକ ସୁଚିନ୍ତିତ ପଦକ୍ଷେପ ନିଆଯାଉଛି ବୋଲି ରାଜସ୍ୱ ମନ୍ତ୍ରୀ ଶ୍ରୀ ମନମୋହନ ସାମଲ ସଚିବାଳୟଠାରେ ଗତ ଅଗଷ୍ଟ ୨୩ ତାରିଖରେ ଏକ ଉଚ୍ଚସ୍ତରୀୟ ବୈଠକରେ ପ୍ରକାଶ କରିଛନ୍ତି । ବର୍ତ୍ତମାନ ରାଜ୍ୟରେ ୫୦ ପ୍ରତିଶତ ଲୋକ ଦାରିଦ୍ର୍ୟ ସୀମାରେଖା ତଳେ ରହୁଥିବାରୁ ସେମାନଙ୍କୁ ଲିଜ୍ ସୂତ୍ରରେ ଜମି ଯୋଗାଇ ଦିଆଯାଇ ସେମାନଙ୍କର ଆର୍ଥିକ ମାନଦଣ୍ଡର ଉନ୍ନତି କଳ୍ପେ ସରକାର ଗୁରୁତ୍ୱର ସହ ଚିନ୍ତା କରୁଛନ୍ତି । ବର୍ତ୍ତମାନ ସୁଦ୍ଧା ୧୦ ହଜାର ଏକର ଜମିରେ ଚିଂଗୁଡ଼ି ଚାଷ କରାଯାଇ ୪୦୦ କୋଟି ଟଙ୍କା ରାଜସ୍ୱ ଆଦାୟ କରାଯାଉଛି । କିନ୍ତୁ ରାଜ୍ୟରେ ଥିବା ୪୦ ହଜାର ଏକର ଜମିରେ ଚିଂଗୁଡ଼ି ଚାଷ କରାଯାଇ ପାରିଲେ, ରାଜସ୍ୱ ଆଉ ୧୨୦୦ କୋଟି ଟଙ୍କାକୁ ବୃଦ୍ଧି ପାଇବ ବୋଲି ମନ୍ତ୍ରୀ ଶ୍ରୀ ସାମଲ ସୂଚନା ଦେଇଥିଲେ । ଏହି କାର୍ଯ୍ୟକ୍ରମକୁ ତ୍ୱରାନ୍ୱିତ କରିବା ନିମନ୍ତେ ଜଂଗଲ ଓ ପରିବେଶ, ରାଜସ୍ୱ, ମତ୍ସ୍ୟ ଓ ପଶୁ ସଂପଦ ବିକାଶ ବିଭାଗ ଏବଂ ପ୍ରଦୂଷଣ ନିୟନ୍ତ୍ରଣ ବୋର୍ଡ଼ ସହିତ ସମନ୍ୱୟ ରକ୍ଷା କରି ଉପଯୁକ୍ତ ପଦକ୍ଷେପ ନେଇ ଏହି କାର୍ଯ୍ୟକ୍ରମକୁ ପର୍ଯ୍ୟାୟକ୍ରମେ ତ୍ୱରାନ୍ୱିତ କରିବା ପାଇଁ ମନ୍ତ୍ରୀ ଶ୍ରୀ ସାମଲ ପରାମର୍ଶ ଦେଇଥିଲେ ଏବଂ ଦରକାର ପଡ଼ିଲେ, ରାଜସ୍ୱ ନିୟମାବଳୀର ଆବଶ୍ୟକୀୟ ସଂଶୋଧନ କରାଯିବ ବୋଲି କହିଥିଲେ । ମତ୍ସ୍ୟଚାଷର ବିକାଶ ନିମନ୍ତେ ମତ୍ସ୍ୟ ଓ ପଶୁ ସଂପଦ ବିକାଶ ବିଭାଗ ସମସ୍ତ କାର୍ଯ୍ୟକୁ ତ୍ୱରାନ୍ୱିତ କରିବା ଏବଂ ଏଥିପାଇଁ ରାଜସ୍ୱ ବିଭାଗ ଲିଜ୍ ସୂତ୍ରରେ ଜମି ଯୋଗାଇ ଦେବା ଉପରେ ବୈଠକରେ ଆଲୋଚନା କରାଯାଇଥିଲା ।

ଏହି ବୈଠକରେ ମତ୍ସ୍ୟ ଓ ପଶୁ ସଂପଦ ବିକାଶ ମନ୍ତ୍ରୀ ଶ୍ରୀ ଗୋଲକ ବିହାରୀ ନାୟକ, ରାଜସ୍ୱ ବିଭାଗ ଶାସନ ସଚିବ ଶ୍ରୀ ରଂଗଲାଲ ଜାମୁଦା, ମତ୍ସ୍ୟ ଓ ପଶୁ ସଂପଦ ବିକାଶ ବିଭାଗ ଶାସନ ସଚିବ ଶ୍ରୀ ଅଶୋକ କୁମାର ତ୍ରିପାଠୀ, ଦକ୍ଷିଣାଞ୍ଚଳ ରାଜସ୍ୱ କମିଶନର ଶ୍ରୀ ଏ.କେ. ପଣ୍ଡା, ଯୋଜନା ଓ ସମନ୍ୱୟ ବିଭାଗର ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ ସଂଗ୍ରାମ ମିଶ୍ରଙ୍କ ସମେତ ପୁରୀ, କେନ୍ଦ୍ରାପଡ଼ା, ଜଗତସିଂହପୁର ଓ ଗଂଜାମର ଜିଲ୍ଲାପାଳବୃନ୍ଦ ଏବଂ ବିଭିନ୍ନ ବିଭାଗର ପଦସ୍ଥ ଅଧିକାରୀମାନେ ଉପସ୍ଥିତି ରହି ମତ୍ସ୍ୟ ସଂପଦର ବିକାଶ ସଂପର୍କରେ ଆଲୋକପାତ କରିଥିଲେ । ଏହାବ୍ୟତୀତ

ସି-ଫିସ୍ ଆସୋସିଏସନ୍ କର୍ମକର୍ତ୍ତାମାନେ ଅନ୍ୟ ରାଜ୍ୟ ପରି ଓଡ଼ିଶାରେ ମତ୍ସ୍ୟ ଚାଷ, ବିଶେଷକରି ଚିଂଗୁଡ଼ି ଚାଷକୁ କୃଷି କ୍ଷେତ୍ର ଅନ୍ତର୍ଭୁକ୍ତ କରିବାକୁ ମତପୋଷଣ କରିଥିଲେ ।

## ପଦ୍ମଶ୍ରୀ ସ୍ୱର୍ଗତଃ ସଂଯୁକ୍ତା ପାଣିଗ୍ରାହୀଙ୍କ ୬୦ତମ ଜୟନ୍ତୀ ସମାରୋହ : ଓଡ଼ିଶୀ ଗୁରୁ ଓ ନୃତ୍ୟଶିଳ୍ପୀଙ୍କ ଜୀବନୀ ବିଦ୍ୟାଳୟ ପାଠ୍ୟକ୍ରମରେ ସ୍ଥାନପାଉ - ରାଜ୍ୟପାଳ

ବୈଦ୍ୟୁତିକ ଗଣମାଧ୍ୟମଗୁଡ଼ିକରେ ପ୍ରସାରିତ ହେଉଥିବା ମନୋରଂଜନଧର୍ମୀ କାର୍ଯ୍ୟକ୍ରମଗୁଡ଼ିକ ଓଡ଼ିଶୀ ତଥା ଅନ୍ୟାନ୍ୟ ଶାସ୍ତ୍ରୀୟ ନୃତ୍ୟ ପ୍ରତି ଆହ୍ୱାନ ରୂପେ ଦେଖାଦେଇଛି ଏବଂ ଏଗୁଡ଼ିକ ମାନବ ଇନ୍ଦ୍ରିୟକୁ ଏପରି ଆଚ୍ଛନ୍ନ କରି ରଖୁଛି ଯେ, ସେ ନୃତ୍ୟ-ଗୀତ ପ୍ରତି ସମୟ ଦେଉନାହିଁ । ଏପରି ପରିପ୍ରେକ୍ଷୀରେ ଭବିଷ୍ୟତ ବଂଶଧରମାନଙ୍କୁ ଓଡ଼ିଶୀ ନୃତ୍ୟ/ଗୀତ ପ୍ରତି ଆକୃଷ୍ଟ କରାଇବାକୁ ହେଲେ ପଦକ୍ଷେପ ସ୍ୱରୂପ ପ୍ରସିଦ୍ଧ ଓଡ଼ିଶୀ ଗୁରୁ ଓ ନୃତ୍ୟ ଶିଳ୍ପୀମାନଙ୍କ ଜୀବନୀକୁ ଆଧାରକରି ବିଷୟମାନ ବିଦ୍ୟାଳୟ ସ୍ତରରେ ପାଠ୍ୟକ୍ରମରେ ଅନ୍ତର୍ଭୁକ୍ତ କରାଯିବା ଉପରେ ରାଜ୍ୟପାଳ ଶ୍ରୀ ଏମ୍.ଏମ୍. ରାଜେନ୍ଦ୍ରନ୍ ଗୁରୁତ୍ୱାରୋପ କରିଛନ୍ତି ।

ଗତ ଅଗଷ୍ଟ ୨୪ ତାରିଖ ଦିନ ପ୍ରସିଦ୍ଧ ନୃତ୍ୟ ଶିଳ୍ପୀ ପଦ୍ମଶ୍ରୀ ସ୍ୱର୍ଗତଃ ସଂଯୁକ୍ତା ପାଣିଗ୍ରାହୀଙ୍କ ୬୦ତମ ଜନ୍ମ ଦିବସ ପାଳନ ସମାରୋହରେ ମୁଖ୍ୟ ଅତିଥି ରୂପେ ଯୋଗ ଦେଇ ଉପରୋକ୍ତ ମର୍ମରେ ନିଜସ୍ୱ ଅଭିଭାଷଣ ପ୍ରଦାନ କରି ଶ୍ରୀ ରାଜେନ୍ଦ୍ରନ୍ କହିଲେ ଯେ, ଓଡ଼ିଶୀ ନୃତ୍ୟ ଓ ସଂଗୀତ ମହୋତ୍ସବଗୁଡ଼ିକ କଟକ, ଭୁବନେଶ୍ୱର, ବ୍ରହ୍ମପୁର ଓ ରାଉରକେଲାରେ ସୀମିତ ନରହି ଛୋଟ ଛୋଟ ସହର ଓ ଗ୍ରାମାଞ୍ଚଳରେ ଆୟୋଜନ କରାଗଲେ ସେଠାକାର ଗୁରୁ ଓ ଶିଷ୍ୟମାନେ ସୁନାମ ଅର୍ଜନ କରିଥିବା ପ୍ରସିଦ୍ଧ ଗୁରୁ ଓ ଶିଳ୍ପୀଙ୍କ ସହ ଭାବର ଆଦାନପ୍ରଦାନ କରିପାରିବେ । ତେବେ ଏ କ୍ଷେତ୍ରରେ ବେସରକାରୀ ସଂଗଠନ ଓ ଘରୋଇ ଶିକ୍ଷାନୁଷ୍ଠାନମାନଙ୍କର ବହୁତ କିଛି କରିବାର ଅଛି ବୋଲି ରାଜ୍ୟପାଳ କହିଥିଲେ ।

ଅନେକ ପ୍ରସିଦ୍ଧ ଗୁରୁ ଓ ନୃତ୍ୟ ଶିଳ୍ପୀମାନଙ୍କର ଜୀବନୀ, ଶିକ୍ଷାଦାନ ଶୈଳୀ, ନୃତ୍ୟ କାର୍ଯ୍ୟକ୍ରମ ଇତ୍ୟାଦିକୁ ସଂରକ୍ଷିତ କରି ରଖିବା ଦିଗରେ ବିଧିବଦ୍ଧ ପଦକ୍ଷେପ ନିଆଯାଉଥିବାରେ ଅବହେଳା ପ୍ରଦର୍ଶନ କରାଯିବା ଅନୁଚିତ ବୋଲି ମତ ଦେଇ ରାଜ୍ୟପାଳ କହିଲେ ଯେ, ଏ ଦିଗରେ ତୁରନ୍ତ ପଦକ୍ଷେପ ନିଆଯିବା ଜରୁରୀ ତଥା ଓଡ଼ିଶୀ ଗବେଷଣା କେନ୍ଦ୍ର, ସଂଗୀତ ନାଟକ ଏକାଡ଼େମୀ ଓ ଅନ୍ୟାନ୍ୟ ଅନେକ ଫାଉଣ୍ଡେସନମାନେ ଏ ଦିଗରେ ଅଗ୍ରଣୀ ଭୂମିକା ନେବାପାଇଁ ଆଗେଇ ଆସିବା ଉଚିତ ।

ଅତୀତରେ ଯାତ୍ରା ମାଧ୍ୟମରେ ଓଡ଼ିଶୀ ନୃତ୍ୟ ଓ ସଂଗୀତର ପ୍ରଚାର ଓ ପ୍ରସାର ହେଉଥିଲା, କାରଣ ଯାତ୍ରାର ବିଷୟବସ୍ତୁ ଆରମ୍ଭରେ ନିଶ୍ଚିତ ଭାବରେ ଏକ ଓଡ଼ିଶୀ ନୃତ୍ୟ ବା ଗୋଟିପୁଅ ନୃତ୍ୟ ପ୍ରଦର୍ଶନ କରାଯାଉଥିଲା । ଏବେ ଯାତ୍ରାମାନଙ୍କରେ ସେପରି ହେଉନଥିବାରୁ କ୍ଷୋଭ ପ୍ରକାଶ କରି ରାଜ୍ୟପାଳ କହିଲେ ଯେ, ଯାତ୍ରାରେ କିପରି ଓଡ଼ିଶୀ ପରିବେଷିତ ହୋଇପାରିବ, ସେଥିପ୍ରତି ସମସ୍ତେ ଧ୍ୟାନ ଦେବା ଉଚିତ । ସେପରି ହେଲେ ଅନେକ ଶିଳ୍ପୀ ନିଯୁକ୍ତି ପାଇବାରେ ସମର୍ଥ ହେବେ ବୋଲି ସେ କହିଥିଲେ ।

ଉତ୍ସବରେ ସଭାପତିତ୍ୱ କରି ପୂର୍ବତନ ସାଂସଦ ତଥା ସଂଯୁକ୍ତାଙ୍କ ଭଣଜା ଶ୍ରୀ ପିନାକୀ ମିଶ୍ର କହିଲେ ଯେ, ସଂଯୁକ୍ତା ରବିଶଙ୍କର, ବିଲାୟତି ଖାଁ, ଆଲ୍ଲାରଖା ଖାଁ ଇତ୍ୟାଦିଙ୍କ ସହ ଏକାଠି ଅଭିନୟ ଓ ସଂଗୀତ କାର୍ଯ୍ୟକ୍ରମରେ ଅଂଶଗ୍ରହଣ କରିଥିଲେ । ସେ ସଂଯୁକ୍ତାଙ୍କ ସହ ନିଜର ଦୀର୍ଘ ସଂପର୍କରେ ଅବତାରଣା କରିବା ଅବସରରେ ଟ୍ରଷ୍ଟର ଭବିଷ୍ୟତ କାର୍ଯ୍ୟକ୍ରମ ସଂପର୍କରେ ସୂଚନା ଦେଇଥିଲେ ।

ସମ୍ମାନିତ ଅତିଥିଭାବେ ଶ୍ରୀ ସୁଧାଂଶୁ ଭୂଷଣ ମିଶ୍ର ଓ ଶ୍ରୀ ବିବେକ ପଟ୍ଟନାୟକ ଯୋଗ ଦେଇ ଓଡ଼ିଶୀ ନୃତ୍ୟର ବିଭିନ୍ନ ଦିଗ ଏବଂ ଏହା ସାମ୍ନାରେ ଥିବା ବିଭିନ୍ନ ସମସ୍ୟା ସଂପର୍କରେ ଆଲୋକପାତ କରିଥିଲେ ।

ମୁଖ୍ୟ ବକ୍ତା ରୂପେ ଶ୍ରୀମତୀ ପ୍ରତିଭା ରାୟ ଯୋଗଦେଇ ସଂଯୁକ୍ତାଙ୍କ ଶୈଳୀକୁ ଅଦ୍ୱିତୀୟ ବୋଲି ବର୍ଣ୍ଣନା କରି ସାଂପ୍ରତିକ ସମୟରେ ଓଡ଼ିଶୀ ନୃତ୍ୟ ସାମ୍ନାରେ ଥିବା ବିଭିନ୍ନ ଆହ୍ୱାନ ଉପରେ ଆଲୋକପାତ କରିଥିଲେ । ସେ ଓଡ଼ିଶୀ ଶାସ୍ତ୍ରୀୟ ମର୍ଯ୍ୟାଦା ପାଇବା ପଛରେ ଥିବା ଇତିହାସ ଓ ସଂଘର୍ଷ ଉପରେ କହିଥିଲେ । ରାଜ୍ୟପାଳ ଶ୍ରୀ ଏମ୍.ଏମ୍. ରାଜେନ୍ଦ୍ରନ୍ ଏହି ଅବସରରେ ଶ୍ରୀ ରଘୁନାଥ ପାଣିଗ୍ରାହୀଙ୍କ ସଂଗୀତଭରା ନୂତନ ସି.ଡ଼ି. ଉନ୍ମୋଚନ କରିଥିଲେ । କାର୍ଯ୍ୟକ୍ରମ ମଧ୍ୟରେ ସଂଯୁକ୍ତା ପାଣିଗ୍ରାହୀ ସମ୍ମାନ ଘୋଷଣା କରାଯାଇଥିଲା । ସୁପ୍ରସିଦ୍ଧ ଓଡ଼ିଶୀ ନୃତ୍ୟଶିଳ୍ପୀ ଶ୍ରୀମତୀ ଡୋନା ଗାଂଗୁଲିଙ୍କୁ ସଂଯୁକ୍ତା ପାଣିଗ୍ରାହୀ ସମ୍ମାନ ପ୍ରଦାନ କରାଯାଇଥିଲା । ଉଲ୍ଲେଖଯୋଗ୍ୟ ଯେ କ୍ରିକେଟ ତାରକା ସୌରଭ ଗାଂଗୁଲିଙ୍କ ପତ୍ନୀ ।

# ଓ.ସି.ଏଚ୍.ସି. ଜରିଆରେ ଅର୍ଥନୈତିକ ଅନଗ୍ରସର ଲୋକଙ୍କ ନିମନ୍ତେ ଗୃହ ନିର୍ମାଣ ଯୋଜନା - ସମବାୟ ମନ୍ତ୍ରୀ

ଓଡ଼ିଶା ସମବାୟ ଗୃହ ନିର୍ମାଣ ନିଗମ ଏବଂ ୭୧ ଗୋଟି କ୍ଷେତ୍ରସ୍ତରୀୟ ପ୍ରାଥମିକ ଗୃହ ନିର୍ମାଣ ସମିତି ରାଜ୍ୟ ସରକାରଙ୍କର ଏକ ନିର୍ଭରଯୋଗ୍ୟ ଅନୁଷ୍ଠାନ ଏବଂ ଏହି ନିଗମ ଜରିଆରେ ଅର୍ଥନୈତିକ ଅନଗ୍ରସର ଲୋକମାନଙ୍କ ପାଇଁ ଗୃହ ନିର୍ମାଣଜନିତ କେନ୍ଦ୍ର ଓ ରାଜ୍ୟ ସରକାରଙ୍କ ଯୋଜନାମାନ ସୂର୍ଯ୍ୟାଲୋକ ଦେଖିବା ପାଇଁ ସଂପୂର୍ଣ୍ଣ ପ୍ରସ୍ତୁତ ବୋଲି ସମବାୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀମତୀ ସୁରମା ପାଢ଼ୀ ଏହାର ସମୀକ୍ଷା କରି ପ୍ରକାଶ କରିଛନ୍ତି ।

ଓଡ଼ିଶା ସମବାୟ ଗୃହ ନିର୍ମାଣ ନିଗମ ୨୦୦୧-୦୪ ବର୍ଷମାନଙ୍କରେ ଆଖିଦୃଶିଆ ବ୍ୟବସାୟିକ ସଫଳତା ହାସଲ କରିଛି । ୨୦୦୧-୦୨, ୨୦୦୨-୦୩ ଏବଂ ୨୦୦୩-୦୪ ଆର୍ଥିକ ବର୍ଷରେ ଲକ୍ଷାଧିକ ଟଙ୍କାର ଲାଭ ଅର୍ଜନ କରିପାରିଛି । ଭାରତୀୟ ଜୀବନ ବୀମା ନିଗମ, ମୁମ୍ବାଇଠାରେ ଆଣିଥିବା ଋଣର ଶହେ ପ୍ରତିଶତ ୨୦୦୧-୦୪ ବର୍ଷ ପର୍ଯ୍ୟନ୍ତ ପରିଶୋଧ କରିବାର ଗୌରବ ହାସଲ କରିଛି । ରାଜ୍ୟ ସରକାରଙ୍କୁ ଦେୟ ହୋଇ ନଥିବା ୨୮ ଲକ୍ଷ ଟଙ୍କା ବାକିଥିବା ସରକାରୀ ଋଣ ଶୁଝି ଦେଇ ସଂପୂର୍ଣ୍ଣ ସରକାରୀ ଋଣମୁକ୍ତ ହୋଇଛି । ରାଜ୍ୟ ସରକାରଙ୍କର ସଂପୂର୍ଣ୍ଣ ଆସ୍ଥା ଅର୍ଜନ କରି ଏହି ଗୃହ ନିର୍ମାଣ ସମବାୟ ନିଗମ ଭାରତୀୟ ଜୀବନ ବୀମା ସପକ୍ଷରେ ୧୦ କୋଟି ଟଙ୍କାର ଗ୍ୟାରେଣ୍ଟି ଏବଂ ହୁଡ୍‌କୋ ସଂସ୍ଥା ସପକ୍ଷରେ ୨୦ କୋଟି ଟଙ୍କା ଗ୍ୟାରେଣ୍ଟି ୨୦୦୩-୦୪ ବର୍ଷରେ ପାଇବାର ଗୌରବ ଅର୍ଜନ କରିଛି । ବି.ପି.ଏଲ୍. ସୀମା ଉର୍ଦ୍ଧ୍ୱରେ ଥିବା ଅର୍ଥନୈତିକ ଦୃଷ୍ଟିରୁ ଅନଗ୍ରସର ବ୍ୟକ୍ତିବିଶେଷଙ୍କ ପାଇଁ ପଞ୍ଚାୟତିରାଜ ବିଭାଗ ଦ୍ୱାରା ପ୍ରାୟୋଜିତ କ୍ରେଡ଼ିଟ୍-କମ୍-ସବ୍‌ସିଡ଼ି ଯୋଜନାରେ ୮୦୧୦ଟି ଗୃହ ନିର୍ମାଣ ୨୦୦୩-୦୪ ବର୍ଷରେ ଏହି ନିଗମ ଏକ ଜନମଂଗଳ କାର୍ଯ୍ୟ କରିପାରିଛି । ପୁରୀ ବେଳାଭୂମିସ୍ଥିତ ୧୧୦ ଏକର ଜମି ଥିବା କଳିଙ୍ଗ ବିହାର ପ୍ରକଳ୍ପକୁ ବାସଗୃହ ନିର୍ମାଣ ଉପଯୋଗୀ କରିବା ପାଇଁ ବିଦ୍ୟୁତକରଣ ଓ ଭୂତଳ ମଧୁର ଜଳ ଯୋଗାଣ କାର୍ଯ୍ୟ ସମାପ୍ତ କରି ଚଳିତ ବର୍ଷ ଘର ପ୍ଲଟ୍ ନେଇଥିବା ବ୍ୟକ୍ତିବିଶେଷଙ୍କ ତରଫରୁ ଏହି ନିଗମ ଗୃହ ନିର୍ମାଣ କରିବା ପାଇଁ ପଦକ୍ଷେପ ନେଇଛି । ତମାଣ୍ଡୋ ନିକଟସ୍ଥ ବଡ଼ରଘୁନାଥପୁର ପ୍ରକଳ୍ପରେ ହୁଡ୍‌କୋ ପ୍ରାୟୋଜିତ ବିଲଡ଼ିଂ ସେଣ୍ଟର ଜରିଆରେ ଘର ତିଆରି ଉପକରଣ ସହ ବିଦ୍ୟୁତ୍‌କରଣ କାର୍ଯ୍ୟ ଏହି ନିଗମ ସମାପ୍ତ କରିଛି ।

ପୁରୀ କଳିଙ୍ଗ ବିହାର ବିଲଡିଂ ସେଣ୍ଟରଠାରେ ରାଜମିସ୍ତ୍ରୀ ଓ କୁଶଳୀ ଶ୍ରମିକମାନଙ୍କୁ ପ୍ରାକୃତିକ ବିପର୍ଯ୍ୟୟ ନିରୋଧକ ସୁଲଭ ମୂଲ୍ୟରେ ଗୃହ ନିର୍ମାଣ ଜ୍ଞାନକୌଶଳ ଟ୍ରେନିଂ ଜରିଆରେ ସେମାନଙ୍କର ଦକ୍ଷତା ବୃଦ୍ଧି କରାଯାଇଛି । ହୁଡ୍‌କୋ ପ୍ରାୟୋଜିତ ଆଦର୍ଶ ଗ୍ରାମ ଯୋଜନା ମାଧ୍ୟମରେ ସାକ୍ଷୀଗୋପାଳ ନିକଟସ୍ଥ ନୂଆଗାଁ-ଉତ୍ତମାସାହି ଗ୍ରାମରେ ୧୯ ଲକ୍ଷ ଟଙ୍କା ବ୍ୟୟରେ ଏହି ନିଗମ କାର୍ଯ୍ୟକ୍ରମ ହାତକୁ ନେଇ ସଂପୂର୍ଣ୍ଣ କରିସାରିଛି । ଶ୍ରୀ ଲିଙ୍ଗରାଜ ମନ୍ଦିର ପାର୍ଶ୍ୱରେ ଥିବା ସମବାୟ ଗୃହ ନିର୍ମାଣ ନିଗମର ଜମି ଉପରେ ଏକ ୧୦୦ ଶଯ୍ୟା ବିଶିଷ୍ଟ ତୀର୍ଥଯାତ୍ରୀମାନଙ୍କ ରାତ୍ରିଯାପନ ବିଶ୍ରାମସ୍ଥଳୀ ସହ ଦୋକାନ ଗୃହ ନିର୍ମାଣ ଚଳିତ ବର୍ଷ ସଂପୂର୍ଣ୍ଣ କରାଯିବାକୁ ନିଷ୍ପତ୍ତି ଗ୍ରହଣ କରାଯାଇଛି । ଏତଦ୍‌ବ୍ୟତୀତ ରାଜସ୍ୱ ବିଭାଗ ଅଧୀନରେ ଥିବା ଭୁବନେଶ୍ୱର ଉପକଣ୍ଠସ୍ଥିତ ପାତ୍ରପଡ଼ା ମୌଜାରେ ୨୭ ଏକର ଜମି ଅଧିଗ୍ରହଣ ନିମନ୍ତେ ସରକାରଙ୍କ ବିଚାରାଧୀନ ଅଛି । ସରକାରଙ୍କ ସାଧାରଣ ପ୍ରଶାସନ ବିଭାଗ ଅଧୀନରେ ଥିବା ଭୀମପୁର ମୌଜାରେ ୩୬ ଏକର ଜମି ଦେବା ପ୍ରସ୍ତାବ ଅଫିସରସ୍ତରୀୟ କମିଟିରେ ପ୍ରସ୍ତାବିତ ହୋଇ ମାନ୍ୟବର ମନ୍ତ୍ରୀସ୍ତରୀୟ ସବ୍‌କମିଟି ଦ୍ୱାରା ଅନୁମୋଦିତ ହୋଇ ବିଚାରାଧୀନ ଅଛି । ପାରାଦ୍ୱୀପସ୍ଥିତ ଓସ୍‌ୱାଲ ସାର କାରଖାନା ନିକଟସ୍ଥ ୨୭.୫୦ ଏକର ଜମି ଅଧିଗ୍ରହଣ କରି ଏହି ନିଗମ ସୁଲଭ ମୂଲ୍ୟରେ ଗୃହ ନିର୍ମାଣ ପାଇଁ ଜଗତସିଂହପୁର ଜିଲ୍ଲାପାଳଙ୍କ ନିକଟରେ ଆବଶ୍ୟକୀୟ ବିଧିପୂର୍ବକ ନିର୍ଦ୍ଦିଷ୍ଟ ପ୍ରସ୍ତାବ ସଂପାଦିତ ହେବା ସ୍ତରରେ ରହିଛି ।

ଉପରୋକ୍ତ ତଥ୍ୟ ନିଗମର ପରିଚାଳନା ନିର୍ଦ୍ଦେଶକ ଶ୍ରୀ ଶାନ୍ତନୁ କୁମାର ମହାନ୍ତି ମନ୍ତ୍ରୀଙ୍କ ସମୀପରେ ଉପସ୍ଥାପନ କରିବା ସହିତ ଏକ ସ୍ଲାଇଡ ମାଧ୍ୟମରେ ତାହା ଜେନେରାଲ ମ୍ୟାନେଜର ଶ୍ରୀ ରାମମୋହନ ପାତ୍ର ପରିବେଷଣ କରିଥିଲେ ।

ସଂପାଦକୀୟ

# ପ୍ରତିଭା ସ୍ମରଣେ

'କେହି ରହି ନାହିଁ ରହିବେ ନାହିଁଟି ଭବରଙ୍ଗ ଭୂମି ତଳେ
ସର୍ବେ ନିଜ ନିଜ ଅଭିନୟ ସାରି ବାହୁଡ଼ିବେ କାଳବଳେ ।'

ଏ ବିଶ୍ୱ ହେଉଛି କାମନା ବାସନାର ରଙ୍ଗାଳୟ । ଏହି ରଙ୍ଗାଳୟର ରଙ୍ଗମଞ୍ଚରେ କିଏ କେମିତି ଅଭିନୟ କରୁଛି ବଡ଼ କଥା । ସଭ୍ୟତାର ପ୍ରାକ୍‌କାଳରୁ ବହୁ ଯୋଗୀ, ମୁନିଋଷି, ସିଦ୍ଧସାଧକ, କବି ଓ ଲେଖକ ଧରାପୃଷ୍ଠରେ ଅବତରଣ କରି ମାନବ ସଭ୍ୟତା ତଥା ମାନବ ଜାତିକୁ ମାର୍ଗଦର୍ଶନ ଦେଇଆସିଛନ୍ତି । ଗୋଟିଏ କାଳରେ ଜନ୍ମଗ୍ରହଣ କରି ସେମାନେ କାଳାତୀତ ଓ କାଳଜୟୀ ହୋଇଯାଆନ୍ତି । ସେମାନେ ଏଭଳି କୃତି ଛାଡ଼ି ଯାଆନ୍ତି, ଯାହା ସେମାନଙ୍କୁ ଅମରତ୍ୱ ପ୍ରଦାନ କରେ । କାଳ ତାଙ୍କୁ ସ୍ପର୍ଶ କରିପାରେ ନାହିଁ ।

ଏଇ ନିକଟ ଅତୀତରେ ଆମ ଗହଣରୁ ତଥା ଓଡ଼ିଶାର ସାରସ୍ୱତ ଜଗତରୁ ଉତ୍କଳ ଜନନୀଙ୍କର ତିନି ମହାନ୍ ବରପୁତ୍ର ବିଦାୟ ନେଇଛନ୍ତି । ସେମାନେ ହେଲେ ମହାକବି ସଚ୍ଚିଦାନନ୍ଦ ରାଉତରାୟ, ଗାଳ୍ପିକ କିଶୋରୀ ଚରଣ ଓ କାବ୍ୟ ପୁରୁଷ ଗୁରୁପ୍ରସାଦ ମହାନ୍ତି ।

ପ୍ରଥିତ ଯଶା, ମହାକବି ପଦ୍ମଶ୍ରୀ ଓ ଜ୍ଞାନପୀଠ ପୁରସ୍କାରପ୍ରାପ୍ତ ଆଧୁନିକ ଓଡ଼ିଆ କବିତାର ମୂଳଭିତ୍ତି ସ୍ଥାପୟିତା କବି ସଚ୍ଚିଦାନନ୍ଦ ରାଉତରାୟ କେବଳ କାବ୍ୟ କବିତା ନୁହେଁ, ଗଳ୍ପ ଏବଂ ଉପନ୍ୟାସ ଲେଖି ଓଡ଼ିଆ ସାହିତ୍ୟକୁ ସମୃଦ୍ଧ କରିଯାଇଛନ୍ତି । କେତେବେଳେ ମାନବବାଦୀ ଶିଳ୍ପୀ, କେତେବେଳେ ବାମପନ୍ଥୀ ଦର୍ଶନର ପ୍ରବକ୍ତା, କେତେବେଳେ ଜୀବନ ଯୌବନ ଓ ମୃତ୍ୟୁର ଉପାସକଭାବେ ତାଙ୍କର କାବ୍ୟ କବିତାରେ ବସ୍ତୁବାଦିତା, କଳ୍ପନା ବିଳାସିତା ଆଉ ଜୀବନନିଷ୍ଠା ମଧ୍ୟ ପ୍ରତିଫଳିତ । ୧୯୩୦ ମସିହାରୁ ନିରବଚ୍ଛିନ୍ନ ଭାବରେ ସଚ୍ଚିଦାନନ୍ଦଙ୍କ ଲେଖନୀ ଧନୀ, ପୁଞ୍ଜିପତିଙ୍କ ବିରୁଦ୍ଧରେ ଯୁଦ୍ଧ ଘୋଷଣା କରି ଚାଷୀ, ମୂଲିଆ ନିଷ୍ପେସିତଙ୍କ ଜୟଗାନରେ ମୁଖର ହୋଇଛି । ଓଡ଼ିଆ କାବ୍ୟ ସାହିତ୍ୟରେ ପ୍ରଗତିବାଦୀ ଆନ୍ଦୋଳନର ସେ ଥିଲେ ପ୍ରବକ୍ତା ।

ସେହିପରି ଓଡ଼ିଶାର ସାରସ୍ୱତ କ୍ଷେତ୍ରରେ ସୁପ୍ରତିଷ୍ଠିତ ପ୍ରଥିତଯଶା, କଥାକାର, ସୁସାହିତ୍ୟିକ, ଦକ୍ଷ ପ୍ରଶାସକ, ଜଣେ ଉଚ୍ଚକୋଟୀର ଚିନ୍ତକ ତଥା ସମାଲୋଚକ ଭାବରେ ବିଶେଷ ପରିଚିତ ହୋଇଥିବା କିଶୋରୀ ଚରଣଙ୍କ ଅବର୍ତ୍ତମାନରେ

ଓଡ଼ିଆ ସାହିତ୍ୟରେ ଏକ ଅପୂରଣୀୟ କ୍ଷତି ଘଟିଲା । ପ୍ରାୟ ଅର୍ଦ୍ଧ-ଶତାବ୍ଦୀ ଧରି ଏହି ବିଶିଷ୍ଟ ପ୍ରଶାସକ, ସାହିତ୍ୟ ସ୍ରଷ୍ଟା ବହୁ ସଫଳ ଗଳ୍ପ ସୃଷ୍ଟି କରି ସର୍ବଭାରତୀୟ ସାହିତ୍ୟରେ ଉଜ୍ଜ୍ୱଳ ସ୍ୱାକ୍ଷର ରଖିବା ସଂଗେସଂଗେ ଓଡ଼ିଆ ସାହିତ୍ୟକୁ ବିଶ୍ୱଦରବାରରେ ପ୍ରତିଷ୍ଠିତ କରିଯାଇଛନ୍ତି । ଏହି ଜୀବନଧର୍ମୀ ଶିଳ୍ପୀ ତାଙ୍କ ସୃଷ୍ଟି ଭିତରେ ଚିରଦିନ ବଞ୍ଚି ରହିବେ ।

ଓଡ଼ିଆ ସାହିତ୍ୟର ଆଉ ଜଣେ ସାରସ୍ୱତ ସାଧକ, କାବ୍ୟପୁରୁଷ ଗୁରୁପ୍ରସାଦ ମହାନ୍ତି ଏକାଧାରରେ ଜଣେ ସାରସ୍ୱତ ପ୍ରତିଭାଦୀପ୍ତ କବି ଓ ଶିକ୍ଷାବିତ୍ ଥିଲେ । 'ସମୁଦ୍ର ସ୍ନାନ' କାବ୍ୟ ପାଇଁ ଗୁରୁ ପ୍ରସାଦଙ୍କୁ କେନ୍ଦ୍ର ସାହିତ୍ୟ ଏକାଡ଼େମୀ ପୁରସ୍କାର ମିଳିଥିଲା । ଜଣେ ଇଂରାଜୀ ଅଧ୍ୟାପକ ରୂପେ ଚାକିରି ଜୀବନ ଆରମ୍ଭ କରିଥିବା ଗୁରୁପ୍ରସାଦଙ୍କ ସାହିତ୍ୟ କୃତି ସମଗ୍ର ଓଡ଼ିଆ ସାହିତ୍ୟକୁ ଋଦ୍ଧିମନ୍ତ କରିଥିଲା ।

ଉତ୍କଳ ଜନନୀଙ୍କର ଏହି ତିନି ମହାନ୍ ବରପୁତ୍ରଙ୍କ ଅବର୍ତ୍ତମାନରେ ଉତ୍କଳ ପ୍ରସଙ୍ଗ ତରଫରୁ ଆମେ ସେମାନଙ୍କ ଶୋକସନ୍ତପ୍ତ ପରିବାରଙ୍କୁ ସମବେଦନା ଜଣାଇବା ସଂଗେସଂଗେ ସେମାନଙ୍କ ପୁଣ୍ୟ ସ୍ମୃତି ଉଦ୍ଦେଶ୍ୟରେ ଶ୍ରଦ୍ଧାଞ୍ଜଳି ଅର୍ପଣ କରୁଛୁ ।

ଏତଦ୍‌ବ୍ୟତୀତ ଏ ସଂଖ୍ୟାରେ ପାଠକମାନଙ୍କ ରୁଚିକୁ ଚାହିଁ ଆମେ ବହୁ ଉପାଦେୟ ପ୍ରବନ୍ଧମାନ ପ୍ରକାଶ କରିଛୁ । ଲେଖାଗୁଡ଼ିକ ପାଠକମାନଙ୍କ ନିକଟରେ ଆଦୃତ ହେବ ବୋଲି ଆମର ଆଶା ।

ଶରତ ଚନ୍ଦ୍ର ସାମନ୍ତରାୟ

# ଉତ୍କଳ ପ୍ରସଙ୍ଗ

୬୧ ଭାଗ　　୨ୟ ସଂଖ୍ୟା　　ଭାଦ୍ର-ଆଶ୍ୱିନ　　ସେପ୍ଟେମ୍ବର - ୨୦୦୪

**ଦିଗମ୍ବର ମହାନ୍ତି**
କମିଶନର ତଥା ଶାସନ ସଚିବ

**ବୈଷ୍ଣବ ପ୍ରସାଦ ମହାନ୍ତି**
ନିର୍ଦ୍ଦେଶକ

**ଶରତଚନ୍ଦ୍ର ସାମନ୍ତରାୟ**
କାର୍ଯ୍ୟ ନିର୍ବାହୀ ସମ୍ପାଦକ

ସମ୍ପାଦନା ସହଯୋଗୀ
**ଶୁଭଲକ୍ଷ୍ମୀ ମହାନ୍ତି**
**ଗୋବିନ୍ଦଚନ୍ଦ୍ର ମଲ୍ଲିକ**

ପ୍ରଚ୍ଛଦପଟ ଓ ଲେ-ଆଉଟ ଡ଼ିଜାଇନିଂ
**ମାନସ ନାୟକ**
ଫଟୋ : ସୂଚନା ଓ ଲୋକ ସଂପର୍କ ବିଭାଗ
ସୌଜନ୍ୟରୁ

କମ୍ପ୍ୟୁଟର ସେଟିଂ ଓ ଡ଼ିଜାଇନିଂ
**ମନୋଜ କୁମାର ପାତ୍ର**
**ହେମନ୍ତ କୁମାର ସାହୁ**

***ବାର୍ଷିକ ଦେୟ : ଟ.୫୦.୦୦***
***ପ୍ରତିଖଣ୍ଡ : ଟ.୫.୦୦***

---



ଓଡ଼ିଶା ସରକାରଙ୍କର ସୂଚନା ଓ ଲୋକ ସମ୍ପର୍କ ବିଭାଗଦ୍ୱାରା ପ୍ରକାଶିତ ଏବଂ
ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ - ୧୦ରେ ମୁଦ୍ରିତ ।

ଠିକଣା : 'ଉତ୍କଳ ପ୍ରସଙ୍ଗ', ରାଜ୍ୟ ସୂଚନା ଓ ଲୋକ ସଂପର୍କ ବିଭାଗ, ଲୋକ ସଂପର୍କ ଭବନ, ଭୁବନେଶ୍ୱର - ୭୫୧୦୦୧
*E-mail* : iprsec@ori.nic.in, ଫୋନ : ୨୪୦୪୫୧୩

# ସୂଚୀ